॥ ଓଁ ଶ୍ରୀ ପରମାତ୍ମନେ ନମଃ ॥ 2136

# ସରଳ ଗୀତା

## [ଶ୍ଲୋକାର୍ଥ ସହିତ]

सरल गीता (ओड़िआ)

॥ कृष्णं वन्दे जगद्गुरुम् ॥




ଗୀତାପ୍ରେସ୍, ଗୋରଖପୁର

॥ ଓଁ ଶ୍ରୀପରମାତ୍ମନେ ନମଃ ॥

2136

# ସରଳ ଗୀତା

[ ଶ୍ଳୋକାର୍ଥ ସହିତ ]

**सरल गीता ( ओड़िआ )**

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ଗୀତାପ୍ରେସ୍, ଗୋରଖପୁର

*Books are also available at—*

1. Gita Press, Gorakhpur Ki Pustak-Dukan,
   Bharatiya Towers, Badam Badi, Cuttack
   © (0671) 2335481, Mob. 8847856627
2. Cuttack, Railway Station, Platform No.1
3. Bhubaneswar, Railway Station, Platform No.1
4. Howrah, Railway Station, Platform No.5&18 Both.
5. Gobind Bhavan, 151, Mahatma Gandhi Road,
   Kolkata © (033) 40605293, 22680251; 22686894

Third Reprint 2019 4,000

Total 12,000

❖ **Price : ₹ 40**

**( Forty Rupees only )**

Printed & Published by :

**Gita Press, Gorakhpur—273005 (INDIA)**

(a unit of Gobind Bhavan-Karyalaya, Kolkata)

Phone : (0551) 2334721, 2331250, 2331251

web : **gitapress.org** e-mail : **booksales@gitapress.org**

**Visit gitapressbookshop.in for online purchase of Gitapress publications.**

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ପ୍ରାକ୍ କଥନ

ଶ୍ରୀମଦ୍‌ଭଗବଦ୍‌ଗୀତା ଏକ ଅଲୌକିକ ଏବଂ ପ୍ରାସାଦିକ ଗ୍ରନ୍ଥ । ଗୀତା ଉପରେ ଟୀକା, ଟିପ୍ପଣୀ, ରହସ୍ୟପୂର୍ଣ୍ଣ ଅର୍ଥ ଅଥବା ଭାବର ଉଦ୍‌ଘାଟନ କରିବା ଆଦି ତ ଦୂରର କଥା, ଆଜି ମଧ୍ୟ ଆମ ସମାଜରେ ଏପରି ବହୁତ ଲୋକ ଅଛନ୍ତି ଯେଉଁମାନେ ଗୀତାର ଶ୍ଳୋକଗୁଡ଼ିକୁ ଶୁଦ୍ଧରୂପେ ପଢ଼ି ପାରନ୍ତି ନାହିଁ । ଆମର ଭାବନା ଓ ପ୍ରୟାସ ସେହିପରି ମହାନୁଭାବମାନଙ୍କ ପାଇଁ, ଯେଉଁମାନେ ଗୀତା ପଢ଼ିବାକୁ ଚାହୁଁଛନ୍ତି । ଏହି ସଦ୍‌ଭାବନାରେ ପ୍ରେରିତ ହୋଇ ଭଗବାନଙ୍କ ଅହୈତୁକୀ କୃପାରୁ ଗୋଟିଏ **'ସରଳ ଗୀତା'** ପ୍ରସ୍ତୁତ କରାଗଲା, ଯଦ୍ଦ୍ୱାରା ସାମାନ୍ୟ ପାଠ ପଢ଼ିଥିବା ବ୍ୟକ୍ତି ମଧ୍ୟ ଅତିକମ୍‌ରେ ଶ୍ରୀମଦ୍-ଭଗବଦ୍‌ଗୀତାକୁ ଠିକ୍ ଭାବରେ ପାଠ କରି ଆତ୍ମକଲ୍ୟାଣ କରିପାରିବେ । ଏହି ଗୀତାର ଏକମାତ୍ର ଉଦ୍ଦେଶ୍ୟ ସର୍ବସାଧାରଣଙ୍କୁ ଗୀତା ଶ୍ଳୋକ ପଢ଼ିବାର ଅଭ୍ୟାସ କରାଇବା ।

ଦୁଇ ଧାଡ଼ିରେ ଛପିଥିବା ଶ୍ଳୋକଗୁଡ଼ିକୁ ପଢ଼ିବା ବେଳେ ସେଗୁଡ଼ିକୁ ଆଠ-ଆଠ ଅକ୍ଷରର ଚାରିଭାଗରେ ବିଭକ୍ତ କରିବେ ଅର୍ଥାତ୍ ସେଥିରୁ ଆଠ ଅକ୍ଷରକୁ ଏକ ସଙ୍ଗରେ ପଢ଼ିଲେ ଗୋଟିଏ ଚରଣ ପୂର୍ଣ୍ଣ ହେବ । ଏହିରୂପେ ଚାରି ଧାଡ଼ିରେ ଛପିଥିବା ଚୌରାଳିଶ ଅକ୍ଷରଯୁକ୍ତ ଶ୍ଳୋକଗୁଡ଼ିକୁ ପ୍ରତ୍ୟେକ ଚରଣରେ ଏଗାର ଅକ୍ଷର ଗଣି ପଢ଼ିବା ଉଚିତ ।

ଗୀତାର କେତେକ ଶ୍ଳୋକରେ ଅକ୍ଷର ଗଣନା କରିବା ବେଳେ କେଉଁଠି କେଉଁଠି ଗୋଟିଏ ଚରଣରେ ନଅ ତଥା ବାରଟି ଅକ୍ଷର ମଧ୍ୟ ମିଳିଥାଏ । ସେଗୁଡ଼ିକୁ ପ୍ରଦତ୍ତ ରଙ୍ଗ ଅନୁସାରେ ଉଚ୍ଚାରଣ କରିବା ଉଚିତ ।

ଶ୍ଳୋକର ଅକ୍ଷର ଗଣନାରେ ଅଧା ଅକ୍ଷର ବା ହଳନ୍ତଯୁକ୍ତ ଅକ୍ଷରକୁ ଗଣନା କରିବା ଅନୁଚିତ । ଆଠ ଅକ୍ଷର ଓ ଏଗାର ଅକ୍ଷର ଗଣିବା ବେଳେ ପୂର୍ଣ୍ଣାକ୍ଷରକୁ ହିଁ ଗଣିବା ଉଚିତ ।

ଗୀତାର ଶୁଦ୍ଧ ଉଚ୍ଚାରଣ ଶିଖୁଥିବା ସାଧାରଣ ପାଠକଙ୍କ ସୁବିଧା ନିମନ୍ତେ ପ୍ରତ୍ୟେକ ଚରଣରେ କଠିନ ଶବ୍ଦଗୁଡ଼ିକୁ ସଂଯୋଜକ ଚିହ୍ନ ଦ୍ୱାରା ପୃଥକ୍ କରି ଦୁଇଟି ରଙ୍ଗରେ ଛପାଯାଇଛି । ଏହାଦ୍ୱାରା ଶ୍ଳୋକର ପ୍ରତ୍ୟେକ ଚରଣକୁ ବୁଝିବାକୁ ସହାୟତା ମିଳିବ । ପ୍ରତ୍ୟେକ ଶ୍ଳୋକର ତଳେ ତାହାର ଓଡ଼ିଆ ଅର୍ଥ ମଧ୍ୟ ଦିଆଯାଇଛି, ଯାହା ଫଳରେ ପାଠକଙ୍କୁ ଶ୍ଳୋକଗୁଡ଼ିକ ପଢ଼ିବା ଓ ସେଗୁଡ଼ିକର ଭାବ ବୁଝିବା ଅଧିକ ସରଳ ହେବ । ବାରାହପୁରାଣରେ କୁହାଯାଇଛି ଯେ ନିତ୍ୟ ଗୀତାପାଠ କରୁଥିବା ବ୍ୟକ୍ତିର ପତନ ହୁଏ ନାହିଁ । ତେଣୁ ଯଥାସମ୍ଭବ ନିତ୍ୟ ଗୀତାପାଠ ନିଶ୍ଚିତରୂପେ କରିବା ଉଚିତ ।

ଆଶା, ଯେଉଁ ପାଠକମାନେ ଗୀତା ପଢ଼ିବାକୁ ଚାହାନ୍ତି, ସେମାନଙ୍କ ପାଇଁ ଏହି ବିଧି ଓ ପ୍ରୟାସ ଉପଯୋଗୀ ହେବ ।

———

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଗୀତାର ମହିମା

ଶ୍ରୀମଦ୍‌ଭଗବଦ୍‌ଗୀତା ହେଉଛି ସାକ୍ଷାତ୍ ଭଗବାନଙ୍କର ଦିବ୍ୟବାଣୀ । ଏହାର ମହିମା ଅପାର ଓ ଅପରିମିତ । କେହି ଏହାର ଯଥାର୍ଥ ବର୍ଣ୍ଣନା କରିପାରିବେ ନାହିଁ । ମନୁଷ୍ୟମାନଙ୍କ କଥା କ'ଣ କହିବା, ଶେଷ, ମହେଶ ଓ ଗଣେଶ ମଧ୍ୟ ଏହାର ମହିମା ପୂର୍ଣ୍ଣରୂପେ ବର୍ଣ୍ଣନା କରିପାରିବେ ନାହିଁ । ଇତିହାସ, ପୁରାଣ ଆଦିରେ ସ୍ଥାନେ ସ୍ଥାନେ ଏହାର ମହିମା ଗାନ କରାଯାଇଛି; ତଥାପି ଏପର୍ଯ୍ୟନ୍ତ ଏହାର ଯେତେ ମହିମା ଗାନ କରାଯାଇଛି, ସେଗୁଡ଼ିକ ଏକତ୍ର କରିଦେଲେ ମଧ୍ୟ, କୁହାଯାଇପାରିବ ନାହିଁ ଯେ, ଗୀତାର ମହିମା ଏତିକିମାତ୍ର । ସତ କହିବାକୁ ଗଲେ, ଏହାର ମହିମା ପୂର୍ଣ୍ଣରୂପେ ବର୍ଣ୍ଣନା କରାଯାଇପାରିବ ନାହିଁ । ଯେଉଁ ବସ୍ତୁର ବର୍ଣ୍ଣନା ହୋଇପାରେ, ତାହା ଆଉ ଅପରିମିତ ହୋଇ କିପରି ରହିବ? ତାହା ତ ପରିମିତ ହୋଇଗଲା ।

ଗୀତା ଏକ ପରମ ରହସ୍ୟମୟ ଗ୍ରନ୍ଥ । ଏଥିରେ ସମସ୍ତ ବେଦର ସାର ସଂଗ୍ରହ କରାଯାଇଛି । ଏହାର ରଚନା ଏତେ ସୁନ୍ଦର ଓ ସରଳ ଯେ, ଟିକିଏ ଅଭ୍ୟାସ କଲେ, ମନୁଷ୍ୟ ଏହା ସହଜରେ ବୁଝିପାରିବ; ତଥାପି ଏହାର ଅନ୍ତର୍ନିହିତ ତଥ୍ୟ ଏପରି ଗୂଢ଼ ଓ ଗମ୍ଭୀର ଯେ, ଆଜୀବନ ନିରନ୍ତର ଅଭ୍ୟାସ କରିଚାଲିଲେ ମଧ୍ୟ, ଏହାର ଅନ୍ତ ମିଳିପାରେ ନାହିଁ । ଏଥିରୁ ପ୍ରତିଦିନ ନୂଆ ନୂଆ ଭାବ ଉତ୍ପନ୍ନ ହେଉଥାଏ; ତେଣୁ ଏହା ସର୍ବଦା ନବୀନ ହୋଇ ହିଁ ରହେ ଏବଂ ଏକାଗ୍ରଚିତ୍ତ ହୋଇ ଶ୍ରଦ୍ଧା-ଭକ୍ତି ସହିତ ବିଚାର କଲେ ଏହାର ପ୍ରତିଟି ପଦରେ ପରମ ରହସ୍ୟ ପୂର୍ଣ୍ଣ ହୋଇ ରହିଥିବାର ପ୍ରତ୍ୟକ୍ଷ ପ୍ରତୀତ ହୁଏ । ଏହି ଗୀତାଶାସ୍ତ୍ରରେ ଭଗବାନଙ୍କର ଗୁଣ, ପ୍ରଭାବ, ସ୍ୱରୂପ, ତତ୍ତ୍ୱ, ରହସ୍ୟ ଏବଂ ଉପାସନା ତଥା କର୍ମ ଓ ଜ୍ଞାନର ବର୍ଣ୍ଣନା ଯେପରିଭାବରେ କରାଯାଇଛି, ସେପରି ବର୍ଣ୍ଣନା ଅନ୍ୟ କୌଣସି ଗ୍ରନ୍ଥରେ ଏକସଙ୍ଗରେ ମିଳିବା କଠିନ । ଭଗବଦ୍‌ଗୀତା ଏପରି ଏକ ଅନୁପମ ଶାସ୍ତ୍ର ଯେ, ଏହାର ଗୋଟିଏ ବି ଶବ୍ଦ ସଦୁପଦେଶରୁ ବିଚ୍ୟୁତ ନୁହେଁ । ଗୀତାରେ ଏପରି ଗୋଟିଏ ହେଲେ ଶବ୍ଦ ନାହିଁ, ଯାହାକୁ ଚାଟୁବାଣୀ ବୋଲି କୁହାଯାଇପାରେ । ଏଥିରେ ଯେଉଁସବୁ କଥା କୁହାଯାଇଛି, ସେସବୁ ଅକ୍ଷରେ ଅକ୍ଷରେ ଯଥାର୍ଥ । ସତ୍ୟସ୍ୱରୂପ ଭଗବାନଙ୍କ ବାଣୀରେ ଚାଟୁବାଦ କଳ୍ପନା କରିବା ଅର୍ଥ ତାହାର ଅନାଦର କରିବା ।

ଗୀତା ସର୍ବଶାସ୍ତ୍ରମୟୀ । ଗୀତାରେ ସମସ୍ତ ଶାସ୍ତ୍ରର ସାର ପୂର୍ଣ୍ଣ ହୋଇ ରହିଛି । ଏହାକୁ ସବୁଶାସ୍ତ୍ରର ଭଣ୍ଡାର ବୋଲି କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ଗୀତାରେ ଭଲଭାବରେ ଜ୍ଞାନ ହୋଇଯିବା ପରେ, ସବୁ ଶାସ୍ତ୍ରର ତାତ୍ତ୍ୱିକ ଜ୍ଞାନ ସ୍ୱତଃ ଉଦିତ

ହୋଇଯିବ; ସେଥିପାଇଁ ପୃଥକ୍ ପରିଶ୍ରମ କରିବାର ଆବଶ୍ୟକତା ରହିବ ନାହିଁ।

ମହାଭାରତରେ ମଧ୍ୟ କୁହାଯାଇଛି—**'ସର୍ବଶାସ୍ତ୍ରମୟୀ ଗୀତା'** (ଭୀଷ୍ମ. ୪୩। ୨)। କିନ୍ତୁ ଏତିକି କହିଦେଲେ ଯଥେଷ୍ଟ ହୋଇଗଲା ନାହିଁ; କାରଣ ସମସ୍ତ ଶାସ୍ତ୍ରର ଉତ୍ପତ୍ତି ବେଦରୁ ହୋଇଛି, ବେଦ ବ୍ରହ୍ମାଙ୍କ ମୁଖରୁ ଉଚ୍ଚାରିତ ହୋଇଛି ଏବଂ ବ୍ରହ୍ମା ଭଗବାନଙ୍କ ନାଭିକମଳରୁ ଉତ୍ପନ୍ନ ହୋଇଛନ୍ତି। ତେଣୁ ଶାସ୍ତ୍ର ଓ ଭଗବାନଙ୍କ ମଧ୍ୟରେ ବହୁ ବ୍ୟବଧାନ ରହିଯାଇଛି। କିନ୍ତୁ ଗୀତା ସ୍ୱୟଂ ଭଗବାନଙ୍କ ମୁଖାରବିନ୍ଦରୁ ନିଃସୃତ ହୋଇଛି; ତେଣୁ ଏହାକୁ ଶାସ୍ତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ବୋଲି କୁହାଗଲେ କିଛି ଅତ୍ୟୁକ୍ତି ହେବ ନାହିଁ। ସ୍ୱୟଂ ଭଗବାନ୍ ବେଦବ୍ୟାସ କହିଛନ୍ତି—

**ଗୀତା ସୁଗୀତା କର୍ତ୍ତବ୍ୟା, କିମନ୍ୟୈଃ ଶାସ୍ତ୍ର-ସଂଗ୍ରହୈଃ।**
**ଯା ସ୍ୱୟଂ ପଦ୍ମନାଭସ୍ୟ, ମୁଖ-ପଦ୍ମାଦ୍-ବିନିଃସୃତା॥**

'ଗୀତା ହିଁ ଭଲଭାବରେ ଶ୍ରବଣ, କୀର୍ତ୍ତନ, ପଠନ-ପାଠନ, ମନନ ଏବଂ ଧାରଣ କରାଯିବା ଉଚିତ; ଅନ୍ୟ ଶାସ୍ତ୍ର ସଂଗ୍ରହ କରିବା କି ଆବଶ୍ୟକ? କାରଣ ଏହା ସ୍ୱୟଂ ପଦ୍ମନାଭ ଭଗବାନଙ୍କ ସାକ୍ଷାତ୍ ମୁଖକମଳରୁ ନିଃସୃତ ହୋଇଛି।'

ଶ୍ଳୋକରେ 'ପଦ୍ମନାଭ' ଶବ୍ଦ ପ୍ରୟୋଗ କରି ମହାଭାରତକାର ଏହି କଥା କହିଛନ୍ତି। ତାତ୍ପର୍ଯ୍ୟ ଏହି ଯେ, ଏହି ଗୀତା ସେହି ଭଗବାନଙ୍କ ମୁଖକମଳରୁ ନିଃସୃତ ହୋଇଛି, ଯାହାଙ୍କ ନାଭିକମଳରୁ ବ୍ରହ୍ମା ଉତ୍ପନ୍ନ ହୋଇଛନ୍ତି ଏବଂ ବ୍ରହ୍ମାଙ୍କ ମୁଖରୁ ସମସ୍ତ ଶାସ୍ତ୍ରର ମୂଳ ବେଦ ପ୍ରକଟ ହୋଇଛନ୍ତି।

ଗୀତା ଗଙ୍ଗାଙ୍କ ଠାରୁ ମଧ୍ୟ ଶ୍ରେଷ୍ଠତର। ଶାସ୍ତ୍ରରେ ଗଙ୍ଗାସ୍ନାନର ଫଳ ମୁକ୍ତି ବୋଲି କୁହାଯାଇଛି। ତଥାପି ଗଙ୍ଗାସ୍ନାନ କରୁଥିବା ଲୋକ ସ୍ୱୟଂ ସିନା ମୁକ୍ତ ହୋଇପାରନ୍ତି, ତାଙ୍କଠାରେ ଅନ୍ୟକୁ ମୁକ୍ତ କରିବାର ସାମର୍ଥ୍ୟ ନ ଥାଏ; କିନ୍ତୁ ଗୀତାରୂପୀ ଗଙ୍ଗାରେ ବୁଡ଼ ପକାଉଥିବା ଲୋକ ସ୍ୱୟଂ ତ ମୁକ୍ତ ହୁଅନ୍ତି, ତା'ସହିତ ଅନ୍ୟକୁ ବି ମୁକ୍ତ କରିବାକୁ ସମର୍ଥ ହୋଇଯା'ନ୍ତି। ଗଙ୍ଗା ତ ଭଗବାନଙ୍କ ଚରଣରୁ ଉତ୍ପନ୍ନ ହୋଇଛନ୍ତି; ଗୀତା ଭଗବାନ ନାରାୟଣଙ୍କ ସାକ୍ଷାତ୍ ମୁଖାରବିନ୍ଦରୁ ଉତ୍ପନ୍ନ ହୋଇଛନ୍ତି। ପୁଣି ଯେଉଁମାନେ ଗଙ୍ଗାକୁ ଆସି ସ୍ନାନ କରନ୍ତି, ଗଙ୍ଗା କେବଳ ସେହିମାନଙ୍କୁ ମୁକ୍ତ କରିଦିଅନ୍ତି; କିନ୍ତୁ ଗୀତା ତ ଗୃହେ ଗୃହେ ବୁଲି ସମସ୍ତଙ୍କୁ ମୁକ୍ତିର ମାର୍ଗ ଦେଖାଇଦିଅନ୍ତି। ଏହିସବୁ କାରଣରୁ ଗୀତା ଗଙ୍ଗାଙ୍କ ଠାରୁ ଶ୍ରେଷ୍ଠତର ବୋଲି କୁହାଯାଇଛି।

ଗୀତା ଗାୟତ୍ରୀଠାରୁ ମଧ୍ୟ ଶ୍ରେଷ୍ଠତର। ଗାୟତ୍ରୀଜପ ଦ୍ୱାରା ଯେ ମନୁଷ୍ୟର ମୁକ୍ତି ହୁଏ, ତାହା ଠିକ୍; କିନ୍ତୁ ଗାୟତ୍ରୀ ଜପ କରୁଥିବା ଲୋକ କେବଳ ସ୍ୱୟଂ ମୁକ୍ତ ହୁଅନ୍ତି, ଅଥଚ ଗୀତା ଅଭ୍ୟାସ କରୁଥିବା ଲୋକ ସ୍ୱୟଂ ତ୍ରାଣକର୍ତ୍ତା ହୋଇଯାନ୍ତି। ଯେଉଁଠି ସ୍ୱୟଂ ମୁକ୍ତିଦାତା ଭଗବାନ୍ ତାଙ୍କର ହୋଇଯାନ୍ତି, ସେଠାରେ ମୁକ୍ତିର କଥା ଆଉ କ'ଣ

କହିବା ! ମୁକ୍ତି ତାଙ୍କର ଚରଣଧୂଳିରେ ନିବାସ କରେ । ସେ ମୁକ୍ତିର ଛତ୍ର ଖୋଲିଦିଅନ୍ତି ।

ଗୀତାକୁ ଆମେ ସ୍ୱୟଂ ଭଗବାନଙ୍କ ଠାରୁ ବି ଶ୍ରେଷ୍ଠ ବୋଲି କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ଭଗବାନ ସ୍ୱୟଂ କହିଛନ୍ତି—

ଗୀତାଶ୍ରୟେଽହଂ ତିଷ୍ଠାମି, ଗୀତା ମେ ଶ୍ରେଷ୍ଠମଂ ଗୃହମ୍ ।
ଗୀତା-ଜ୍ଞାନ-ମୁପାଶ୍ରିତ୍ୟ, ତ୍ରୀଁଲ୍ଲୋକାନ୍ ପାଲୟାମ୍ୟହମ୍ ॥

(ବାରାହ ପୁରାଣ)

ଅର୍ଥାତ୍ 'ମୁଁ ଗୀତା ଆଶ୍ରୟରେ ରହିଛି, ଗୀତା ମୋର ଶ୍ରେଷ୍ଠ ଗୃହ । ଗୀତାଜ୍ଞାନର ଆଶ୍ରୟ ନେଇ ମୁଁ ତିନିଲୋକକୁ ପାଳନ କରୁଛି ।'

ଏହାଛଡ଼ା, ଗୀତାରେ ଭଗବାନ୍ ମୁକ୍ତକଣ୍ଠରେ ଘୋଷଣା କରିଛନ୍ତି, "ଯେକେହି ମୋର ଗୀତାରୂପକ ଆଜ୍ଞା ପାଳନ କରିବ, ସେ ନିଃସନ୍ଦେହ ମୁକ୍ତ ହୋଇଯିବ (୩ । ୩୧) ।" କେବଳ ଏତିକି ନୁହେଁ, ଭଗବାନ୍ କହିଛନ୍ତି, "ଯେକେହି ଏହା ଅଧ୍ୟୟନ କଲେ ବି, ତାଙ୍କ ଦ୍ୱାରା ମୁଁ ଜ୍ଞାନଯଜ୍ଞରେ ପୂଜିତ ହେବି (୧୮ । ୭୦) ।" କେବଳ ଗୀତା ଅଧ୍ୟୟନରେ ଏତେ ମାହାତ୍ମ୍ୟ ରହିଛି; ଯେଉଁ ଲୋକ ଏହାର ଉପଦେଶ ଅନୁସାରେ ନିଜର ଜୀବନ ନିର୍ବାହ କରନ୍ତି, ଏହାର ରହସ୍ୟ ଭକ୍ତମାନଙ୍କୁ ଅବଗତ କରାନ୍ତି ଏବଂ ଏହାର ପ୍ରସାର ଓ ପ୍ରଚାର କରାନ୍ତି, ତାଙ୍କ କଥା ଆଉ କ'ଣ କହିବା ! ତାଙ୍କ ବିଷୟରେ ତ ଭଗବାନ୍ କହନ୍ତି, "ସେ ମୋର ଅତିଶୟ ପ୍ରିୟ ।" ତାଙ୍କୁ ଭଗବାନଙ୍କର ପ୍ରାଣଠାରୁ ବି ଅଧିକ ବୋଲି କହିଲେ କିଛି ଅନୁଚିତ ହେବ ନାହିଁ । ଭଗବାନ୍ ଏପରି ଭକ୍ତଙ୍କର ଅଧୀନ ହୋଇଯାନ୍ତି ।

ଉତ୍ତମ ପୁରୁଷମାନଙ୍କ ପକ୍ଷରେ ବି ଦେଖାଯାଏ ଯେ, ସେମାନଙ୍କ ସିଦ୍ଧାନ୍ତ ପାଳନ କରୁଥିବା ଲୋକ ସେମାନଙ୍କର ଯେତେ ପ୍ରିୟ, ନିଜର ପ୍ରାଣ ମଧ୍ୟ ସେମାନଙ୍କ ପାଇଁ ସେତେ ପ୍ରିୟ ନୁହେଁ । ଗୀତା ହେଉଛି ଭଗବାନଙ୍କର ପ୍ରଧାନ ରହସ୍ୟମୟ ଆଦେଶ । ଏପରି ଅବସ୍ଥାରେ, ସେହି ଆଦେଶ ପାଳନ କରୁଥିବା ଲୋକ ଯେ ତାଙ୍କର ପ୍ରାଣଠାରୁ ବି ଅଧିକ ପ୍ରିୟ ହେବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଗୀତା ହେଉଛି ଭଗବାନଙ୍କର ପ୍ରାଣ, ହୃଦୟ ଏବଂ ତାଙ୍କର ବାଙ୍ମୟୀ ମୂର୍ତ୍ତି । ଯାହାଙ୍କ ହୃଦୟରେ, ବାଣୀରେ, ଶରୀରରେ ତଥା ସମସ୍ତ ଇନ୍ଦ୍ରିୟମାନଙ୍କରେ ଏବଂ କ୍ରିୟାକଳାପରେ ଗୀତା ଓତପ୍ରୋତଭାବରେ ଜଡ଼ିତ ହୋଇଯାଇଛି, ସେହି ପୁରୁଷ ହେଉଛନ୍ତି ଗୀତାର ସାକ୍ଷାତ୍ ପ୍ରତିମୂର୍ତ୍ତି । ତାଙ୍କର ଦର୍ଶନ, ସ୍ପର୍ଶନ, ଭାଷଣ ଏବଂ ଚିନ୍ତନରେ ମଧ୍ୟ ଅନ୍ୟମାନେ ପବିତ୍ର ହୋଇଯାନ୍ତି । ତେଣୁ ତାଙ୍କର ଆଜ୍ଞାପାଳନ ଓ ଅନୁକରଣ କରୁଥିବା ଲୋକଙ୍କର କଥା ବା କ'ଣ କହିବା । ବାସ୍ତବରେ ସଂସାରରେ ଗୀତାସମାନ ଯଜ୍ଞ, ଦାନ, ତପ, ତୀର୍ଥ, ବ୍ରତ, ସଂଯମ ଏବଂ ଉପବାସ ଆଦି ହୋଇ କିଛି ମଧ୍ୟ ନାହିଁ ।

ଗୀତା ହେଉଛି ସାକ୍ଷାତ୍ ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖାରବିନ୍ଦରୁ ନିଃସୃତ ବାଣୀ। ଶ୍ରୀବ୍ୟାସଦେବ ହେଉଛନ୍ତି ଏହାର ସଙ୍କଳନକର୍ତ୍ତା। ଭଗବାନ୍ ଶ୍ରୀକୃଷ୍ଣ ନିଜର ଉପଦେଶର ଅଧିକାଂଶ ଶ୍ଳୋକରେ ହିଁ କହିଥିଲେ; ବ୍ୟାସଦେବ ତାହା ଅବିକଳ ଲିପିବଦ୍ଧ କରିଛନ୍ତି। ଯେଉଁ ଅଂଶ ସେ ଗଦ୍ୟରେ କହିଥିଲେ, ତାହା ବ୍ୟାସଦେବ ନିଜେ ଶ୍ଳୋକବଦ୍ଧ କରିଦେଇଛନ୍ତି; ତା'ସଙ୍ଗେ ସଙ୍ଗେ ସେ ଅର୍ଜୁନ, ସଞ୍ଜୟ ଏବଂ ଧୃତରାଷ୍ଟ୍ରଙ୍କ ବଚନକୁ ମଧ୍ୟ ନିଜ ଭାଷାରେ ଶ୍ଳୋକବଦ୍ଧ କରିଦେଇଛନ୍ତି ଏବଂ ଏପରି ସାତଶହ ଶ୍ଳୋକରେ ସମ୍ପୂର୍ଣ୍ଣ ହୋଇଥିବା ଗୀତାଗ୍ରନ୍ଥକୁ ଅଠର ଅଧ୍ୟାୟରେ ବିଭକ୍ତ କରି ମହାଭାରତରେ ଯୋଗ କରିଦେଇଛନ୍ତି, ଯାହାକୁ ଆଜି ଆମେ ଏହି ରୂପରେ ପାଇପାରିଛୁ।

## ଭଗବତ୍‌ପ୍ରାପ୍ତିର ମାର୍ଗ

ଗୀତାରେ ଭଗବତ୍‌ପ୍ରାପ୍ତିର ଦୁଇଟି ପ୍ରଧାନ ମାର୍ଗ କୁହାଯାଇଛି, ଯଥା— (୧) ସାଂଖ୍ୟନିଷ୍ଠା ଓ (୨) ଯୋଗନିଷ୍ଠା।

ସମସ୍ତ ପଦାର୍ଥ ମୃଗତୃଷ୍ଣାର ଜଳପରି ଅଥବା ସ୍ୱପ୍ନର ସୃଷ୍ଟିପରି ମାୟାମୟ ହୋଇଥିବାରୁ ମାୟାର କାର୍ଯ୍ୟରୂପ ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବର୍ତ୍ତିତ ହୁଅନ୍ତି; ଏହା ବୁଝି ମନ, ଇନ୍ଦ୍ରିୟ ଏବଂ ଶରୀରଦ୍ୱାରା ହେଉଥିବା ସକଳ କର୍ମର କର୍ତ୍ତାପଣରୁ ଅଭିମାନରହିତ ହୋଇଯିବା (୫ମ ଅଧ୍ୟାୟ ୮ମ ଓ ୯ମ ଶ୍ଳୋକ) ଏବଂ ସର୍ବବ୍ୟାପୀ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଏକୀଭାବରେ ନିତ୍ୟ ଅବସ୍ଥିତ ହୋଇଯିବାକୁ **ସାଂଖ୍ୟନିଷ୍ଠା** କହନ୍ତି।

ଏବଂ ସବୁକିଛି ଭଗବାନଙ୍କର ବୋଲି ମନେ କରି ସଫଳତା ଓ ବିଫଳତାରେ ସମତ୍ୱଭାବ ରଖି, ଆସକ୍ତି ଓ ଫଳାକାଙ୍କ୍ଷା ତ୍ୟାଗ କରି ଭଗବତ୍ ଆଜ୍ଞା ଅନୁସାରେ ସମସ୍ତ କର୍ମ ଆଚରଣ କରିବା (୨ୟ ଅଧ୍ୟାୟ ୪୭ରୁ ୫୧ତମ ଶ୍ଳୋକ) ଅଥବା ଶ୍ରଦ୍ଧାଭକ୍ତିପୂର୍ବକ ମନ, ବଚନ ଓ ଶରୀରରେ ସବୁପ୍ରକାରେ ଭଗବାନଙ୍କର ଶରଣାଗତ ହୋଇ ନାମ, ଗୁଣ ଏବଂ ପ୍ରଭାବସହ ତାଙ୍କର ସ୍ୱରୂପ ଚିନ୍ତନ କରିବାର (୬ଷ୍ଠ ଅଧ୍ୟାୟ ୪୭ତମ ଶ୍ଳୋକ) ନାମ **ଯୋଗନିଷ୍ଠା**। ଏହି ଉଭୟନିଷ୍ଠାରେ ଜାତି, ବର୍ଣ୍ଣ, ଲିଙ୍ଗ, ବୟସ ନିର୍ବିଶେଷରେ ସମସ୍ତଙ୍କର ଅଧିକାର ରହିଛି।

'ଭଗବାନ୍ ସାଂଖ୍ୟନିଷ୍ଠାକୁ ହିଁ ସନ୍ନ୍ୟାସ ବୋଲି କହିଛନ୍ତି, ତେଣୁ ଏହା ସନ୍ନ୍ୟାସ ଆଶ୍ରମରେ ହିଁ ସମ୍ଭବ; ଗୃହସ୍ଥାଶ୍ରମରେ ଏହା ସମ୍ଭବ ନୁହେଁ ବୋଲି ଭାବିବା ଠିକ୍ ନୁହେଁ। କାରଣ ଭଗବାନ୍ ବିଭିନ୍ନ ସ୍ଥାନରେ ଅର୍ଜୁନଙ୍କୁ ଯୁଦ୍ଧ କରିବାର ଯୁକ୍ତିଯୁକ୍ତତା ଦେଖାଇଛନ୍ତି। ଯଦି ଗୃହସ୍ଥାଶ୍ରମରେ ସାଂଖ୍ୟଯୋଗର ଅଧିକାର ନ ଥାନ୍ତା, ତେବେ ଭଗବାନ୍ ଏପରି କହି ନ ଥାନ୍ତେ। ତଥାପି ଗୋଟିଏ ବିଶେଷ କଥା ଜାଣିରଖିବା

ଉଚିତ ଯେ, ସାଂଖ୍ୟମାର୍ଗର ସାଧକ ଦେହାଭିମାନରୁ ସମ୍ପୂର୍ଣ୍ଣ ରହିତ ହୋଇଯିବା ଆବଶ୍ୟକ; ଯେପର୍ଯ୍ୟନ୍ତ ଦେହରେ ଅହଂଭାବ ରହିଛି, ସେପର୍ଯ୍ୟନ୍ତ ସାଂଖ୍ୟଯୋଗସାଧନା ଠିକ୍‌ଭାବେ ହୋଇପାରିବ ନାହିଁ। ତେଣୁ ଭଗବାନ୍ କହିଛନ୍ତି, ସାଂଖ୍ୟଯୋଗସାଧନା କଠିନ (୫।୬)। ଯୋଗନିଷ୍ଠା ବା କର୍ମଯୋଗସାଧନା ସହଜ ହୋଇଥିବାରୁ ସେ ଅର୍ଜୁନଙ୍କୁ ବିଭିନ୍ନ ସ୍ଥାନରେ କହିଛନ୍ତି, "ନିରନ୍ତର ମୋତେ ସ୍ମରଣ କରି କର୍ମଯୋଗ ଆଚରଣରେ ଲାଗିରହ।"



## ଅଥ କରନ୍ୟାସଃ

ଓଁ ଅସ୍ୟ ଶ୍ରୀମଦ୍-ଭଗବଦ୍-ଗୀତା-ମାଲା-ମନ୍ତ୍ରସ୍ୟ ଭଗବାନ୍-ବେଦବ୍ୟାସ ଋଷିଃ। ଅନୁଷ୍ଟୁପ୍ ଛନ୍ଦଃ। ଶ୍ରୀକୃଷ୍ଣଃ ପରମାତ୍ମା ଦେବତା॥ ଅଶୋଚ୍ୟା-ନନ୍ୱ-ଶୋଚସ୍-ତ୍ୱଂ, ପ୍ରଜ୍ଞା-ବାଦାଂଶ୍-ଚ ଭାଷସେ ଇତି ବୀଜମ୍॥ ସର୍ବ-ଧର୍ମାନ୍ ପରିତ୍ୟଜ୍ୟ, ମାମେକଂ ଶରଣଂ ବ୍ରଜ ଇତି ଶକ୍ତିଃ॥ ଅହଂ ତ୍ୱା ସର୍ବ-ପାପେଭ୍ୟୋ, ମୋକ୍ଷୟିଷ୍ୟାମି ମା ଶୁଚ ଇତି କୀଲକମ୍॥ ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକ ଇତ୍ୟଙ୍ଗୁଷ୍ଠାଭ୍ୟାଂ ନମଃ॥ ନ ଚୈନଂ କ୍ଲେଦୟନ୍ତ୍ୟାପୋ, ନ ଶୋଷୟତି ମାରୁତ ଇତି ତର୍ଜନୀଭ୍ୟାଂ ନମଃ॥ ଅଚ୍ଛେଦ୍ୟୋଽୟ-ମଦାହ୍ୟୋଽୟ,-ମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ଇତି ମଧ୍ୟମାଭ୍ୟାଂ ନମଃ॥ ନିତ୍ୟଃ ସର୍ବଗତଃ ସ୍ଥାଣୁ,-ରଚଲୋଽୟଂ ସନାତନ ଇତ୍ୟନାମିକାଭ୍ୟାଂ ନମଃ॥ ପଶ୍ୟ ମେ ପାର୍ଥ ରୂପାଣି, ଶତଶୋଽଥ ସହସ୍ରଶ ଇତି କନିଷ୍ଠିକାଭ୍ୟାଂ ନମଃ॥ ନାନା-ବିଧାନି ଦିବ୍ୟାନି, ନାନା-ବର୍ଣ୍ଣାକୃତୀନି ଚ ଇତି କରତଲ-କରପୃଷ୍ଠାଭ୍ୟାଂ ନମଃ॥ ଇତି କରନ୍ୟାସଃ॥

## ଅଥ ହୃଦୟାଦିନ୍ୟାସଃ

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକ ଇତି ହୃଦୟାୟ ନମଃ॥ ନ ଚୈନଂ କ୍ଲେଦୟନ୍ତ୍ୟାପୋ, ନ ଶୋଷୟତି ମାରୁତ ଇତି ଶିରସେ ସ୍ୱାହା॥ ଅଚ୍ଛେଦ୍ୟୋଽୟ-ମଦାହ୍ୟୋଽୟ,-ମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ଇତି ଶିଖାୟୈ ବଷଟ୍॥ ନିତ୍ୟଃ ସର୍ବଗତଃ ସ୍ଥାଣୁ,-ରଚଲୋଽୟଂ ସନାତନ ଇତି କବଚାୟ ହୁମ୍॥ ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶ ଇତି ନେତ୍ରତ୍ରୟାୟ ବୌଷଟ୍॥ ନାନା-ବିଧାନି ଦିବ୍ୟାନି, ନାନା-ବର୍ଣ୍ଣାକୃତୀନି ଚ ଇତି ଅସ୍ତ୍ରାୟ ଫଟ୍॥

ଶ୍ରୀକୃଷ୍ଣ-ପ୍ରୀତ୍ୟର୍ଥେ ପାଠେ ବିନିୟୋଗଃ॥



# ଧ୍ୟାନଶ୍ଳୋକାଦି

ଓଁ ପାର୍ଥାୟ ପ୍ରତି-ବୋଧିତାଂ ଭଗବତା, ନାରାୟଣେନ ସ୍ୱୟଂ
ବ୍ୟାସେନ ଗ୍ରଥିତାଂ ପୁରାଣ-ମୁନିନା, ମଧ୍ୟେ-ମହାଭାରତମ୍ ।
ଅଦ୍ୱୈତାମୃତ-ବର୍ଷିଣୀଂ ଭଗବତୀ,-ମଷ୍ଟା-ଦଶା-ଧ୍ୟାୟିନୀ-
ମମ୍ବ ତ୍ୱା-ମନୁସନ୍ଦଧାମି ଭଗବଦ୍,-ଗୀତେ ଭବ-ଦ୍ୱେଷିଣୀମ୍ ॥ ୧ ॥

ନମୋଽସ୍ତୁ ତେ ବ୍ୟାସ ବିଶାଳ-ବୁଦ୍ଧେ
ଫୁଲ୍ଲାର-ବିନ୍ଦାୟତ-ପତ୍ର-ନେତ୍ର ।
ଯେନ ତ୍ୱୟା ଭାରତ-ତୈଲ-ପୂର୍ଣ୍ଣଃ
ପ୍ରଜ୍ୱାଲିତୋ ଜ୍ଞାନମୟଃ ପ୍ରଦୀପଃ ॥ ୨ ॥

ପ୍ରପନ୍ନ-ପାରିଜାତାୟ, ତୋତ୍ତ୍ର-ବେତ୍ରୈକ-ପାଣୟେ ।
ଜ୍ଞାନ-ମୁଦ୍ରାୟ କୃଷ୍ଣାୟ, ଗୀତାମୃତ-ଦୁହେ ନମଃ ॥ ୩ ॥

ବସୁଦେବ-ସୁତଂ ଦେବଂ, କଂସ-ଚାଣୂର-ମର୍ଦ୍ଦନମ୍ ।
ଦେବକୀ-ପରମାନନ୍ଦଂ, କୃଷ୍ଣଂ ବନ୍ଦେ ଜଗଦ୍-ଗୁରୁମ୍ ॥ ୪ ॥

ଭୀଷ୍ମ-ଦ୍ରୋଣ-ତଟା ଜୟଦ୍ରଥ-ଜଳା, ଗାନ୍ଧାର-ନୀଳୋତ୍ପଳା
ଶଲ୍ୟ-ଗ୍ରାହବତୀ କୃପେଣ ବହନୀ, କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମ-ବିକର୍ଣ୍ଣ-ଘୋର-ମକରା, ଦୁର୍ଯ୍ୟୋଧନା-ବର୍ତ୍ତିନୀ
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈ ରଣ-ନଦୀ, କୈବର୍ତ୍ତକଃ କେଶବଃ ॥ ୫ ॥

ପାରାଶର୍ଯ୍ୟ-ବଚଃସରୋଜ-ମମଳଂ, ଗୀତାର୍ଥ-ଗନ୍ଧୋତ୍କଟଂ
ନାନା-ଖ୍ୟାନକ-କେସରଂ ହରିକଥା,-ସମ୍ବୋଧନା-ବୋଧିତମ୍ ।
ଲୋକେ ସଜ୍ଜନ-ଷଟ୍-ପଦୈ-ରହରହଃ, ପେପୀୟମାନଂ ମୁଦା
ଭୂୟାଦ୍-ଭାରତ-ପଙ୍କଜଂ କଳି-ମଳ,-ପ୍ରଧ୍ୱଂସି ନଃ ଶ୍ରେୟସେ ॥ ୬ ॥

ମୂକଂ କରୋତି ବାଚାଳଂ, ପଙ୍ଗୁଂ ଲଙ୍ଘୟତେ ଗିରିମ୍ ।
ଯତ୍-କୃପା ତମହଂ ବନ୍ଦେ, ପରମାନନ୍ଦ-ମାଧବମ୍ ॥ ୭ ॥

## ଅଥ ଧ୍ୟାନମ୍

ଶାନ୍ତାକାରଂ ଭୁଜଗ-ଶୟନଂ, ପଦ୍ମନାଭଂ ସୁରେଶଂ
ବିଶ୍ୱାଧାରଂ ଗଗନ-ସଦୃଶଂ, ମେଘ-ବର୍ଣ୍ଣଂ ଶୁଭାଙ୍ଗମ୍ ।
ଲକ୍ଷ୍ମୀ-କାନ୍ତଂ କମଲ୍-ନୟନଂ, ଯୋଗିଭିର୍-ଧ୍ୟାନ-ଗମ୍ୟଂ
ବନ୍ଦେ ବିଷ୍ଣୁଂ ଭବ-ଭୟ-ହରଂ, ସର୍ବ-ଲୋକୈକ-ନାଥମ୍ ॥ ୧ ॥
ଯଂ ବ୍ରହ୍ମା ବରୁଣେନ୍ଦ୍ର-ରୁଦ୍ର-ମରୁତଃ, ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈର୍-
ବେଦୈଃ ସାଙ୍ଗ-ପଦ-କ୍ରମୋପ-ନିଷଦୈର୍,-ଗାୟନ୍ତି ଯଂ ସାମଗାଃ ।
ଧ୍ୟାନା-ବସ୍ଥିତ-ତଦ୍-ଗତେନ ମନସା, ପଶ୍ୟନ୍ତି ଯଂ ଯୋଗିନୋ-
ୟସ୍ୟାନ୍ତଂ ନ ବିଦୁଃ ସୁରାସୁର-ଗଣା, ଦେବାୟ ତସ୍ମୈ ନମଃ ॥ ୨ ॥

## ଅଥ ଗୀତା-ମାହାତ୍ମ୍ୟମ୍

ଗୀତା-ଶାସ୍ତ୍ର-ମିଦଂ ପୁଣ୍ୟଂ, ଯଃ ପଠେତ୍-ପ୍ରୟତଃ ପୁମାନ୍ ।
ବିଷ୍ଣୋଃ ପଦ-ମବାପ୍ନୋତି, ଭୟ-ଶୋକାଦି-ବର୍ଜିତଃ ॥ ୧ ॥
ଗୀତା-ଧ୍ୟୟନ-ଶୀଲସ୍ୟ, ପ୍ରାଣାୟାମ-ପରସ୍ୟ ଚ ।
ନୈବ ସନ୍ତି ହି ପାପାନି, ପୂର୍ବ-ଜନ୍ମ-କୃତାନି ଚ ॥ ୨ ॥
ମଲ୍-ନିର୍ମୋଚନଂ ପୁଂସାଂ, ଜଲ୍-ସ୍ନାନଂ ଦିନେ-ଦିନେ ।
ସକୃଦ୍-ଗୀତାମ୍ଭସି ସ୍ନାନଂ, ସଂସାର-ମଲ୍-ନାଶନମ୍ ॥ ୩ ॥
ଗୀତା ସୁଗୀତା କର୍ତ୍ତବ୍ୟା, କିମନ୍ୟୈଃ ଶାସ୍ତ୍ର-ବିସ୍ତରୈଃ ।
ଯା ସ୍ୱୟଂ ପଦ୍ମନାଭସ୍ୟ, ମୁଖ-ପଦ୍ମାଦ୍-ବିନିଃସୃତା ॥ ୪ ॥
ଭାରତାମୃତ-ସର୍ବସ୍ୱଂ, ବିଷ୍ଣୋର୍-ବକ୍ତ୍ରାଦ୍-ବିନିଃସୃତମ୍ ।
ଗୀତା-ଗଙ୍ଗୋଦକଂ ପୀତ୍ୱା, ପୁନର୍ଜନ୍ମ ନ ବିଦ୍ୟତେ ॥ ୫ ॥
ସର୍ବୋପନିଷଦୋ ଗାବୋ, ଦୋଗ୍‌ଧା ଗୋପାଲ୍-ନନ୍ଦନଃ ।
ପାର୍ଥୋ ବତ୍ସଃ ସୁଧୀର୍-ଭୋକ୍ତା, ଦୁଗ୍‌ଧଂ ଗୀତାମୃତଂ ମହତ୍ ॥ ୬ ॥
ଏକଂ ଶାସ୍ତ୍ରଂ ଦେବକୀ-ପୁତ୍ର-ଗୀତ-
ମେକୋ ଦେବୋ ଦେବକୀ-ପୁତ୍ର ଏବ ।
ଏକୋ ମନ୍ତ୍ରସ୍-ତସ୍ୟ ନାମାନି ଯାନି
କର୍ମାପ୍ୟେକଂ ତସ୍ୟ ଦେବସ୍ୟ ସେବା ॥ ୭ ॥

# ଶ୍ରୀମଦ୍ଭଗବଦ୍‌ଗୀତାରେ ବର୍ଣ୍ଣିତ ପ୍ରଧାନ ବିଷୟର ସୂଚୀ

| ଶ୍ଲୋକ ସଂଖ୍ୟା | ବିଷୟ | ପୃଷ୍ଠା ସଂଖ୍ୟା |
|---|---|---|

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଶ୍ରୀମଦ୍-ଭଗବଦ୍-ଗୀତା

## ଅଥ ପ୍ରଥମୋଽଧ୍ୟାୟଃ

ଧୃତରାଷ୍ଟ୍ର ଉବାଚ

**ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ, ସମବେତା ଯୁଯୁତ୍ସବଃ ।**
**ମାମକାଃ ପାଣ୍ଡବାଶ୍-ଚୈବ, କିମକୁର୍ବତ ସଞ୍ଜୟ ॥**

ଧୃତରାଷ୍ଟ୍ର ପଚ୍ଚାରିଲେ—ହେ ସଞ୍ଜୟ! ଧର୍ମଭୂମି କୁରୁକ୍ଷେତ୍ରରେ ଯୁଦ୍ଧ କରିବା ଇଚ୍ଛାରେ ଏକତ୍ରିତ ହୋଇଥିବା ମୋର ଓ ପାଣ୍ଡୁଙ୍କର ପୁତ୍ରମାନେ କ'ଣ କଲେ? ॥ ୧ ॥

ସଞ୍ଜୟ ଉବାଚ

**ଦୃଷ୍ଟ୍ୱା ତୁ ପାଣ୍ଡବାନୀକଂ, ବ୍ୟୂଢଂ ଦୁର୍ଯ୍ୟୋଧନସ୍-ତଦା ।**
**ଆଚାର୍ଯ୍ୟ-ମୁପ-ସଙ୍ଗମ୍ୟ, ରାଜା ବଚନ-ମବ୍ରବୀତ୍ ॥**

ସଞ୍ଜୟ କହିଲେ—ଯୁଦ୍ଧାରମ୍ଭ ସମୟରେ ରାଜା ଦୁର୍ଯ୍ୟୋଧନ ବ୍ୟୂହରଚନାଯୁକ୍ତ ପାଣ୍ଡବସେନାକୁ ଦେଖି, ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ଯାଇ କହିଲେ,—॥ ୨ ॥

**ପଶ୍ୟୈତାଂ ପାଣ୍ଡୁ-ପୁତ୍ରାଣା,-ମାଚାର୍ଯ୍ୟ ମହତୀଂ ଚମୂମ୍ ।**
**ବ୍ୟୂଢାଂ ଦ୍ରୁପଦ-ପୁତ୍ରେଣ, ତବ ଶିଷ୍ୟେଣ ଧୀମତା ॥**

ହେ ଆଚାର୍ଯ୍ୟ ! ଆପଣଙ୍କ ବୁଦ୍ଧିମାନ୍ ଶିଷ୍ୟ ଦ୍ରୁପଦପୁତ୍ର

ଧୃଷ୍ଟଦ୍ୟୁମ୍ନଦ୍ୱାରା ବ୍ୟୂହାକାରରେ ସଜ୍ଜିତ ପାଣ୍ଡୁପୁତ୍ରମାନଙ୍କର ଏହି ବିରାଟ ସେନାକୁ ଦେଖନ୍ତୁ ॥ ୩ ॥

**ଅତ୍ର ଶୂରା ମହେଷ୍ୱାସା, ଭୀମାର୍ଜୁନ-ସମା ଯୁଧି ।**
**ଯୁଯୁଧାନୋ ବିରାଟଶ୍-ଚ, ଦ୍ରୁପଦଶ୍-ଚ ମହାରଥଃ ॥**
**ଧୃଷ୍ଟକେତୁଶ୍-ଚେକିତାନଃ, କାଶିରାଜଶ୍-ଚ ବୀର୍ଯ୍ୟବାନ୍ ।**
**ପୁରୁଜିତ୍-କୁନ୍ତିଭୋଜଶ୍-ଚ, ଶୈବ୍ୟଶ୍-ଚ ନରପୁଙ୍ଗବଃ ॥**
**ଯୁଧାମନ୍ୟୁଶ୍-ଚ ବିକ୍ରାନ୍ତ, ଉତ୍ତମୌଜାଶ୍-ଚ ବୀର୍ଯ୍ୟବାନ୍ ।**
**ସୌଭଦ୍ରୋ ଦ୍ରୌପଦେୟାଶ୍-ଚ, ସର୍ବ ଏବ ମହାରଥାଃ ॥**

ଏହି ସେନାରେ ମହା ମହା ଧନୁର୍ଦ୍ଧର ତଥା ଯୁଦ୍ଧରେ ଭୀମ ଓ ଅର୍ଜୁନଙ୍କ ସମାନ ଶୂରବୀର ସାତ୍ୟକି, ବିରାଟ ତଥା ମହାରଥୀ ରାଜା ଦ୍ରୁପଦ, ଧୃଷ୍ଟକେତୁ ଓ ଚେକିତାନ ତଥା ବଳବାନ୍ କାଶିରାଜ, ପୁରୁଜିତ୍, କୁନ୍ତିଭୋଜ ଓ ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ଶୈବ୍ୟ, ପରାକ୍ରମୀ ଯୁଧାମନ୍ୟୁ ତଥା ବଳବାନ୍ ଉତ୍ତମୌଜା, ସୁଭଦ୍ରାପୁତ୍ର ଅଭିମନ୍ୟୁ ଏବଂ ଦ୍ରୌପଦୀଙ୍କ ପାଞ୍ଚପୁତ୍ର ଅଛନ୍ତି; ଏମାନେ ସମସ୍ତେ ମହାରଥୀ ॥ ୪, ୫, ୬ ॥

**ଅସ୍ମାକଂ ତୁ ବିଶିଷ୍ଟା ଯେ, ତାନ୍-ନିବୋଧ ଦ୍ୱିଜୋତ୍ତମ ।**
**ନାୟକା ମମ ସୈନ୍ୟସ୍ୟ, ସଂଜ୍ଞାର୍ଥଂ ତାନ୍ ବ୍ରବୀମି ତେ ॥**

ହେ ବ୍ରାହ୍ମଣଶ୍ରେଷ୍ଠ ! ଆମ ପକ୍ଷରେ ବି ଯେଉଁ ପ୍ରଧାନ ଯୋଦ୍ଧାମାନେ ଅଛନ୍ତି, ସେମାନଙ୍କୁ ଆପଣ ଜାଣିନିଅନ୍ତୁ । ମୋ ସେନାରେ ଯେଉଁ ସେନାପତିମାନେ ଅଛନ୍ତି, ଆପଣଙ୍କ ଜାଣିବା ନିମନ୍ତେ, ସେମାନଙ୍କ ନାମ କହୁଛି ॥ ୭ ॥

**ଭବାନ୍-ଭୀଷ୍ମଶ୍-ଚ କର୍ଣ୍ଣଶ୍-ଚ, କୃପଶ୍-ଚ ସମିତିଞ୍ଜୟଃ ।**
**ଅଶ୍ୱତ୍‌ଥାମା ବିକର୍ଣ୍ଣଶ୍-ଚ, ସୌମଦତ୍ତିସ୍-ତଥୈବ ଚ ॥**

ଆପଣ (ଦ୍ରୋଣାଚାର୍ଯ୍ୟ), ପିତାମହ ଭୀଷ୍ମ, କର୍ଣ୍ଣ ଏବଂ ସଂଗ୍ରାମବିଜୟୀ କୃପାଚାର୍ଯ୍ୟ ତଥା ସେହିପରି ଅଶ୍ୱତ୍‌ଥାମା, ବିକର୍ଣ୍ଣ ଓ ସୋମଦତ୍ତଙ୍କ ପୁତ୍ର ଭୂରିଶ୍ରବା ଏବଂ......॥ ୮ ॥

**ଅନ୍ୟେ ଚ ବହବଃ ଶୂରା, ମଦର୍ଥେ ତ୍ୟକ୍ତ-ଜୀବିତାଃ ।**
**ନାନା-ଶସ୍ତ୍ର-ପ୍ରହରଣାଃ, ସର୍ବେ ଯୁଦ୍ଧ-ବିଶାରଦାଃ ॥**

ଏମାନଙ୍କ ଛଡ଼ା ମୋପାଇଁ ଜୀବନର ଆଶା ତ୍ୟାଗ କରିଦେଇଥିବା ଆହୁରି ବହୁ ଶୂରବୀର ମଧ୍ୟ ନାନାପ୍ରକାର ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଉପସ୍ଥିତ ଅଛନ୍ତି । ସେମାନେ ସମସ୍ତେ ଯୁଦ୍ଧରେ ନିପୁଣ ॥ ୯ ॥

**ଅପର୍ଯ୍ୟାପ୍ତଂ ତଦସ୍ମାକଂ, ବଲଂ ଭୀଷ୍ମାଭି-ରକ୍ଷିତମ୍ ।**
**ପର୍ଯ୍ୟାପ୍ତଂ ତ୍ୱିଦ-ମେତେଷାଂ, ବଲଂ ଭୀମାଭି-ରକ୍ଷିତମ୍ ॥**

ଭୀଷ୍ମଙ୍କ ଦ୍ୱାରା ରକ୍ଷିତ ଆମ୍ଭମାନଙ୍କର ସେନା ଅପରିମିତ ଅର୍ଥାତ୍ ସବୁ ଦୃଷ୍ଟିରୁ ଅଜେୟ ଏବଂ ଭୀମଙ୍କ ଦ୍ୱାରା ରକ୍ଷିତ ଏମାନଙ୍କର ଏହି ସେନା ପରିମିତ ଅର୍ଥାତ୍ ଏହାକୁ ଜୟ କରିବା ଅତି ସହଜ ॥ ୧୦ ॥

**ଅୟନେଷୁ ଚ ସର୍ବେଷୁ, ଯଥା-ଭାଗ-ମବସ୍ଥିତାଃ ।**
**ଭୀଷ୍ମ-ମେବାଭି-ରକ୍ଷନ୍ତୁ, ଭବନ୍ତଃ ସର୍ବ ଏବ ହି ॥**

ତେଣୁ ସକଳ ବ୍ୟୂହଦ୍ୱାରରେ ନିଜ ନିଜ ସ୍ଥାନରେ ରହି

ଆପଣମାନେ ସମସ୍ତେ ନିଶ୍ଚିତଭାବରେ ଭୀଷ୍ମ ପିତାମହଙ୍କୁ ହିଁ ସକଳ ଦିଗରୁ ରକ୍ଷା କରନ୍ତୁ ॥ ୧୧ ॥

**ତସ୍ୟ ସଂଜନୟନ୍ ହର୍ଷଂ, କୁରୁ-ବୃଦ୍ଧଃ ପିତାମହଃ ।**
**ସିଂହନାଦଂ ବିନଦ୍ୟୋଚ୍ଚୈଃ, ଶଙ୍ଖଂ ଦଧ୍ମୌ ପ୍ରତାପବାନ୍ ॥**

କୁରୁବୃଦ୍ଧ ମହାପ୍ରତାପୀ ପିତାମହ ଭୀଷ୍ମ ଦୁର୍ଯ୍ୟୋଧନଙ୍କ ହୃଦୟରେ ହର୍ଷ ଉତ୍ପନ୍ନ କରାଇ ଉଚ୍ଚସ୍ୱରରେ ସିଂହନାଦ ପରି ଗର୍ଜନ କରି ଶଙ୍ଖ ବଜାଇଲେ ॥ ୧୨ ॥

**ତତଃ ଶଙ୍ଖାଶ୍-ଚ ଭେର୍ଯ୍ୟଶ୍-ଚ, ପଣବାନକ-ଗୋମୁଖାଃ ।**
**ସହସୈବାଭ୍ୟ-ହନ୍ୟନ୍ତ, ସ ଶବ୍ଦସ୍-ତୁମୁଲୋଽଭବତ୍ ॥**

ତା'ପରେ ପରେ ବହୁ ଶଙ୍ଖ, ଭେରୀ, ନାଗରା, ମର୍ଦ୍ଦଳ ଓ ରଣଶିଙ୍ଗା ଆଦି ବାଦ୍ୟ ଏକସଙ୍ଗେ ବାଜିଉଠିଲା । ସେସବୁର ଶବ୍ଦ ଅତି ଭୟଙ୍କର ହେଲା ॥ ୧୩ ॥

**ତତଃ ଶ୍ୱେତୈର୍-ହୟୈର୍-ଯୁକ୍ତେ, ମହତି ସ୍ୟନ୍ଦନେ ସ୍ଥିତୌ ।**
**ମାଧବଃ ପାଣ୍ଡବଶ୍-ଚୈବ, ଦିବ୍ୟୌ ଶଙ୍ଖୌ ପ୍ରଦଧ୍ମତୁଃ ॥**

ତାହାପରେ ଧଳାଘୋଡ଼ା ଯୋଗ୍ ଯାଇଥିବା ଉତ୍ତମ ରଥରେ ବସି ଶ୍ରୀକୃଷ୍ଣ ପରମାତ୍ମା ଓ ଅର୍ଜୁନ ମଧ୍ୟ ନିଜ ନିଜର ଦିବ୍ୟ ଶଙ୍ଖ ବଜାଇଲେ ॥ ୧୪ ॥

**ପାଞ୍ଚଜନ୍ୟଂ ହୃଷୀକେଶୋ, ଦେବଦତ୍ତଂ ଧନଞ୍ଜୟଃ ।**
**ପୌଣ୍ଡ୍ରଂ ଦଧ୍ମୌ ମହା-ଶଙ୍ଖଂ, ଭୀମକର୍ମା ବୃକୋଦରଃ ॥**

ଶ୍ରୀକୃଷ୍ଣ ପରମାତ୍ମା ପାଞ୍ଚଜନ୍ୟନାମକ, ଅର୍ଜୁନ ଦେବଦତ୍ତ-

ନାମକ ଏବଂ ଭୟାନକକର୍ମସାଧନକାରୀ ଭୀମସେନ ପୌଣ୍ଡ୍ରନାମକ ମହାଶଙ୍ଖ ବଜାଇଲେ ॥ ୧୫ ॥

**ଅନନ୍ତ-ବିଜୟଂ ରାଜା, କୁନ୍ତୀ-ପୁତ୍ରୋ ଯୁଧିଷ୍ଠିରଃ ।**
**ନକୁଲଃ ସହଦେବଶ୍-ଚ, ସୁଘୋଷ-ମଣିପୁଷ୍ପକୌ ॥**

କୁନ୍ତୀପୁତ୍ର ରାଜା ଯୁଧିଷ୍ଠିର ଅନନ୍ତବିଜୟନାମକ ଏବଂ ନକୁଳ ଓ ସହଦେବ ଯଥାକ୍ରମେ ସୁଘୋଷ ଓ ମଣିପୁଷ୍ପକ ନାମକ ଶଙ୍ଖ ବଜାଇଲେ ॥ ୧୬ ॥

**କାଶ୍ୟଶ୍-ଚ ପରମେଷ୍ୱାସଃ, ଶିଖଣ୍ଡୀ ଚ ମହାରଥଃ ।**
**ଧୃଷ୍ଟଦ୍ୟୁମ୍ନୋ ବିରାଟଶ୍-ଚ, ସାତ୍ୟକିଶ୍-ଚାପରାଜିତଃ ॥**
**ଦ୍ରୁପଦୋ ଦ୍ରୌପଦେୟାଶ୍-ଚ, ସର୍ବଶଃ ପୃଥିବୀ-ପତେ ।**
**ସୌଭଦ୍ରଶ୍-ଚ ମହାବାହୁଃ, ଶଙ୍ଖାନ୍-ଦଧ୍ମୁଃ ପୃଥକ୍-ପୃଥକ୍ ॥**

ଶ୍ରେଷ୍ଠ ଧନୁର୍ଦ୍ଧର କାଶୀରାଜ, ମହାରଥୀ ଶିଖଣ୍ଡୀ, ଧୃଷ୍ଟଦ୍ୟୁମ୍ନ, ରାଜାବିରାଟ, ଅଜେୟ ସାତ୍ୟକି, ରାଜା ଦ୍ରୁପଦ, ଦ୍ରୌପଦୀଙ୍କ ପାଞ୍ଚପୁତ୍ର ଏବଂ ସୁଭଦ୍ରାପୁତ୍ର ମହାବାହୁ ଅଭିମନ୍ୟୁ— ହେ ରାଜନ୍ ! ଏ ସମସ୍ତେ ସକଳ ଦିଗରୁ ପୃଥକ୍ ପୃଥକ୍ ଶଙ୍ଖ ବଜାଇଲେ ॥ ୧୭-୧୮ ॥

**ସ ଘୋଷୋ ଧାର୍ତ୍ତରାଷ୍ଟ୍ରାଣାଂ, ହୃଦୟାନି ବ୍ୟଦାରୟତ୍ ।**
**ନଭଶ୍-ଚ ପୃଥିବୀଂ ଚୈବ, ତୁମୁଲୋ ବ୍ୟନୁ-ନାଦୟନ୍ ॥**

ସେହି ଭୟଙ୍କର ଶବ୍ଦ ଆକାଶ ଓ ପୃଥିବୀକୁ ପ୍ରତିଧ୍ୱନିତ କରି ଦୁର୍ଯ୍ୟୋଧନାଦି କୌରବମାନଙ୍କର ହୃଦୟ ବିଦୀର୍ଣ୍ଣ କରିଦେଲା ॥ ୧୯ ॥

**ଅଥ ବ୍ୟବସ୍ଥିତାନ୍ ଦୃଷ୍ଟ୍ୱା, ଧାର୍ତ୍ତରାଷ୍ଟ୍ରାନ୍ କପିଧ୍ୱଜଃ ।**
**ପ୍ରବୃତ୍ତେ ଶସ୍ତ୍ର-ସମ୍ପାତେ, ଧନୁରୁଦ୍ୟମ୍ୟ ପାଣ୍ଡବଃ ॥**
**ହୃଷୀକେଶଂ ତଦା ବାକ୍ୟ,-ମିଦମାହ ମହୀପତେ ।**

ଅର୍ଜୁନ ଉବାଚ

**ସେନୟୋ-ରୁଭୟୋର୍-ମଧ୍ୟେ, ରଥଂ ସ୍ଥାପୟ ମେଽଚ୍ୟୁତ ॥**

ହେ ରାଜନ୍ ! ଏହାପରେ ବ୍ୟୂହରଚନାପୂର୍ବକ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇ ରହିଥିବା ଧୃତରାଷ୍ଟ୍ରଙ୍କ ସମ୍ବନ୍ଧୀୟମାନଙ୍କୁ ଦେଖି ଶସ୍ତ୍ରପ୍ରୟୋଗ କରିବାକୁ ଯାଉଥିବା ସମୟରେ କପିଧ୍ୱଜ ଅର୍ଜୁନ ନିଜ ଧନୁ ଉଠାଇ ହୃଷୀକେଶ ଶ୍ରୀକୃଷ୍ଣ ଭଗବାନଙ୍କୁ କହିଲେ— "ହେ ଅଚ୍ୟୁତ ! ମୋ ରଥକୁ ନେଇ ଦୁଇ ସେନାଙ୍କ ମଧ୍ୟରେ ଠିଆ କରାନ୍ତୁ" ॥ ୨୦-୨୧ ॥

**ଯାବଦେତାନ୍-ନିରୀକ୍ଷେଽହଂ, ଯୋଦ୍ଧୁ-କାମା-ନବସ୍ଥିତାନ୍ ।**
**କୈର୍ମୟା ସହ ଯୋଦ୍ଧବ୍ୟ,-ମସ୍ମିନ୍-ରଣ-ସମୁଦ୍ୟମେ ॥**

ଏହି ଯୁଦ୍ଧରୂପକ ବ୍ୟାପାରରେ ମୋତେ କାହା କାହା ସହିତ ଯୁଦ୍ଧ କରିବାକୁ ହେବ, ଯୁଦ୍ଧକ୍ଷେତ୍ରରେ ଠିଆ ହୋଇଥିବା ସେହି ଯୁଦ୍ଧାଭିଳାଷୀ ବିପକ୍ଷୀ ଯୋଦ୍ଧାମାନଙ୍କୁ ଯେପର୍ଯ୍ୟନ୍ତ ମୁଁ ଭଲରୂପେ ଦେଖି ଚିହ୍ନି ନ ନେଇଛି, ସେପର୍ଯ୍ୟନ୍ତ ରଥ ଠିଆ କରାନ୍ତୁ ॥ ୨୨ ॥

**ଯୋତ୍ସ୍ୟ-ମାନା-ନବେକ୍ଷେଽହଂ, ଯ ଏତେଽତ୍ର ସମାଗତାଃ ।**
**ଧାର୍ତ୍ତରାଷ୍ଟ୍ରସ୍ୟ ଦୁର୍ବୁଦ୍ଧେର୍,-ଯୁଦ୍ଧେ ପ୍ରିୟ-ଚିକୀର୍ଷବଃ ॥**

ଦୁର୍ବୁଦ୍ଧି ଦୁର୍ଯ୍ୟୋଧନର ଯୁଦ୍ଧରେ ହିତାକାଂକ୍ଷୀ ହୋଇ ଯେଉଁ

ରାଜାମାନେ ଏହି ସେନାରେ ଆସିଛନ୍ତି, ସେହି ଯୋଦ୍ଧାମାନଙ୍କୁ ମୁଁ ଟିକିଏ ଭଲ କରି ଦେଖିବି ॥ ୨୩ ॥

ସଞ୍ଜୟ ଉବାଚ

**ଏବମୁକ୍ତୋ ହୃଷୀକେଶୋ, ଗୁଡ଼ାକେଶେନ ଭାରତ ।**
**ସେନୟୋ-ରୁଭୟୋର୍-ମଧ୍ୟେ, ସ୍ଥାପୟିତ୍ୱା ରଥୋତ୍ତମମ୍ ॥**
**ଭୀଷ୍ମ-ଦ୍ରୋଣ-ପ୍ରମୁଖତଃ, ସର୍ବେଷାଂ ଚ ମହୀକ୍ଷିତାମ୍ ।**
**ଉବାଚ ପାର୍ଥ ପଶ୍ୟୈତାନ୍, ସମବେତାନ୍ କୁରୂନିତି ॥**

ସଞ୍ଜୟ କହିଲେ—ହେ ଧୃତରାଷ୍ଟ୍ର ! ଅର୍ଜୁନ ଏପରି କହିବାରୁ, ଭଗବାନ୍ ଶ୍ରୀକୃଷ୍ଣ ଦୁଇସେନାଙ୍କ ମଧ୍ୟରେ ଭୀଷ୍ମ ଓ ଦ୍ରୋଣାଚାର୍ଯ୍ୟଙ୍କ ସମ୍ମୁଖରେ ତଥା ସମସ୍ତ ରାଜାଙ୍କ ସମ୍ମୁଖରେ ଉତ୍ତମ ରଥଟି ଠିଆ କରାଇଦେଇ କହିଲେ—'ହେ ପାର୍ଥ, ଯୁଦ୍ଧପାଇଁ ଏକତ୍ରିତ ହୋଇଥିବା ଏହି କୌରବମାନଙ୍କୁ ଦେଖ ।' ॥ ୨୪-୨୫ ॥

**ତତ୍ରାପଶ୍ୟତ୍ ସ୍ଥିତାନ୍ ପାର୍ଥଃ, ପିତୃନଥ ପିତାମହାନ୍ ।**
**ଆଚାର୍ଯ୍ୟାନ୍ ମାତୁଲାନ୍ ଭ୍ରାତୃନ୍, ପୁତ୍ରାନ୍ ପୌତ୍ରାନ୍ ସଖୀଂସ୍-ତଥା ॥**
**ଶ୍ୱଶୁରାନ୍ ସୁହୃଦଶ୍-ଚୈବ, ସେନୟୋ-ରୁଭୟୋରପି ।**

ତା'ପରେ ପୃଥାପୁତ୍ର ଅର୍ଜୁନ ସେହି ଉଭୟସେନା ମଧ୍ୟରେ ବିଦ୍ୟମାନ ପିତୃ, ପିତାମହ, ଆଚାର୍ଯ୍ୟ, ମାମୁଁ, ଭାଇ, ପୁଅ, ନାତି, ମିତ୍ର, ଶ୍ୱଶୁର ଓ ସୁହୃଦ୍‌ମାନଙ୍କୁ ହିଁ ଦେଖିବାକୁ ପାଇଲେ ॥ ୨୬ ଓ ୨୭ ଶ୍ଳୋକର ପୂର୍ବାର୍ଦ୍ଧ ॥

**ତାନ୍ ସମୀକ୍ଷ୍ୟ ସ କୌନ୍ତେୟଃ, ସର୍ବାନ୍ ବନ୍ଧୂ-ନବସ୍ଥିତାନ୍ ॥**
**କୃପୟା ପରୟାବିଷ୍ଟୋ, ବିଷୀଦନ୍-ନିଦମବ୍ରବୀତ୍ ।**

ସେହି ଉପସ୍ଥିତ ସମସ୍ତ ବନ୍ଧୁଙ୍କୁ ଦେଖି କୁନ୍ତୀପୁତ୍ର ଅର୍ଜୁନ ଅତ୍ୟନ୍ତ କରୁଣାପରବଶ ହୋଇ ଶୋକ କରୁ କରୁ କହିଲେ,..... ॥ ୨୭ ଉତ୍ତରାର୍ଦ୍ଧ, ୨୮ ପୂର୍ବାର୍ଦ୍ଧ ॥

*ଅର୍ଜୁନ ଉବାଚ*

**ଦୃଷ୍ଟ୍ୱେମଂ ସ୍ୱଜନଂ କୃଷ୍ଣ, ଯୁଯୁତ୍ସୁଂ ସମୁପସ୍ଥିତମ୍ ॥**
**ସୀଦନ୍ତି ମମ ଗାତ୍ରାଣି, ମୁଖଂ ଚ ପରିଶୁଷ୍ୟତି ।**
**ବେପଥୁଶ୍-ଚ ଶରୀରେ ମେ, ରୋମହର୍ଷଶ୍-ଚ ଜାୟତେ ॥**

ଅର୍ଜୁନ କହିଲେ—ହେ କୃଷ୍ଣ ! ଯୁଦ୍ଧକ୍ଷେତ୍ରରେ ଦୃଢ଼-ଭାବରେ ଦଣ୍ଡାୟମାନ ହୋଇଥିବା ଏହି ଯୁଦ୍ଧାଭିଳାଷୀ ସ୍ୱଜନ-ସମୁଦାୟକୁ ଦେଖି ମୋର ଅଙ୍ଗମାନ ଶିଥିଳ ହୋଇଯାଉଛି, ମୁଖ ଶୁଖିଯାଉଛି ଓ ଦେହରେ କମ୍ପ ତଥା ରୋମାଞ୍ଚ ଜାତ ହେଉଛି ॥ ୨୮ ଶ୍ଲୋକର ଉତ୍ତରାର୍ଦ୍ଧ ଓ ୨୯ ॥

**ଗାଣ୍ଡୀବଂ ସ୍ରଂସତେ ହସ୍ତାତ୍, ତ୍ୱକ୍ ଚୈବ ପରିଦହ୍ୟତେ ।**
**ନ ଚ ଶକ୍ନୋ-ମ୍ୟବସ୍ଥାତୁଂ, ଭ୍ରମତୀବ ଚ ମେ ମନଃ ॥**

ହାତରୁ ଗାଣ୍ଡୀବ ଧନୁ ଖସିପଡୁଛି, ଚର୍ମ ବି ଭୀଷଣ ଜ୍ୱାଳା କରୁଛି ତଥା ମୋର ମନ ଘୂର୍ଣ୍ଣିତ ହେଲାପରି ଲାଗୁଛି । ତେଣୁ ମୁଁ ଠିଆ ହୋଇ ରହିବାକୁ ବି ସମର୍ଥ ହୋଇପାରୁ ନାହିଁ ॥ ୩୦ ॥

**ନିମିତ୍ତାନି ଚ ପଶ୍ୟାମି, ବିପରୀତାନି କେଶବ ।**
**ନ ଚ ଶ୍ରେୟୋଽନୁ-ପଶ୍ୟାମି, ହତ୍ୱା ସ୍ୱଜନ-ମାହବେ ॥**

ହେ କେଶବ ! ମୁଁ ଲକ୍ଷଣସବୁକୁ ବିପରୀତ ହିଁ ଦେଖୁଛି । ଯୁଦ୍ଧରେ ସ୍ୱଜନସମୁଦାୟକୁ ମାରିବାରେ କୌଣସି କଲ୍ୟାଣ ବି ଦେଖିପାରୁ ନାହିଁ ॥ ୩୧ ॥

**ନ କାଙ୍‌କ୍ଷେ ବିଜୟଂ କୃଷ୍ଣ, ନ ଚ ରାଜ୍ୟଂ ସୁଖାନି ଚ ।**
**କିଂ ନୋ ରାଜ୍ୟେନ ଗୋବିନ୍ଦ, କିଂ ଭୋଗୈର୍‌-ଜୀବିତେନ ବା ॥**

ହେ କୃଷ୍ଣ ! ମୁଁ ବିଜୟ ଚାହୁଁ ନାହିଁ, କି ରାଜ୍ୟ ତଥା ସୁଖ ମଧ୍ୟ ଚାହୁଁ ନାହିଁ । ହେ ଗୋବିନ୍ଦ ! ଆମର ଏପରି ରାଜ୍ୟରେ କି ପ୍ରୟୋଜନ ! ଅଥବା ଏପରି ଭୋଗମାନଙ୍କରେ ଓ ଜୀବନରେ ବି କି ଲାଭ ଅଛି ! ॥ ୩୨ ॥

**ଯେଷାମର୍ଥେ କାଂକ୍ଷିତଂ ନୋ, ରାଜ୍ୟଂ ଭୋଗାଃ ସୁଖାନି ଚ ।**
**ତ ଇମେଽବସ୍ଥିତା ଯୁଦ୍ଧେ, ପ୍ରାଣାଂସ୍‌-ତ୍ୟକ୍ତ୍ୱା ଧନାନି ଚ ॥**

ଆମେ ଯେଉଁମାନଙ୍କ ପାଇଁ ରାଜ୍ୟ, ଭୋଗ ଓ ସୁଖାଦି ଅଭିଳାଷ କରୁଛୁ, ଏହି ସେହିମାନେ ଧନ ଓ ଜୀବନର ଆଶା ପରିତ୍ୟାଗ କରି ଯୁଦ୍ଧ କରିବାକୁ ଠିଆ ହୋଇଛନ୍ତି ॥ ୩୩ ॥

**ଆଚାର୍ଯ୍ୟାଃ ପିତରଃ ପୁତ୍ରାସ୍‌-ତଥୈବ ଚ ପିତାମହାଃ ।**
**ମାତୁଲାଃ ଶ୍ୱଶୁରାଃ ପୌତ୍ରାଃ, ଶ୍ୟାଲାଃ ସମ୍ବନ୍ଧିନସ୍‌-ତଥା ॥**

ଗୁରୁମାନେ, ପିତୃମାନେ, ପୁତ୍ରମାନେ ଏବଂ ସେହିପରି ପିତାମହମାନେ, ମାମୁଁମାନେ, ଶ୍ୱଶୁରମାନେ, ନାତିମାନେ,

ଶାଳକମାନେ ତଥା ଅନ୍ୟ ସମ୍ବନ୍ଧୀୟମାନେ ବି ଅଛନ୍ତି ॥ ୩୪ ॥

**ଏତାନ୍ନ ହନ୍ତୁ-ମିଚ୍ଛାମି, ଘ୍ନତୋଽପି ମଧୁସୂଦନ ।**
**ଅପି ତ୍ରୈଲୋକ୍ୟ-ରାଜ୍ୟସ୍ୟ, ହେତୋଃ କିଂ ନୁ ମହୀ-କୃତେ ॥**

ହେ ମଧୁସୂଦନ ! ଏମାନେ ମୋତେ ମାରିଦେଲେ ବି ମୁଁ ଏମାନଙ୍କୁ ମାରିବାକୁ ଚାହେଁ ନାହିଁ। ପୃଥିବୀ ଲାଭ କରିବା କଥା କିଏ ପଚାରେ, ତିନିଲୋକର ରାଜ୍ୟାଧିକାର ମିଳିବାର ଥିଲେ ମଧ୍ୟ, ମୁଁ ଏମାନଙ୍କୁ ମାରିବାକୁ ଚାହେଁ ନାହିଁ॥ ୩୫ ॥

**ନିହତ୍ୟ ଧାର୍ତ୍ତରାଷ୍ଟ୍ରାନ୍ନଃ, କା ପ୍ରୀତିଃ ସ୍ୟାଜ୍-ଜନାର୍ଦ୍ଦନ ।**
**ପାପ-ମେବାଶ୍ରୟେ-ଦସ୍ମାନ୍, ହତ୍ୱୈତା-ନାତତାୟିନଃ ॥**

ହେ ଜନାର୍ଦ୍ଦନ ! ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ ମାରିଦେଲେ ଆମକୁ କି ସୁଖ ମିଳିବ? ଏହି ଆତତାୟୀମାନଙ୍କୁ ମାରିଲେ ତ ଆମକୁ ପାପ ହିଁ ଲାଗିବ ॥ ୩୬ ॥

**ତସ୍ମାନ୍ନାର୍ହା ବୟଂ ହନ୍ତୁଂ, ଧାର୍ତ୍ତରାଷ୍ଟ୍ରାନ୍ ସ୍ୱ-ବାନ୍ଧବାନ୍ ।**
**ସ୍ୱଜନଂ ହି କଥଂ ହତ୍ୱା, ସୁଖିନଃ ସ୍ୟାମ ମାଧବ ॥**

ତେଣୁ ହେ ମାଧବ ! ନିଜର ବାନ୍ଧବ ଦୁର୍ଯ୍ୟୋଧନାଦିଙ୍କୁ ମାରିବା ଆମ ପକ୍ଷରେ ଉଚିତ ହେବ ନାହିଁ; କାରଣ ନିଜ କୁଟୁମ୍ବ ଲୋକଙ୍କୁ ମାରି ଆମେ କିପରି ସୁଖୀ ହୋଇପାରିବୁ? ॥ ୩୭ ॥

**ଯଦ୍ୟପ୍ୟେତେ ନ ପଶ୍ୟନ୍ତି, ଲୋଭୋପହତ-ଚେତସଃ ।**
**କୁଲ୍-କ୍ଷୟ-କୃତଂ ଦୋଷଂ, ମିତ୍ର-ଦ୍ରୋହେ ଚ ପାତକମ୍ ॥**

**କଥଂ ନ ଜ୍ଞେୟ-ମସ୍ମାଭିଃ, ପାପା-ଦସ୍ମାନ୍-ନିବର୍ତ୍ତିତୁମ୍ ।**
**କୁଲ୍-କ୍ଷୟ-କୃତଂ ଦୋଷଂ, ପ୍ରପଶ୍ୟଦ୍‌ଭିର୍-ଜନାର୍ଦ୍ଦନ ॥**

ଯଦ୍ୟପି ଲୋଭବଶତଃ ଭ୍ରଷ୍ଟଚିତ୍ତ ହୋଇଯାଇଥିବା ଏହି ଲୋକେ କୁଳକ୍ଷୟଜନିତ ଦୋଷ ଓ ମିତ୍ରଦ୍ରୋହଜନିତ ପାପ ଜାଣିପାରୁ ନାହାନ୍ତି, ତଥାପି ହେ ଜନାର୍ଦ୍ଦନ ! କୁଳନାଶରୁ ଉତ୍ପନ୍ନ ଦୋଷକୁ ଜାଣିପାରୁଥିବା ଆମ୍ଭେମାନେ ଏପରି ପାପରୁ ଦୂରେଇ-ଯିବାକୁ ବିଚାର ନ କରିବୁ କାହିଁକି? ॥ ୩୮-୩୯ ॥

**କୁଲ୍-କ୍ଷୟେ ପ୍ରଣଶ୍ୟନ୍ତି, କୁଲ୍-ଧର୍ମାଃ ସନାତନାଃ ।**
**ଧର୍ମେ ନଷ୍ଟେ କୁଲଂ କୃତ୍ସ୍ନ,-ମଧର୍ମୋଽଭି-ଭବତ୍ୟୁତ ॥**

କୁଳନାଶ ହେଲେ ସନାତନ କୁଳଧର୍ମ ନଷ୍ଟ ହୋଇଯାଏ । ଧର୍ମ ନଷ୍ଟ ହୋଇଗଲେ, ସମୁଦାୟ କୁଳକୁ ପାପ ମଧ୍ୟ ବିଶେଷ-ଭାବରେ ବ୍ୟାପିଯାଏ ॥ ୪୦ ॥

**ଅଧର୍ମାଭି-ଭବାତ୍-କୃଷ୍ଣ, ପ୍ରଦୁଷ୍ୟନ୍ତି କୁଲ୍-ସ୍ତ୍ରିୟଃ ।**
**ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ, ଜାୟତେ ବର୍ଣ୍ଣ-ସଙ୍କରଃ ॥**

ହେ କୃଷ୍ଣ ! ପାପ ଅଧିକ ବଢ଼ିଗଲେ କୁଳସ୍ତ୍ରୀମାନେ ଅତ୍ୟନ୍ତ ଦୂଷିତା ହୋଇଯାଆନ୍ତି; ହେ ବାର୍ଷ୍ଣେୟ ! ସ୍ତ୍ରୀମାନେ ଦୂଷିତା ହୋଇଗଲେ, ବର୍ଣ୍ଣସଙ୍କର ଉତ୍ପନ୍ନ ହୁଅନ୍ତି ॥ ୪୧ ॥

**ସଙ୍କରୋ ନରକାୟୈବ, କୁଲଘ୍ନାନାଂ କୁଲସ୍ୟ ଚ ।**
**ପତନ୍ତି ପିତରୋ ହ୍ୟେଷାଂ, ଲୁପ୍ତ-ପିଣ୍ଡୋଦକ-କ୍ରିୟାଃ ॥**

କୁଳନାଶକାରୀମାନଙ୍କୁ ତଥା କୁଳକୁ ନରକକୁ ନେଇଯିବା

ଲାଗି ହିଁ ବର୍ଣ୍ଣସଙ୍କର ଜାତ ହୋଇଥାଏ । ପିଣ୍ଡକ୍ରିୟା ଓ ଜଳଦାନ-କ୍ରିୟା ଲୁପ୍ତ ହେବାରୁ ପିତୃଲୋକମାନେ ଶ୍ରାଦ୍ଧ ଓ ତର୍ପଣରୁ ବଞ୍ଚିତ ହୋଇ ଅଧୋଗତି ପ୍ରାପ୍ତ ହୁଅନ୍ତି ॥ ୪୨ ॥

**ଦୋଷୈରେତୈଃ କୁଲଘ୍ନାନାଂ, ବର୍ଣ୍ଣ-ସଙ୍କର-କାରକୈଃ ।**
**ଉତ୍ସାଦ୍ୟନ୍ତେ ଜାତି-ଧର୍ମାଃ, କୁଲ୍-ଧର୍ମାଶ୍-ଚ ଶାଶ୍ୱତାଃ ॥**

ଏହି ବର୍ଣ୍ଣସଙ୍କରକାରକ ଦୋଷମାନଙ୍କ ଦ୍ୱାରା କୁଳଘାତକମାନଙ୍କର ସନାତନ କୁଳଧର୍ମ ଓ ଜାତିଧର୍ମ ନଷ୍ଟ ହୋଇଯାଏ ॥ ୪୩ ॥

**ଉତ୍ସନ୍ନ-କୁଲ୍-ଧର୍ମାଣାଂ, ମନୁଷ୍ୟାଣାଂ ଜନାର୍ଦ୍ଦନ ।**
**ନରକେଽନିୟତଂ ବାସୋ, ଭବତୀ-ତ୍ୟନୁ-ଶୁଶ୍ରୁମ ॥**

ହେ ଜନାର୍ଦ୍ଦନ ! ଯେଉଁମାନଙ୍କର କୁଳଧର୍ମ ନଷ୍ଟ ହୋଇଯାଇଛି, ସେମାନଙ୍କର ଅନିଶ୍ଚିତ କାଳପର୍ଯ୍ୟନ୍ତ ନରକବାସ ହୁଏ ବୋଲି ଆମେ ଶୁଣିଆସିଛୁ ॥ ୪୪ ॥

**ଅହୋ ବତ ମହତ୍-ପାପଂ, କର୍ତ୍ତୁଂ ବ୍ୟବସିତା ବୟମ୍ ।**
**ୟଦ୍-ରାଜ୍ୟ-ସୁଖ-ଲୋଭେନ, ହନ୍ତୁଂ ସ୍ୱଜନ-ମୁଦ୍ୟତାଃ ॥**

ହାୟ ! କି ଦୁଃଖର କଥା ! ଆମ୍ଭେମାନେ ବୁଦ୍ଧିମାନ୍ ହୋଇ ମଧ୍ୟ ମହାପାପ କରିବାକୁ ପ୍ରସ୍ତୁତ ହୋଇଯାଇଛୁ; ରାଜ୍ୟ ଓ ସୁଖପ୍ରାପ୍ତି ଲୋଭରେ ଆମେ ନିଜର ଆତ୍ମୀୟସ୍ୱଜନମାନଙ୍କୁ ମାରିଦେବାକୁ ଉଦ୍ୟତ ହୋଇଯାଇଛୁ ! ॥ ୪୫ ॥

**ୟଦି ମାମପ୍ରତୀକାର,-ମଶସ୍ତ୍ରଂ ଶସ୍ତ୍ର-ପାଣୟଃ ।**
**ଧାର୍ତ୍ତରାଷ୍ଟ୍ରା ରଣେ ହନ୍ୟୁସ୍,-ତନ୍ମେ କ୍ଷେମତରଂ ଭବେତ୍ ॥**

ଯଦି ମୋପରି ନିଃଶସ୍ତ୍ର ଓ ପ୍ରତିକାରରହିତ ଲୋକକୁ ଧୃତରାଷ୍ଟ୍ରଙ୍କ ଶସ୍ତ୍ରଧାରୀ ପୁତ୍ରମାନେ ଯୁଦ୍ଧରେ ମାରିଦିଅନ୍ତି, ତେବେ ବି ତାହା ମୋ ପକ୍ଷରେ ଅଧିକ ମଙ୍ଗଳକର ହେବ ॥ ୪୬ ॥

*ସଞ୍ଜୟ ଉବାଚ*

**ଏବ-ମୁକ୍ତ୍ୱାର୍ଜୁନଃ ସଂଖ୍ୟେ, ରଥୋପସ୍ଥ ଉପାବିଶତ୍ ।**
**ବିସୃଜ୍ୟ ସଶରଂ ଚାପଂ, ଶୋକ-ସଂବିଗ୍ନ-ମାନସଃ ॥**

**ସଞ୍ଜୟ କହିଲେ**—ରଣଭୂମିରେ ଶୋକରେ ଉଦ୍‌ବିଗ୍ନମନା ଅର୍ଜୁନ ଏପରି କହି, ବାଣସହିତ ଧନୁ ତ୍ୟାଗ କରିଦେଇ ରଥର ପଛପଟେ ବସିପଡ଼ିଲେ ॥ ୪୭ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ଅର୍ଜୁନ-ବିଷାଦ-ଯୋଗୋ ନାମ ପ୍ରଥମୋଽଧ୍ୟାୟଃ ॥ ୧ ॥*



॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ଦ୍ୱିତୀୟୋଽଧ୍ୟାୟଃ

*ସଞ୍ଜୟ ଉବାଚ*

**ତଂ ତଥା କୃପୟାବିଷ୍ଟ,-ମଶ୍ରୁ-ପୂର୍ଣ୍ଣା-କୁଲେକ୍ଷଣମ୍ ।**
**ବିଷୀଦନ୍ତ-ମିଦଂ ବାକ୍ୟ,-ମୁବାଚ ମଧୁସୂଦନଃ ॥**

ସଂଜୟ କହିଲେ—ସେପରି କରୁଣାବିଷ୍ଟ ଏବଂ ଅଶ୍ରୁପୂର୍ଣ୍ଣ ବ୍ୟାକୁଳନେତ୍ର ଶୋକାକୁଳ ଅର୍ଜୁନଙ୍କୁ ଭଗବାନ ମଧୁସୂଦନ ଏହି କଥା କହିଲେ,— ॥ ୧ ॥

*ଶ୍ରୀଭଗବାନୁବାଚ*

**କୁତସ୍ତ୍ୱା କଶ୍ମଲ-ମିଦଂ, ବିଷମେ ସମୁପସ୍ଥିତମ୍ ।**
**ଅନାର୍ୟ୍ୟ-ଜୁଷ୍ଟ-ମସ୍ୱର୍ଗ୍ୟ,-ମକୀର୍ତ୍ତି-କର-ମର୍ଜୁନ ॥**

ଶ୍ରୀଭଗବାନ୍ କହିଲେ—ହେ ଅର୍ଜୁନ ! ତୁମକୁ ଏହି ଅସମୟରେ ଏହି ମୋହ କେଉଁଠୁ ଆସିଗଲା? କାରଣ ଏହା ଶ୍ରେଷ୍ଠ ପୁରୁଷମାନଙ୍କ ଦ୍ୱାରା ଆଚରିତ ନୁହେଁ, କିମ୍ବା ସ୍ୱର୍ଗପ୍ରଦାୟକ କି କୀର୍ତ୍ତିପ୍ରଦାୟକ ମଧ୍ୟ ନୁହେଁ ॥ ୨ ॥

**କ୍ଲୈବ୍ୟଂ ମା ସ୍ମ ଗମଃ ପାର୍ଥ, ନୈତତ୍-ତ୍ୱୟ୍ୟୁପ-ପଦ୍ୟତେ ।**
**କ୍ଷୁଦ୍ରଂ ହୃଦୟ-ଦୌର୍ବଲ୍ୟଂ, ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍-ତପ ॥**

ତେଣୁ ହେ ଅର୍ଜୁନ ! ନପୁଂସକତା ପ୍ରାପ୍ତ ହୁଅ ନାହିଁ। ତୁମ ପକ୍ଷରେ ଏହା ଉଚିତ ନୁହେଁ। ହେ ଶତ୍ରୁତାପନ ! ହୃଦୟର ତୁଚ୍ଛ ଦୁର୍ବଳତା ତ୍ୟାଗ କରି ଯୁଦ୍ଧ କରିବାକୁ ଠିଆ ହୋଇଯାଅ ॥ ୩ ॥

*ଅର୍ଜୁନ ଉବାଚ*

**କଥଂ ଭୀଷ୍ମ-ମହଂ ସଂଖ୍ୟେ, ଦ୍ରୋଣଂ ଚ ମଧୁସୂଦନ ।**
**ଇଷୁଭିଃ ପ୍ରତି ଯୋତ୍ସ୍ୟାମି, ପୂଜାର୍ହା-ବରି-ସୂଦନ ॥**

ଅର୍ଜୁନ କହିଲେ—ହେ ମଧୁସୂଦନ ! ରଣଭୂମିରେ ଭୀଷ୍ମପିତାମହ ଓ ଦ୍ରୋଣାଚାର୍ଯ୍ୟଙ୍କ ବିରୁଦ୍ଧରେ ମୁଁ କିପରି ବାଣ ମାରି ଲଢ଼ିବି? କାରଣ, ହେ ଅରିସୂଦନ ! ସେ ଦୁହେଁ ମୋର ପୂଜନୀୟ ॥ ୪ ॥

**ଗୁରୂ-ନହତ୍ୱା ହି ମହାନୁଭାବାନ୍**
**ଶ୍ରେୟୋ ଭୋକ୍ତୁଂ ଭୈକ୍ଷ୍ୟ-ମପୀହ ଲୋକେ ।**
**ହତ୍ୱାର୍ଥି-କାମାଂସ୍ତୁ ଗୁରୂନିହୈବ**
**ଭୁଞ୍ଜୀୟ ଭୋଗାନ୍ ରୁଧିର-ପ୍ରଦିଗ୍ଧାନ୍ ॥**

ତେଣୁ ଏହି ମହାନୁଭବ ଗୁରୁଜନମାନଙ୍କୁ ମାରିବା ଅପେକ୍ଷା ମୁଁ ଏହି ଲୋକରେ ଭିକ୍ଷାନ୍ନଦ୍ୱାରା ଜୀବିକା ନିର୍ବାହ କରିବା କଲ୍ୟାଣକର ବୋଲି ମନେ କରୁଛି; କାରଣ ଗୁରୁଜନମାନଙ୍କୁ ମାରିଲେ ଏହି ଲୋକରେ ସେମାନଙ୍କ ରକ୍ତସିକ୍ତ ଅର୍ଥ ଓ କାମରୂପକ ଭୋଗସାମଗ୍ରୀ ହିଁ ତ ଭୋଗ କରିବି ॥ ୫ ॥

**ନ ଚୈତଦ୍-ବିଦ୍ମଃ କତରନ୍ନୋ ଗରୀୟୋ-**
**ଯଦ୍ୱା ଜୟେମ ଯଦି ବା ନୋ ଜୟେୟୁଃ ।**

**ଯାନେବ ହତ୍ୱା ନ ଜିଜୀବିଷାମସ୍-**
**ତେଽବସ୍ଥିତାଃ ପ୍ରମୁଖେ ଧାର୍ତ୍ତରାଷ୍ଟ୍ରାଃ ॥**

ଆମର ଯୁଦ୍ଧ କରିବା ଓ ନ କରିବା—ଏ ଦୁଇଟି ମଧ୍ୟରୁ କେଉଁଟି ଶ୍ରେଷ୍ଠ, ଆମେ ତାହା ଜାଣି ନାହୁଁ; ଆମେ ସେମାନଙ୍କୁ ଜିତିବୁ, କି ସେମାନେ ଆମକୁ ଜିତିବେ, ତାହା ମଧ୍ୟ ଜାଣି ନାହୁଁ; ଯେଉଁମାନଙ୍କୁ ମାରି ଆମେ ବଞ୍ଚିବାକୁ ଇଚ୍ଛା ମଧ୍ୟ କରୁ ନାହୁଁ, ଆମର ସେହି ଆତ୍ମୀୟ ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ହିଁ ଆମ ସମ୍ମୁଖରେ ଯୁଦ୍ଧ କରିବାକୁ ଠିଆ ହୋଇଛନ୍ତି ॥ ୬ ॥

**କାର୍ପଣ୍ୟ-ଦୋଷୋ-ପହତ-ସ୍ୱଭାବଃ**
**ପୃଚ୍ଛାମି ତ୍ୱାଂ ଧର୍ମ-ସଂମୂଢ଼-ଚେତାଃ ।**
**ଯଚ୍ଛ୍ରେୟଃ ସ୍ୟାନ୍-ନିଶ୍ଚିତଂ ବ୍ରୂହି ତନ୍ମେ**
**ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନମ୍ ॥**

ତେଣୁ କାପୁରୁଷତାରୂପକ ଦୋଷହେତୁ ନଷ୍ଟସ୍ୱଭାବଯୁକ୍ତ ତଥା ଧର୍ମବିଷୟରେ ମୋହିତଚିତ୍ତ ହୋଇଥିବା ମୁଁ ଆପଣଙ୍କୁ ପଚାରୁଛି, ମୋ ପକ୍ଷରେ କ'ଣ କରିବା ନିଶ୍ଚିତ କଲ୍ୟାଣକର, ତାହା ମୋତେ କହନ୍ତୁ; କାରଣ ମୁଁ ଆପଣଙ୍କର ଶିଷ୍ୟ । ମୋପରି ଶରଣାଗତକୁ ଆପଣ ଉପଦେଶ ଦିଅନ୍ତୁ ॥ ୭ ॥

**ନ ହି ପ୍ରପଶ୍ୟାମି ମମା-ପନୁଦ୍ୟାଦ୍-**
**ଯଚ୍ଛୋକ-ମୁଚ୍ଛୋଷଣ-ମିନ୍ଦ୍ରିୟାଣାମ୍ ।**
**ଅବାପ୍ୟ ଭୂମା-ବସପତ୍ନ-ମୃଦ୍ଧଂ**
**ରାଜ୍ୟଂ ସୁରାଣା-ମପି ଚାଧିପତ୍ୟମ୍ ॥**

କାରଣ ଇହଲୋକରେ ନିଷ୍କଣ୍ଟକ, ଧନଧାନ୍ୟସମ୍ପନ୍ନ ରାଜ୍ୟ

ଏବଂ ଦେବତାମାନଙ୍କର ଆଧିପତ୍ୟ ପାଇଗଲେ ମଧ୍ୟ ମୁଁ ମୋର ଇନ୍ଦ୍ରିୟମାନଙ୍କୁ ଶୁଷ୍କ କରିଦେଉଥିବା ଶୋକକୁ ଦୂର କରିପାରିବା ପରି କୌଣସି ଉପାୟ ଦେଖିପାରୁ ନାହିଁ ॥ ୮ ॥

*ସଞ୍ଜୟ ଉବାଚ*

**ଏବମୁକ୍ତ୍ୱା ହୃଷୀକେଶଂ, ଗୁଡ଼ାକେଶଃ ପରନ୍ତ-ତପ ।**
**ନ ଯୋତ୍ସ୍ୟ ଇତି ଗୋବିନ୍ଦ,-ମୁକ୍ତ୍ୱା ତୂଷ୍ଣୀଂ ବଭୂବ ହ ॥**

**ସଞ୍ଜୟ ଧୃତରାଷ୍ଟ୍ରଙ୍କୁ କହିଲେ**—ହେ ରାଜନ୍ ! ନିଦ୍ରାଜୟୀ ଅର୍ଜୁନ ଅନ୍ତର୍ଯାମୀ ଭଗବାନ ଶ୍ରୀକୃଷ୍ଣଙ୍କୁ ଏପରି କହିଲେ ଏବଂ ଶ୍ରୀ ଗୋବିନ୍ଦ ଭଗବାନଙ୍କୁ 'ମୁଁ ଯୁଦ୍ଧ କରିବି ନାହିଁ' ବୋଲି ସ୍ପଷ୍ଟଭାବରେ କହିଦେଇ ଚୁପ୍ ହୋଇଗଲେ ॥ ୯ ॥

**ତମୁବାଚ ହୃଷୀକେଶଃ, ପ୍ରହସନ୍-ନିବ ଭାରତ ।**
**ସେନୟୋ-ରୁଭୟୋର୍-ମଧ୍ୟେ, ବିଷୀଦନ୍ତ-ମିଦଂ ବଚଃ ॥**

ହେ ଭରତବଂଶୀ ଧୃତରାଷ୍ଟ୍ର ! ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣ ପରମାତ୍ମା ଦୁଇ ସେନାଙ୍କ ମଧ୍ୟରେ ଶୋକ କରୁଥିବା ସେହି ଅର୍ଜୁନଙ୍କୁ ସ୍ମିତହାସ କରି କହିଲେ,—॥ ୧୦ ॥

*ଶ୍ରୀଭଗବାନୁବାଚ*

**ଅଶୋଚ୍ୟା-ନନ୍ୱ-ଶୋଚସ୍-ତ୍ୱଂ, ପ୍ରଜ୍ଞା-ବାଦାଂଶ୍-ଚ ଭାଷସେ ।**
**ଗତାସୂ-ନଗତାସୂଂଶ୍-ଚ, ନାନୁ-ଶୋଚନ୍ତି ପଣ୍ଡିତାଃ ॥**

**ଶ୍ରୀଭଗବାନ୍ କହିଲେ**—ହେ ଅର୍ଜୁନ ! ଯାହାଙ୍କ ପାଇଁ ଶୋକ କରିବା ଉଚିତ ନୁହେଁ, ସେମାନଙ୍କ ପାଇଁ ଶୋକ କରୁଛ

ଏବଂ ପଣ୍ଡିତଙ୍କ ପରି କଥା କହୁଛ ! କିନ୍ତୁ, ଯାହାଙ୍କର ପ୍ରାଣ ଚାଲିଯାଇଛି, ସେମାନଙ୍କ ପାଇଁ ଏବଂ ଯାହାଙ୍କର ପ୍ରାଣ ଯାଇ ନାହିଁ, ସେମାନଙ୍କ ପାଇଁ ମଧ୍ୟ ପଣ୍ଡିତମାନେ ଶୋକ କରନ୍ତି ନାହିଁ ॥ ୧୧ ॥

**ନ ତ୍ୱେବାହଂ ଜାତୁ ନାସଂ, ନ ତ୍ୱଂ ନେମେ ଜନାଧିପାଃ ।**
**ନ ଚୈବ ନ ଭବିଷ୍ୟାମଃ, ସର୍ବେ ବୟମତଃ ପରମ୍ ॥**

ଏପରି ନୁହେଁ ଯେ, କୌଣସି କାଳରେ ମୁଁ ନ ଥିଲି, କି ତୁମେ ନ ଥିଲ ଅଥବା ଏହି ରାଜାମାନେ ନ ଥିଲେ । ପୁଣି ଏପରି ମଧ୍ୟ ଘଟିବ ନାହିଁ ଯେ, ଭବିଷ୍ୟତରେ ଆମେ ସମସ୍ତେ ରହିବା ନାହିଁ* ॥ ୧୨ ॥

**ଦେହିନୋଽସ୍ମିନ୍ ଯଥା ଦେହେ, କୌମାରଂ ଯୌବନଂ ଜରା ।**
**ତଥା ଦେହାନ୍ତର-ପ୍ରାପ୍ତିର୍,-ଧୀରସ୍-ତତ୍ର ନ ମୁହ୍ୟତି ॥**

ଯେପରି ଏହି ଦେହରେ ଜୀବାତ୍ମାର ବାଲ୍ୟାବସ୍ଥା, ଯୌବନାବସ୍ଥା ଓ ବୃଦ୍ଧାବସ୍ଥା ହୋଇଥାଏ, ସେହିପରି ଅନ୍ୟ ଶରୀର ମଧ୍ୟ ପ୍ରାପ୍ତ ହୁଏ; ସେହି ବିଷୟରେ ଧୀର ପୁରୁଷ ମୋହଗ୍ରସ୍ତ ହୁଅନ୍ତି ନାହିଁ ॥ ୧୩ ॥

**ମାତ୍ରା-ସ୍ପର୍ଶାସ୍-ତୁ କୌନ୍ତେୟ, ଶୀତୋଷ୍ଣ-ସୁଖ-ଦୁଃଖଦାଃ ।**
**ଆଗମା-ପାୟିନୋଽନିତ୍ୟାସ୍,-ତାଂସ୍-ତିତିକ୍ଷସ୍ୱ ଭାରତ ॥**

* ଏପରି କହି ଭଗବାନ୍ ଆତ୍ମାର ନିତ୍ୟତା ଏବଂ ନିର୍ବିକାରତା ନିରୂପଣ କରିଛନ୍ତି ।

କାରଣ, ହେ କୁନ୍ତୀପୁତ୍ର ! ଶୀତ-ଉଷ୍ଣ ଓ ସୁଖ-ଦୁଃଖ ଦେଉଥିବା ଇନ୍ଦ୍ରିୟ ଓ ବିଷୟମାନଙ୍କର ସଂଯୋଗ ତ ଉତ୍ପତ୍ତି-ବିନାଶଶୀଳ ଓ ଅନିତ୍ୟ; ତେଣୁ ହେ ଭାରତ ! ତୁମେ ସେଗୁଡ଼ିକ ସହିଯାଅ ॥ ୧୪ ॥

**ଯଂ ହି ନ ବ୍ୟଥୟନ୍ତ୍ୟେତେ, ପୁରୁଷଂ ପୁରୁଷର୍ଷଭ ।**
**ସମ-ଦୁଃଖ-ସୁଖଂ ଧୀରଂ, ସୋଽମୃତତ୍ୱାୟ କଳ୍ପତେ ॥**

କାରଣ, ହେ ପୁରୁଷଶ୍ରେଷ୍ଠ ! ସୁଖ-ଦୁଃଖକୁ ସମାନ ଦୃଷ୍ଟିରେ ଦେଖୁଥିବା ଯେଉଁ ଧୀରପୁରୁଷଙ୍କୁ ଏହି ଇନ୍ଦ୍ରିୟ ଓ ବିଷୟର ସଂଯୋଗ ବ୍ୟାକୁଳ କରିପାରେ ନାହିଁ, ସେ ହିଁ ମୋକ୍ଷପାଇଁ ଯୋଗ୍ୟ ହୁଅନ୍ତି ॥ ୧୫ ॥

**ନାସତୋ ବିଦ୍ୟତେ ଭାବୋ, ନାଭାବୋ ବିଦ୍ୟତେ ସତଃ ।**
**ଉଭୟୋରପି ଦୃଷ୍ଟୋଽନ୍ତସ୍‌-ତ୍ୱନୟୋସ୍‌-ତତ୍ତ୍ୱ-ଦର୍ଶିଭିଃ ॥**

ଅସତ୍‌ ବସ୍ତୁର ଅସ୍ତିତ୍ୱ ନାହିଁ ଏବଂ ସତ୍‌ବସ୍ତୁର ଅଭାବ ନାହିଁ । ଏପରିଭାବରେ ଉକ୍ତ ଦୁଇଟିଯାକର ତତ୍ତ୍ୱ ତତ୍ତ୍ୱଜ୍ଞାନୀ ପୁରୁଷମାନଙ୍କ ଦ୍ୱାରା ଦେଖାଯାଇଛି ॥ ୧୬ ॥

**ଅବିନାଶି ତୁ ତଦ୍‌-ବିଦ୍ଧି, ଯେନ ସର୍ବମିଦଂ ତତମ୍‌ ।**
**ବିନାଶ-ମବ୍ୟୟସ୍ୟାସ୍ୟ, ନ କଶ୍ଚିତ୍‌ କର୍ତ୍ତୁ-ମର୍ହତି ॥**

ଏହି ନ୍ୟାୟରେ ଯାହାଙ୍କ ଦ୍ୱାରା ଏହି ସମ୍ପୂର୍ଣ୍ଣ ଜଗତ୍‌ ବ୍ୟାପ୍ତ ହୋଇଛି, ତାହାଙ୍କୁ ଅବିନାଶୀ ବୋଲି ଜାଣ । ସେହି ଅବିନାଶୀଙ୍କୁ ବିନାଶ କରିବାକୁ କେହି ହେଲେ ସମର୍ଥ ନୁହେଁ ॥ ୧୭ ॥

**ଅନ୍ତବନ୍ତ ଇମେ ଦେହା, ନିତ୍ୟସ୍ୟୋକ୍ତାଃ ଶରୀରିଣଃ ।**
**ଅନାଶିନୋଽପ୍ରମେୟସ୍ୟ, ତସ୍ମାଦ୍-ଯୁଧ୍ୟସ୍ୱ ଭାରତ ॥**

ନାଶରହିତ, ଅପ୍ରମେୟ ଓ ନିତ୍ୟସ୍ୱରୂପ ଜୀବାତ୍ମାର ଏହି ଶରୀରଗୁଡ଼ିକ ନାଶବାନ୍ ବୋଲି କୁହାଯାଇଛି । ତେଣୁ ହେ ଭରତବଂଶୀ ଅର୍ଜୁନ ! ତୁମେ ଯୁଦ୍ଧ କର ॥ ୧୮ ॥

**ଯ ଏନଂ ବେତ୍ତି ହନ୍ତାରଂ, ଯଶ୍‌-ଚୈନଂ ମନ୍ୟତେ ହତମ୍ ।**
**ଉଭୌ ତୌ ନ ବିଜାନୀତୋ, ନାୟଂ ହନ୍ତି ନ ହନ୍ୟତେ ॥**

ଯେ ଏହି ଆତ୍ମା ହତ୍ୟା କରେ ବୋଲି ବୁଝନ୍ତି ତଥା ଯେ ଏହା ନିହତ ହୁଏ ବୋଲି ସ୍ୱୀକାର କରନ୍ତି, ସେ ଉଭୟେ ଆତ୍ମା ବିଷୟରେ କିଛି ଜାଣନ୍ତି ନାହିଁ; କାରଣ ଏହି ଆତ୍ମା ବାସ୍ତବରେ କାହାରିକୁ ହତ୍ୟା କରେ ନାହିଁ, କି କାହାରି ଦ୍ୱାରା ନିହତ ହୁଏ ନାହିଁ ॥ ୧୯ ॥

**ନ ଜାୟତେ ମ୍ରିୟତେ ବା କଦାଚିନ୍-**
**ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।**
**ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ**
**ନ ହନ୍ୟତେ ହନ୍ୟମାନେ ଶରୀରେ ॥**

ଏହି ଆତ୍ମା କୌଣସି କାଳରେ ବି ଜନ୍ମ ହୁଏ ନାହିଁ, କି ମରେ ନାହିଁ, ତଥା ଏହା ଉତ୍ପନ୍ନ ହେବା ପରେ ଯେ ହୁଏ, ସେପରି ନୁହେଁ; କାରଣ ଏହା ହେଉଛି ଅଜନ୍ମା, ନିତ୍ୟ, ସନାତନ ଏବଂ ପୁରାତନ । ଶରୀରକୁ ବଧ କରିଦେଲେ ମଧ୍ୟ ଏହା ନିହତ ହୁଏ ନାହିଁ ॥ ୨୦ ॥

**ବେଦାବିନାଶିନଂ ନିତ୍ୟଂ, ୟ ଏନ-ମଜ-ମବ୍ୟୟମ୍ ।**
**କଥଂ ସ ପୁରୁଷଃ ପାର୍ଥ, କଂ ଘାତୟତି ହନ୍ତି କମ୍ ॥**

ହେ ପୃଥାପୁତ୍ର ଅର୍ଜୁନ ! ଯେଉଁ ପୁରୁଷ ଏହି ଆତ୍ମାକୁ ନାଶରହିତ, ନିତ୍ୟ, ଅଜନ୍ମା ଓ ଅବ୍ୟୟ ବୋଲି ଜାଣନ୍ତି, ସେହି ପୁରୁଷ କିପରି ବଧ କରିବେ ବା ବଧ କରାଇବେ? ॥ ୨୧ ॥

**ବାସାଂସି ଜୀର୍ଣ୍ଣାନି ଯଥା ବିହାୟ**
**ନବାନି ଗୃହ୍ଣାତି ନରୋଽପରାଣି ।**
**ତଥା ଶରୀରାଣି ବିହାୟ ଜୀର୍ଣ୍ଣା-**
**ନ୍ୟନ୍ୟାନି ସଂୟାତି ନବାନି ଦେହୀ ॥**

ମନୁଷ୍ୟ ଯେପରି ପୁରୁଣା ବସ୍ତ୍ରମାନ ତ୍ୟାଗ କରି ଅନ୍ୟ ନୂତନ ବସ୍ତ୍ର ଗ୍ରହଣ କରେ, ଜୀବାତ୍ମା ସେହିପରି ପୁରାତନ ଶରୀରମାନ ତ୍ୟାଗ କରି ଅନ୍ୟ ନୂତନ ଶରୀରମାନ ପ୍ରାପ୍ତ ହୋଇଥାଏ ॥ ୨୨ ॥

**ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକଃ ।**
**ନ ଚୈନଂ କ୍ଲେଦୟନ୍ତ୍ୟାପୋ, ନ ଶୋଷୟତି ମାରୁତଃ ॥**

ଏହି ଆତ୍ମାକୁ କୌଣସି ଶସ୍ତ୍ର ବି କାଟିପାରେ ନାହିଁ; ଅଗ୍ନି ଏହାକୁ ଜଳାଇପାରେ ନାହିଁ; ଜଳ ଏହାକୁ ଭିଜାଇପାରେ ନାହିଁ ଏବଂ ବାୟୁ ଏହାକୁ ଶୁଖାଇପାରେ ନାହିଁ ॥ ୨୩ ॥

**ଅଚ୍ଛେଦ୍ୟୋଽୟ-ମଦାହ୍ୟୋଽୟ,-ମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ।**
**ନିତ୍ୟଃ ସର୍ବଗତଃ ସ୍ଥାଣୁ,-ରଚଲୋଽୟଂ ସନାତନଃ ॥**

କାରଣ ଏହି ଆତ୍ମା ଅଚ୍ଛେଦ୍ୟ, ଅଦାହ୍ୟ, ଅକ୍ଲେଦ୍ୟ ଓ ନିଃସନ୍ଦେହ ଅଶୋଷ୍ୟ, ତଥା ଏହା ହେଉଛି ନିତ୍ୟ, ସର୍ବଗତ, ସ୍ଥିର, ଅଚଳ ଓ ସନାତନ ॥ ୨୪ ॥

**ଅବ୍ୟକ୍ତୋଽୟ-ମଚିନ୍ତ୍ୟୋଽୟ,-ମବିକାର୍ଯ୍ୟୋଽୟ-ମୁଚ୍ୟତେ ।**
**ତସ୍ମାଦେବଂ ବିଦିତ୍ୱୈନଂ, ନାନୁ-ଶୋଚିତୁ-ମର୍ହସି ॥**

ଏହି ଆତ୍ମା ଅବ୍ୟକ୍ତ; ଏହା ଅଚିନ୍ତ୍ୟ ଏବଂ ଏହାକୁ ବିକାର-ରହିତ କୁହାଯାଏ । ଏଣୁ ହେ ଅର୍ଜୁନ ! ଏହି ଆତ୍ମା ଏପରି ବୋଲି ଜାଣି ତୁମେ ଶୋକ କରିବା ଉଚିତ ନୁହେଁ ॥ ୨୫ ॥

**ଅଥ ଚୈନଂ ନିତ୍ୟ-ଜାତଂ, ନିତ୍ୟଂ ବା ମନ୍ୟସେ ମୃତମ୍ ।**
**ତଥାପି ତ୍ୱଂ ମହାବାହୋ, ନୈବଂ ଶୋଚିତୁ-ମର୍ହସି ॥**

ପକ୍ଷାନ୍ତରେ, ଯଦି ତୁମେ ଏହି ଆତ୍ମାକୁ ନିତ୍ୟ ଜନ୍ମ ହେଉଛି ଏବଂ ନିତ୍ୟ ମରୁଛି ବୋଲି ସ୍ୱୀକାର କରୁଥାଅ, ତଥାପି ହେ ମହାବାହୁ ! ତୁମେ ଏପରି ଶୋକ କରିବା ଉଚିତ ନୁହେଁ ॥ ୨୬ ॥

**ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍,-ଧ୍ରୁବଂ ଜନ୍ମ ମୃତସ୍ୟ ଚ ।**
**ତସ୍ମା-ଦପରିହାର୍ଯ୍ୟେଽର୍ଥେ, ନ ତ୍ୱଂ ଶୋଚିତୁ-ମର୍ହସି ॥**

କାରଣ ଏହି ମାନ୍ୟତା ଅନୁସାରେ ଜନ୍ମ ହୋଇଥିବା ଲୋକର ମୃତ୍ୟୁ ନିଶ୍ଚିତ ଏବଂ ମରିଥିବା ଲୋକର ଜନ୍ମ ନିଶ୍ଚିତ । ଏହି ହେତୁ ମଧ୍ୟ ଯାହା ଅନିବାର୍ଯ୍ୟ, ସେହି ବିଷୟରେ ତୁମେ ଶୋକ କରିବା ଉଚିତ ନୁହେଁ ॥ ୨୭ ॥

**ଅବ୍ୟକ୍ତାଦୀନି ଭୂତାନି, ବ୍ୟକ୍ତ-ମଧ୍ୟାନି ଭାରତ ।**
**ଅବ୍ୟକ୍ତ-ନିଧନାନ୍ୟେବ, ତତ୍ର କା ପରିଦେବନା ॥**

ହେ ଅର୍ଜୁନ ! ସମସ୍ତ ପ୍ରାଣୀ ଜନ୍ମ ହେବା ପୂର୍ବରୁ ଅପ୍ରକଟ ହୋଇ ରହିଥାନ୍ତି ଏବଂ ମୃତ୍ୟୁ ପରେ ମଧ୍ୟ ଅପ୍ରକଟ ହୋଇଯାଆନ୍ତି । ସେମାନେ କେବଳ ଏହି ମଧ୍ୟବର୍ତ୍ତୀ କାଳରେ ହିଁ ପ୍ରକଟ ହୁଅନ୍ତି । ଏପରି ସ୍ଥିତିରେ ଶୋକ କରିବା କ'ଣ? ॥ ୨୮ ॥

**ଆଶ୍ଚର୍ଯ୍ୟବତ୍-ପଶ୍ୟତି କଶ୍ଚିଦେନ-**
**ମାଶ୍ଚର୍ଯ୍ୟ-ବତ୍-ବଦତି ତଥୈବ ଚାନ୍ୟଃ ।**
**ଆଶ୍ଚର୍ଯ୍ୟ-ବଚ୍ଚୈନ-ମନ୍ୟଃ ଶୃଣୋତି**
**ଶ୍ରୁତ୍ୱା-ପ୍ୟେନଂ ବେଦ ନ ଚୈବ କଶ୍ଚିତ୍ ॥**

କୌଣସି ଜଣେ ମହାପୁରୁଷ ହିଁ ଏହି ଆତ୍ମାକୁ ଆଶ୍ଚର୍ଯ୍ୟ ପରି ଦେଖନ୍ତି ଏବଂ ସେହିପରି ଅନ୍ୟ କେହି ମହାପୁରୁଷ ଏହାର ତତ୍ତ୍ୱକୁ ଆଶ୍ଚର୍ଯ୍ୟ ପରି ବର୍ଣ୍ଣନା କରନ୍ତି ତଥା ଅନ୍ୟ କେହି ଅଧିକାରୀ ପୁରୁଷ ଏହାକୁ ଆଶ୍ଚର୍ଯ୍ୟ ପରି ଶୁଣନ୍ତି ଏବଂ କେହି କେହି ଶୁଣି ମଧ୍ୟ ଏହାକୁ ଜାଣିପାରନ୍ତି ନାହିଁ ॥ ୨୯ ॥

**ଦେହୀ ନିତ୍ୟ-ମବଧ୍ୟୋଽୟଂ, ଦେହେ ସର୍ବସ୍ୟ ଭାରତ ।**
**ତସ୍ମାତ୍-ସର୍ବାଣି ଭୂତାନି, ନ ତ୍ୱଂ ଶୋଚିତୁ-ମର୍ହସି ॥**

ହେ ଅର୍ଜୁନ ! ଏହି ଆତ୍ମା ସମସ୍ତଙ୍କ ଶରୀରରେ ସର୍ବଦା ଅବଧ୍ୟ । ତେଣୁ ସକଳ ପ୍ରାଣୀଙ୍କ ପାଇଁ ଅର୍ଥାତ୍ କୌଣସି ବି ପ୍ରାଣୀପାଇଁ ତୁମେ ଶୋକ କରିବା ଉଚିତ ନୁହେଁ ॥ ୩୦ ॥

**ସ୍ୱଧର୍ମ-ମପି ଚ୍ଚାବେକ୍ଷ୍ୟ, ନ ବିକମ୍ପିତୁ-ମର୍ହସି ।**
**ଧର୍ମ୍ୟାଦ୍ଧି ଯୁଦ୍ଧାଚ୍-ଛ୍ରେୟୋଽନ୍ୟତ୍, କ୍ଷତ୍ରିୟସ୍ୟ ନ ବିଦ୍ୟତେ ॥**

ପୁଣି ନିଜର ଧର୍ମ ଦୃଷ୍ଟିରୁ ବି ତୁମେ ଭୟ କରିବା ଉଚିତ ନୁହେଁ; କାରଣ କ୍ଷତ୍ରିୟନିମନ୍ତେ ଧର୍ମଯୁଦ୍ଧଠାରୁ ବଳି କଲ୍ୟାଣକର କର୍ତ୍ତବ୍ୟ ଆଉ କିଛି ନାହିଁ ॥ ୩୧ ॥

**ଯଦୃଚ୍ଛୟା ଚ୍ଚୋପପନ୍ନଂ, ସ୍ୱର୍ଗ-ଦ୍ୱାର-ମପାବୃତମ୍ ।**
**ସୁଖିନଃ କ୍ଷତ୍ରିୟାଃ ପାର୍ଥ, ଲଭନ୍ତେ ଯୁଦ୍ଧ-ମୀଦୃଶମ୍ ॥**

ହେ ପାର୍ଥ ! ସ୍ୱତଃ ପ୍ରାପ୍ତ ହୋଇଥିବା ଏବଂ ଉନ୍ମୁକ୍ତ ସ୍ୱର୍ଗଦ୍ୱାରରୂପକ ଏହିପରି ଯୁଦ୍ଧ ଭାଗ୍ୟବାନ୍ କ୍ଷତ୍ରିୟମାନେ ହିଁ ଲାଭ କରନ୍ତି ॥ ୩୨ ॥

**ଅଥ ଚେତ୍ତ୍ୱ-ମିମଂ ଧର୍ମ୍ୟଂ, ସଙ୍ଗ୍ରାମଂ ନ କରିଷ୍ୟସି ।**
**ତତଃ ସ୍ୱଧର୍ମଂ କୀର୍ତ୍ତିଂ ଚ, ହିତ୍ୱା ପାପ-ମବାପ୍ସ୍ୟସି ॥**

କିନ୍ତୁ ଯଦି ତୁମେ ଏହି ଧର୍ମମୟ ଯୁଦ୍ଧ ନ କରିବ, ତେବେ ସ୍ୱଧର୍ମ ଓ ସୁଯଶ ହରାଇ ପାପଭାଗୀ ହେବ ॥ ୩୩ ॥

**ଅକୀର୍ତ୍ତିଂ ଚ୍ଚାପି ଭୂତାନି, କଥୟିଷ୍ୟନ୍ତି ତେଽବ୍ୟୟାମ୍ ।**
**ସମ୍ଭାବିତସ୍ୟ ଚ୍ଚାକୀର୍ତ୍ତିର୍,-ମରଣା-ଦତିରିଚ୍ୟତେ ॥**

ତଥା ସମସ୍ତେ ଦୀର୍ଘକାଳସ୍ଥାୟୀ ତୁମର ଅପକୀର୍ତ୍ତି ବି ଆଲୋଚନା କରିବେ ଏବଂ ସମ୍ମାନନୀୟ ପୁରୁଷଙ୍କ ନିମନ୍ତେ ଅପକୀର୍ତ୍ତି ହେଉଛି ମରଣରୁ ବଳି ଦୁଃଖଦାୟକ ॥ ୩୪ ॥

**ଭୟାଦ୍-ରଣା-ଦୁପରତଂ, ମଂସ୍ୟନ୍ତେ ତ୍ୱାଂ ମହାରଥାଃ ।**
**ଯେଷାଂ ଚ ତ୍ୱଂ ବହୁମତୋ, ଭୂତ୍ୱା ଯାସ୍ୟସି ଲାଘବମ୍ ॥**

ଏବଂ ଯେଉଁମାନଙ୍କ ଦୃଷ୍ଟିରେ ତୁମେ ବିଶେଷରୂପେ ସମ୍ମାନିତ ହୋଇସାରିଛ, ସେମାନଙ୍କ ଦୃଷ୍ଟିରେ ବର୍ତ୍ତମାନ ହୀନ ହୋଇଯିବ; ସେହି ମହାରଥୀମାନେ ମନେ କରିବେ ଯେ, ତୁମେ ଭୟଭୀତ ହୋଇ ଯୁଦ୍ଧରୁ ଓହରି ଗଲ ॥ ୩୫ ॥

**ଅବାଚ୍ୟ-ବାଦାଂଶ୍-ଚ ବହୂନ୍, ବଦିଷ୍ୟନ୍ତି ତବାହିତାଃ ।**
**ନିନ୍ଦନ୍ତସ୍-ତବ ସାମର୍ଥ୍ୟଂ, ତତୋ ଦୁଃଖତରଂ ନୁ କିମ୍ ॥**

ତୁମର ଶତ୍ରୁମାନେ ତୁମ ସାମର୍ଥ୍ୟକୁ ନିନ୍ଦା କରି କରି ତୁମକୁ ବହୁ ଅକଥ୍ୟ ବଚନ ମଧ୍ୟ କହିବେ । ତା'ଠାରୁ ବଳି ଦୁଃଖର ବିଷୟ ଆଉ କ'ଣ ହୋଇପାରେ ! ॥ ୩୬ ॥

**ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ, ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍ ।**
**ତସ୍ମା-ଦୁତ୍ତିଷ୍ଠ କୌନ୍ତେୟ, ଯୁଦ୍ଧାୟ କୃତ-ନିଶ୍ଚୟଃ ॥**

ତୁମେ ଯୁଦ୍ଧରେ ନିହତ ହେଲେ ସ୍ୱର୍ଗ ପାଇବ; ନାହିଁ ତ ଯୁଦ୍ଧରେ ଜୟୀ ହେଲେ ଭୂମଣ୍ଡଳର ରାଜ୍ୟ ଭୋଗ କରିବ । ତେଣୁ ହେ ଅର୍ଜୁନ ! ତୁମେ ଯୁଦ୍ଧ କରିବାକୁ ସଂକଳ୍ପବଦ୍ଧ ହୋଇ ଦଣ୍ଡାୟମାନ ହୋଇଯାଅ ॥ ୩୭ ॥

**ସୁଖ-ଦୁଃଖେ ସମେ କୃତ୍ୱା, ଲାଭାଲାଭୌ ଜୟାଜୟୌ ।**
**ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ, ନୈବଂ ପାପ-ମବାପ୍ସ୍ୟସି ॥**

ଜୟ-ପରାଜୟ, ଲାଭ-କ୍ଷତି ଓ ସୁଖ-ଦୁଃଖକୁ ସମାନ ମନେ

କରି, ତାହା ପରେ ତୁମେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଯାଅ । ଏହିପରି ଯୁଦ୍ଧ କଲେ ତୁମେ ପାପଭାଗୀ ହେବ ନାହିଁ ॥ ୩୮ ॥

**ଏଷା ତେଽଭିହିତା ସାଂଖ୍ୟେ, ବୁଦ୍ଧିର୍-ଯୋଗେ ତ୍ୱିମାଂ ଶୃଣୁ ।**
**ବୁଦ୍ଧ୍ୟା ଯୁକ୍ତୋ ଯୟା ପାର୍ଥ, କର୍ମ-ବନ୍ଧଂ ପ୍ରହାସ୍ୟସି ॥**

ହେ ପାର୍ଥ ! ଏହି ବୁଦ୍ଧି ତୁମକୁ ଜ୍ଞାନଯୋଗ ଦୃଷ୍ଟିରୁ କୁହାଗଲା । ବର୍ତ୍ତମାନ ତୁମେ ଏହା କର୍ମଯୋଗ ଦୃଷ୍ଟିରୁ ଶୁଣ; ଏହି ବୁଦ୍ଧିରେ ଯୁକ୍ତ ହେଲେ ତୁମେ କର୍ମବନ୍ଧନକୁ ଭଲରୂପେ ତ୍ୟାଗ କରିଦେଇ-ପାରିବ ଅର୍ଥାତ୍ କର୍ମବନ୍ଧନରୁ ସର୍ବଥା ମୁକ୍ତ ହୋଇଯିବ ॥ ୩୯ ॥

**ନେହାଭିକ୍ରମ-ନାଶୋଽସ୍ତି, ପ୍ରତ୍ୟବାୟୋ ନ ବିଦ୍ୟତେ ।**
**ସ୍ୱଳ୍ପ-ମପ୍ୟସ୍ୟ ଧର୍ମସ୍ୟ, ତ୍ରାୟତେ ମହତୋ ଭୟାତ୍ ॥**

ଏହି କର୍ମଯୋଗରେ ଆରମ୍ଭର ଅର୍ଥାତ୍ ବୀଜର ନାଶ ହୁଏ ନାହିଁ ଏବଂ ବିପରୀତଫଳରୂପକ ଦୋଷ ମଧ୍ୟ ଏଥିରେ ହୁଏ ନାହିଁ । ବରଂ ଏହି କର୍ମଯୋଗରୂପକ ଧର୍ମର ସାମାନ୍ୟମାତ୍ର ସାଧନା ବି ଜନ୍ମ-ମୃତ୍ୟୁରୂପକ ବିରାଟ ଭୟରୁ ରକ୍ଷା କରିଦିଏ ॥ ୪୦ ॥

**ବ୍ୟବସାୟାତ୍ମିକା ବୁଦ୍ଧି,-ରେକେହ କୁରୁ-ନନ୍ଦନ ।**
**ବହୁଶାଖା ହ୍ୟନନ୍ତାଶ୍-ଚ, ବୁଦ୍ଧୟୋଽବ୍ୟବ-ସାୟିନାମ୍ ॥**

ହେ ଅର୍ଜୁନ ! ଏହି କର୍ମଯୋଗରେ ନିଶ୍ଚୟାତ୍ମିକା ବୁଦ୍ଧି ଗୋଟିଏମାତ୍ର ହୁଏ; କିନ୍ତୁ ଅସ୍ଥିରବିଗ୍ରହଯୁକ୍ତ ବିବେକହୀନ ସକାମ ମନୁଷ୍ୟମାନଙ୍କର ବୁଦ୍ଧି ନିଶ୍ଚିତଭାବରେ ବହୁପ୍ରକାର ଓ ଅସଂଖ୍ୟ ହୁଏ ॥ ୪୧ ॥

**ଯାମିମାଂ ପୁଷ୍ପିତାଂ ବାଚଂ, ପ୍ରବଦନ୍ତ୍ୟ-ବିପଶ୍ଚିତଃ ।**
**ବେଦ-ବାଦ-ରତାଃ ପାର୍ଥ, ନାନ୍ୟ-ଦସ୍ତୀତି ବାଦିନଃ ॥**
**କାମାତ୍ମାନଃ ସ୍ୱର୍ଗ-ପରା, ଜନ୍ମ-କର୍ମ-ଫଲ-ପ୍ରଦାମ୍ ।**
**କ୍ରିୟା-ବିଶେଷ-ବହୁଲାଂ, ଭୋଗୈଶ୍ୱର୍ଯ୍ୟ-ଗତିଂ ପ୍ରତି ॥**
**ଭୋଗୈଶ୍ୱର୍ଯ୍ୟ-ପ୍ରସକ୍ତାନାଂ, ତୟାପହୃତ-ଚେତସାମ୍ ।**
**ବ୍ୟବସାୟାତ୍ମିକା ବୁଦ୍ଧିଃ, ସମାଧୌ ନ ବିଧୀୟତେ ॥**

ହେ ଅର୍ଜୁନ ! ଯେଉଁମାନେ ଭୋଗରେ ବୁଡ଼ି ରହିଛନ୍ତି, ଯେଉଁମାନେ କର୍ମଫଳର ପ୍ରଶଂସା କରୁଥିବା ବେଦବାକ୍ୟରେ ପ୍ରୀତି ରଖନ୍ତି, ଯେଉଁମାନଙ୍କ ବୁଦ୍ଧିରେ ସ୍ୱର୍ଗ ହିଁ ପରମ ପ୍ରାପ୍ୟ ବସ୍ତୁ ଏବଂ ଯେଉଁମାନେ ସ୍ୱର୍ଗରୁ ବଳି ଅନ୍ୟ କୌଣସି ବସ୍ତୁ ନାହିଁ ବୋଲି କହନ୍ତି, ସେହି ଅବିବେକୀମାନେ ଭୋଗ-ଐଶ୍ୱର୍ଯ୍ୟ ପ୍ରାପ୍ତି ନିମନ୍ତେ ଜନ୍ମରୂପକ କର୍ମଫଳ ଦେଉଥିବା କ୍ରିୟାବହୁଳ ଶ୍ରୁତିମଧୁର ସୁନ୍ଦର ପୁଷ୍ପିତ ବାଣୀ କହନ୍ତି । ସେପରି ବାଣୀଦ୍ୱାରା ଯେଉଁମାନଙ୍କର ଚିତ୍ତହରଣ ହୋଇଯାଇଛି, ଯେଉଁମାନେ ଭୋଗ ଓ ଐଶ୍ୱର୍ଯ୍ୟରେ ଅତ୍ୟନ୍ତ ଆସକ୍ତ, ସେହି ପୁରୁଷମାନଙ୍କର ପରମାତ୍ମାଙ୍କ ଠାରେ ନିଶ୍ଚୟାତ୍ମିକା ବୁଦ୍ଧି ହୁଏ ନାହିଁ ॥ ୪୨, ୪୩, ୪୪ ॥

**ତ୍ରୈଗୁଣ୍ୟ-ବିଷୟା ବେଦା, ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ ।**
**ନିର୍ଦ୍ୱନ୍ଦ୍ୱୋ ନିତ୍ୟ-ସତ୍ତ୍ୱସ୍ଥୋ, ନିର୍ଯୋଗ-କ୍ଷେମ ଆତ୍ମବାନ୍ ॥**

ହେ ଅର୍ଜୁନ ! ବେଦମାନେ ଉପରୋକ୍ତପ୍ରକାରେ ତିନିଗୁଣର କାର୍ଯ୍ୟରୂପ ସମସ୍ତ ଭୋଗ ଏବଂ ସେସବୁର ସାଧନମାନଙ୍କର ପ୍ରତିପାଦନ କରନ୍ତି । ତୁମେ ସେସବୁ ଭୋଗ ଏବଂ

ସେସବୁ ସାଧନରେ ଆସକ୍ତି ତ୍ୟାଗ କର; ହର୍ଷ-ଶୋକାଦି ଦ୍ୱନ୍ଦ୍ୱରୁ ରହିତ ହୋଇଯାଅ; ନିତ୍ୟବସ୍ତୁ ପରମାତ୍ମାରେ ସ୍ଥିତ ହୋଇ, ଯୋଗକ୍ଷେମ* ନ ଗୃହିଁ ସ୍ୱାଧୀନ ଅନ୍ତଃକରଣଯୁକ୍ତ ହୋଇଯାଅ ॥ ୪୫ ॥

**ଯାବାନର୍ଥ ଉଦପାନେ, ସର୍ବତଃ ସଂପ୍ଲୁତୋଦକେ ।**
**ତାବାନ୍ ସର୍ବେଷୁ ବେଦେଷୁ, ବ୍ରାହ୍ମଣସ୍ୟ ବିଜାନତଃ ॥**

ସବୁଦିଗରୁ ପରିପୂର୍ଣ୍ଣ ଜଳାଶୟଟିଏ ପାଇଗଲେ ଛୋଟ ଜଳାଶୟରେ ମନୁଷ୍ୟର ଯେତିକି ପ୍ରୟୋଜନ ରହେ, ବ୍ରହ୍ମଜ୍ଞାନ ଲାଭ କରିଥିବା ବ୍ରାହ୍ମଣଙ୍କର ସମସ୍ତ ବେଦରେ ସେତିକି ପ୍ରୟୋଜନ ରହିଯାଏ ॥ ୪୬ ॥

**କର୍ମଣ୍ୟେ-ବାଧିକାରସ୍-ତେ, ମା ଫଲେଷୁ କଦାଚନ ।**
**ମା କର୍ମ-ଫଲ୍-ହେତୁର୍-ଭୂର୍,-ମା ତେ ସଙ୍ଗୋଽସ୍ତ୍ୱ-କର୍ମଣି ॥**

କର୍ମ କରିବାରେ ହିଁ ତୁମର ଅଧିକାର ରହିଛି; କର୍ମର ଫଳ ଉପରେ ତୁମର କଦାପି ଅଧିକାର ନାହିଁ। ତେଣୁ ତୁମେ କର୍ମଫଳର କାରଣ ହୁଅ ନାହିଁ ତଥା ତୁମର କର୍ମ ନ କରିବାରେ ବି ଆସକ୍ତି ନ ହେଉ ॥ ୪୭ ॥

**ଯୋଗସ୍ଥଃ କୁରୁ କର୍ମାଣି, ସଙ୍ଗଂ ତ୍ୟକ୍ତ୍ୱା ଧନଞ୍ଜୟ ।**
**ସିଦ୍ଧ୍ୟ-ସିଦ୍ଧ୍ୟୋଃ ସମୋ ଭୂତ୍ୱା, ସମତ୍ୱଂ ଯୋଗ ଉଚ୍ୟତେ ॥**

ହେ ଧନଞ୍ଜୟ ! ତୁମେ ଆସକ୍ତି ତ୍ୟାଗ କରି ତଥା ସିଦ୍ଧି-

* ଅପ୍ରାପ୍ତ ବସ୍ତୁର ପ୍ରାପ୍ତିକୁ ଯୋଗ ଓ ପ୍ରାପ୍ତବସ୍ତୁର ରକ୍ଷାକୁ କ୍ଷେମ କହନ୍ତି ।

ଅସିଦ୍ଧିରେ ସମବୁଦ୍ଧି ରଖି ଯୋଗସ୍ଥ ହୋଇ କର୍ତ୍ତବ୍ୟକର୍ମ କର; ସମତ୍ୱକୁ* ହିଁ ଯୋଗ କୁହାଯାଏ ॥ ୪୮ ॥

**ଦୂରେଣ ହ୍ୟବରଂ କର୍ମ, ବୁଦ୍ଧି-ୟ୍ୟୋଗାଦ୍-ଧନଞ୍ଜୟ ।**
**ବୁଦ୍ଧୌ ଶରଣ-ମନ୍ୱିଚ୍ଛ, କୃପଣାଃ ଫଲ୍-ହେତବଃ ॥**

ଏହି ସମତ୍ୱରୂପକ ବୁଦ୍ଧିଯୋଗ ଅପେକ୍ଷା ସକାମ କର୍ମ ଅତ୍ୟନ୍ତ ନିମ୍ନଶ୍ରେଣୀର ଅଟେ । ତେଣୁ ହେ ଧନଞ୍ଜୟ ! ତୁମେ ସମବୁଦ୍ଧିରେ ହିଁ ରକ୍ଷାର ଉପାୟ ଖୋଜ ଅର୍ଥାତ୍ ବୁଦ୍ଧିଯୋଗର ହିଁ ଆଶ୍ରୟ ଗ୍ରହଣ କର; କାରଣ, ଫଳର କାରଣ ହେଉଥିବା ଲୋକେ ଅତ୍ୟନ୍ତ ଦୀନ ॥ ୪୯ ॥

**ବୁଦ୍ଧି-ୟୁକ୍ତୋ ଜହାତୀହ, ଉଭେ ସୁକୃତ-ଦୁଷ୍କୃତେ ।**
**ତସ୍ମାଦ୍-ୟ୍ୟୋଗାୟ ୟୁଜ୍ୟସ୍ୱ, ୟ୍ୟୋଗଃ କର୍ମସୁ କୌଶଲମ୍ ॥**

ସମବୁଦ୍ଧିଯୁକ୍ତ ପୁରୁଷ ପୁଣ୍ୟ ଓ ପାପ ଉଭୟକୁ ଇହଲୋକରେ ତ୍ୟାଗ କରିଦିଅନ୍ତି ଅର୍ଥାତ୍ ସେଥିରୁ ମୁକ୍ତ ହୋଇଯାଆନ୍ତି । ତେଣୁ ତୁମେ ସମତ୍ୱ ରୂପକ ଯୋଗରେ ଲାଗିଯାଅ । ଏହି ସମତ୍ୱରୂପକ ଯୋଗ ହିଁ କର୍ମରେ କୁଶଳତା ଅର୍ଥାତ୍ କର୍ମବନ୍ଧନରୁ ମୁକ୍ତି ପାଇବାର ଉପାୟ ॥ ୫୦ ॥

**କର୍ମଜଂ ବୁଦ୍ଧି-ୟୁକ୍ତା ହି, ଫଲଂ ତ୍ୟକ୍ତ୍ୱା ମନୀଷିଣଃ ।**
**ଜନ୍ମ-ବନ୍ଧ-ବିନିର୍ମୁକ୍ତାଃ, ପଦଂ ଗଚ୍ଛନ୍-ତ୍ୟନାମୟମ୍ ॥**

କାରଣ ସମବୁଦ୍ଧିରେ ଯୁକ୍ତ ଜ୍ଞାନୀଜନମାନେ କର୍ମଦ୍ୱାରା

* ଯାହା କିଛି କର୍ମ କରାଯାଏ, ତାହା ପୂର୍ଣ୍ଣ ହେଉ, କି ନ ହେଉ, ତା'ର ଫଳରେ ସମଭାବ ରଖିବାର ନାମ ସମତ୍ୱ ।

ଉତ୍ପନ୍ନ ହେଉଥିବା ଫଳ ତ୍ୟାଗ କରି, ଜନ୍ମରୂପକ ବନ୍ଧନରୁ ମୁକ୍ତ ହୋଇ ନିର୍ବିକାର ପରମପଦ ପ୍ରାପ୍ତ ହୋଇଯାଆନ୍ତି ॥ ୫୧ ॥

**ଯଦା ତେ ମୋହ-କଲିଲଂ, ବୁଦ୍ଧିର୍‌-ବ୍ୟତି-ତରିଷ୍ୟତି ।**
**ତଦା ଗନ୍ତାସି ନିର୍ବେଦଂ, ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ ॥**

ଯେତେବେଳେ ତୁମର ବୁଦ୍ଧି ମୋହରୂପକ ପଙ୍କକୁ ସମ୍ପୂର୍ଣ୍ଣରୂପେ ଅତିକ୍ରମ କରିଯିବ, ସେତେବେଳେ ତୁମର ଶୁଣିଥିବା ଏବଂ ଶୁଣିବାକୁ ଥିବା ଇହଲୋକ ଏବଂ ପରଲୋକ ସମ୍ବନ୍ଧୀୟ ସମସ୍ତପ୍ରକାର ଭୋଗ ପ୍ରତି ବୈରାଗ୍ୟ ଆସିଯିବ ॥ ୫୨ ॥

**ଶ୍ରୁତି-ବିପ୍ରତିପନ୍ନା ତେ, ଯଦା ସ୍ଥାସ୍ୟତି ନିଶ୍ଚଳା ।**
**ସମାଧା-ବଚଲା ବୁଦ୍ଧିସ୍‌,-ତଦା ଯୋଗ-ମବାପ୍‌ସ୍ୟସି ॥**

ବିଭିନ୍ନପ୍ରକାର କଥା ଶୁଣି ଶୁଣି ବିଚଳିତ ହୋଇଯାଇଥିବା ତୁମର ବୁଦ୍ଧି ଯେତେବେଳେ ପରମାତ୍ମାଙ୍କ ଠାରେ ଅଚଳ ଓ ସ୍ଥିର ହୋଇଯିବ, ସେତେବେଳେ ତୁମେ ଯୋଗପ୍ରାପ୍ତ ହୋଇଯିବ ଅର୍ଥାତ୍ ପରମାତ୍ମାଙ୍କ ସହିତ ତୁମର ନିତ୍ୟସଂଯୋଗ ହୋଇଯିବ ॥ ୫୩ ॥

*ଅର୍ଜୁନ ଉବାଚ*

**ସ୍ଥିତ-ପ୍ରଜ୍ଞସ୍ୟ କା ଭାଷା, ସମାଧିସ୍ଥସ୍ୟ କେଶବ ।**
**ସ୍ଥିତଧୀଃ କିଂ ପ୍ରଭାଷେତ, କିମାସୀତ ବ୍ରଜେତ କିମ୍‌ ॥**

**ଅର୍ଜୁନ ପଚାରିଲେ**—ହେ କେଶବ ! ସମାଧିରେ ପରମାତ୍ମ-ପ୍ରାପ୍ତ ସ୍ଥିରବୁଦ୍ଧି ପୁରୁଷଙ୍କ ଲକ୍ଷଣ କ'ଣ? ସେହି ସ୍ଥିରବୁଦ୍ଧି ପୁରୁଷ

କିପରି କହନ୍ତି, କିପରି ବସନ୍ତି ଏବଂ କିପରି ଚଳନ୍ତି? ॥ ୫୪ ॥

*ଶ୍ରୀଭଗବାନୁବାଚ*

**ପ୍ରଜହାତି ଯଦା କାମାନ୍, ସର୍ବାନ୍ ପାର୍ଥ ମନୋଗତାନ୍ ।**
**ଆତ୍ମନ୍ୟେ-ବାତ୍ମନା ତୁଷ୍ଟଃ, ସ୍ଥିତ-ପ୍ରଜ୍ଞସ୍-ତଦୋଚ୍ୟତେ ॥**

ଶ୍ରୀଭଗବାନ୍ କହିଲେ—ହେ ଅର୍ଜୁନ ! ଯେତେବେଳେ ଏହି ପୁରୁଷ ମନ ମଧ୍ୟରେ ଥିବା ସମସ୍ତ କାମନା ପୂର୍ଣ୍ଣରୂପେ ତ୍ୟାଗ କରିଦିଅନ୍ତି ଏବଂ ଆତ୍ମାଦ୍ୱାରା ଆତ୍ମାରେ ହିଁ ସନ୍ତୁଷ୍ଟ ହୋଇ ରହନ୍ତି, ସେତେବେଳେ ତାଙ୍କୁ ସ୍ଥିତପ୍ରଜ୍ଞ କୁହାଯାଏ ॥ ୫୫ ॥

**ଦୁଃଖେ-ଷ୍ୱନୁଦ୍‌ବିଗ୍ନ-ମନାଃ, ସୁଖେଷୁ ବିଗତ-ସ୍ପୃହଃ ।**
**ବୀତ-ରାଗ-ଭୟ-କ୍ରୋଧଃ, ସ୍ଥିତ-ଧୀର୍-ମୁନି-ରୁଚ୍ୟତେ ॥**

ଦୁଃଖ ଆସିଗଲେ ବି ଯାହାଙ୍କ ମନରେ ଉଦ୍‌ବେଗ ଜାତ ହୁଏ ନାହିଁ, ସୁଖ ମିଳିଗଲେ ବି ଯେ ସର୍ବଥା ନିଃସ୍ପୃହ ରହନ୍ତି, ଯାହାଙ୍କର ରାଗ (ଆସକ୍ତି), ଭୟ ଓ କ୍ରୋଧ ନଷ୍ଟ ହୋଇଯାଇଛି, ସେହିପରି ମୁନିଙ୍କୁ ସ୍ଥିରବୁଦ୍ଧି କୁହାଯାଏ ॥ ୫୬ ॥

**ଯଃ ସର୍ବତ୍ରା-ନଭିସ୍ନେହସ୍,-ତତ୍-ତତ୍-ପ୍ରାପ୍ୟ ଶୁଭାଶୁଭମ୍ ।**
**ନାଭିନନ୍ଦତି ନ ଦ୍ୱେଷ୍ଟି, ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥**

ଯେଉଁ ପୁରୁଷ ସର୍ବତ୍ର ସ୍ନେହରହିତ ହୋଇ ଶୁଭ ବସ୍ତୁ ପାଇଲେ ପ୍ରସନ୍ନ ହୁଅନ୍ତି ନାହିଁ, କି ଅଶୁଭ ବସ୍ତୁ ପାଇଲେ ଦ୍ୱେଷ କରନ୍ତି ନାହିଁ, ତାଙ୍କର ବୁଦ୍ଧି ସ୍ଥିର ଅଟେ ॥ ୫୭ ॥

**ଯଦା ସଂହରତେ ଚାୟଂ, କୂର୍ମୋଽଙ୍ଗାନୀବ ସର୍ବଶଃ ।**
**ଇନ୍ଦ୍ରିୟା-ଣୀନ୍ଦ୍ରିୟାର୍ଥେଭ୍ୟସ୍,-ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥**

ଏବଂ କଇଁଛ ଯେପରି ନିଜର ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକୁ ସବୁଦିଗରୁ ସଙ୍କୁଚିତ କରି ଆଣେ, ଏହି ପୁରୁଷ ଯେତେବେଳେ ଠିକ୍ ସେହିପରି ନିଜର ଇନ୍ଦ୍ରିୟମାନଙ୍କୁ ଇନ୍ଦ୍ରିୟଗ୍ରାହ୍ୟ ବିଷୟମାନଙ୍କରୁ ସକଳପ୍ରକାରେ ହଟାଇ ଆଣନ୍ତି, ସେତେବେଳେ ତାଙ୍କର ବୁଦ୍ଧି ସ୍ଥିର ଅଟେ ବୋଲି ଜାଣିବା ଉଚିତ ॥ ୫୮ ॥

**ବିଷୟା ବିନିବର୍ତ୍ତନ୍ତେ, ନିରାହାରସ୍ୟ ଦେହିନଃ ।**
**ରସ-ବର୍ଜଂ ରସୋଽପ୍ୟସ୍ୟ, ପରଂ ଦୃଷ୍ଟ୍ୱା ନିବର୍ତ୍ତତେ ॥**

ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟମାନଙ୍କୁ ଗ୍ରହଣ କରୁ ନ ଥିବା ପୁରୁଷର କେବଳ ବିଷୟମାନେ ନିବୃତ୍ତ ହୋଇଯାଆନ୍ତି; ବିଷୟଭୋଗ ପ୍ରତି ରହିଥିବା ଆସକ୍ତି ନିବୃତ୍ତ ହୁଏ ନାହିଁ; କିନ୍ତୁ ପରମାତ୍ମାଙ୍କୁ ସାକ୍ଷାତ୍କାର କରିଥିବାରୁ ଏହି ସ୍ଥିତପ୍ରଜ୍ଞ ପୁରୁଷଙ୍କର ଆସକ୍ତି ବି ନିବୃତ୍ତ ହୋଇଯାଇଥାଏ ॥ ୫୯ ॥

**ଯତତୋ ହ୍ୟପି କୌନ୍ତେୟ, ପୁରୁଷସ୍ୟ ବିପଶ୍ଚିତଃ ।**
**ଇନ୍ଦ୍ରିୟାଣି ପ୍ରମାଥୀନି, ହରନ୍ତି ପ୍ରସଭଂ ମନଃ ॥**

ହେ ଅର୍ଜୁନ ! ଆସକ୍ତି ନାଶ ହୋଇ ନ ଥିବାରୁ ଏହି ପ୍ରମଥନସ୍ୱଭାବବିଶିଷ୍ଟ ଇନ୍ଦ୍ରିୟମାନେ ଯତ୍ନଶୀଳ ବୁଦ୍ଧିମାନ୍ ପୁରୁଷଙ୍କର ମନକୁ ମଧ୍ୟ ବଳପୂର୍ବକ ହରଣ କରିନିଅନ୍ତି ॥ ୬୦ ॥

**ତାନି ସର୍ବାଣି ସଂଯମ୍ୟ, ଯୁକ୍ତ ଆସୀତ ମତ୍ପରଃ ।**
**ବଶେ ହି ଯସ୍ୟେନ୍ଦ୍ରିୟାଣି, ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥**

ତେଣୁ ସାଧକଙ୍କ ପକ୍ଷରେ ଏହା ଆବଶ୍ୟକ ଯେ, ତାଙ୍କୁ ସକଳ ଇନ୍ଦ୍ରିୟ ବଶ କରି, ସମାହିତଚିତ୍ତ ହୋଇ, ମୋର ପରାୟଣ ହୋଇ ଧ୍ୟାନରେ ବସିବାକୁ ପଡ଼ିବ; କାରଣ ଯେଉଁ ପୁରୁଷଙ୍କ ଇନ୍ଦ୍ରିୟମାନେ ବଶୀଭୂତ ହୋଇଥାନ୍ତି, ତାଙ୍କର ବୁଦ୍ଧି ସ୍ଥିର ହୋଇଥାଏ ॥ ୬୧ ॥

**ଧ୍ୟାୟତୋ ବିଷୟାନ୍ ପୁଂସଃ, ସଙ୍ଗସ୍-ତେଷୂପ-ଜାୟତେ ।**
**ସଙ୍ଗାତ୍-ସଞ୍ଜାୟତେ କାମଃ, କାମାତ୍-କ୍ରୋଧୋଽଭି-ଜାୟତେ ॥**

ବିଷୟଚିନ୍ତନ କରୁଥିବା ପୁରୁଷର ସେହି ବିଷୟମାନଙ୍କରେ ଆସକ୍ତି ହୋଇଯାଏ; ଆସକ୍ତିରୁ ସେହି ବିଷୟମାନଙ୍କ ପ୍ରତି କାମନା ଉତ୍ପନ୍ନ ହୋଇଯାଏ ଏବଂ କାମନାରେ ବାଧା ଉପୁଜିଲେ କ୍ରୋଧ ଜାତ ହୋଇଯାଏ ॥ ୬୨ ॥

**କ୍ରୋଧାଦ୍-ଭବତି ସମ୍ମୋହଃ, ସମ୍ମୋହାତ୍-ସ୍ମୃତି-ବିଭ୍ରମଃ ।**
**ସ୍ମୃତି-ଭ୍ରଂଶାଦ୍-ବୁଦ୍ଧି-ନାଶୋ, ବୁଦ୍ଧି-ନାଶାତ୍-ପ୍ରଣଶ୍ୟତି ॥**

କ୍ରୋଧରୁ ଅତ୍ୟନ୍ତ ମୂଢ଼ଭାବ ଉତ୍ପନ୍ନ ହୋଇଯାଏ; ମୂଢ଼ଭାବରୁ ସ୍ମୃତିଭ୍ରମ ହୋଇଯାଏ; ସ୍ମୃତିବିଭ୍ରମ ହେବାରୁ ବୁଦ୍ଧି ଅର୍ଥାତ୍ ଜ୍ଞାନଶକ୍ତି ନାଶ ହୋଇଯାଏ ଏବଂ ବୁଦ୍ଧିନାଶ ହେବାରୁ ସେହି ପୁରୁଷ ନିଜର ସ୍ଥିତିରୁ ଖସିପଡ଼େ ॥ ୬୩ ॥

**ରାଗ-ଦ୍ୱେଷ-ବିୟୁକ୍ତୈସ୍-ତୁ, ବିଷୟା-ନିନ୍ଦ୍ରିୟୈଶ୍-ଚରନ୍ ।**
**ଆତ୍ମ-ବଶ୍ୟୈର୍-ବିଧେୟାତ୍ମା, ପ୍ରସାଦ-ମଧି-ଗଚ୍ଛତି ॥**

କିନ୍ତୁ ଅନ୍ତଃକରଣକୁ ନିଜର ଅଧୀନ କରିଥିବା ସାଧକ ନିଜ ବଶରେ ରଖିଥିବା ରାଗଦ୍ୱେଷରହିତ ଇନ୍ଦ୍ରିୟମାନଙ୍କ ଦ୍ୱାରା

ବିଷୟମାନଙ୍କରେ ବିଚରଣ କରୁଥାଇ ମଧ୍ୟ ଅନ୍ତଃକରଣର ପ୍ରସନ୍ନତା ଲାଭ କରନ୍ତି ॥ ୬୪ ॥

**ପ୍ରସାଦେ ସର୍ବ-ଦୁଃଖାନାଂ, ହାନି-ରସ୍ୟୋପ-ଜାୟତେ ।**
**ପ୍ରସନ୍ନ-ଚେତସୋ ହ୍ୟାଶୁ, ବୁଦ୍ଧିଃ ପର୍ଯ୍ୟବ-ତିଷ୍ଠତେ ॥**

ଅନ୍ତଃକରଣର ପ୍ରସନ୍ନତା ଆସିବା ଫଳରେ ତାଙ୍କର ସମସ୍ତ ଦୁଃଖ ବିନାଶ ହୋଇଯାଏ ଏବଂ ସେହି ପ୍ରସନ୍ନଚିତ୍ତ କର୍ମଯୋଗୀଙ୍କର ବୁଦ୍ଧି ଶୀଘ୍ର ହିଁ ସକଳ ଦିଗରୁ ଅପସରି ଆସି ଏକ ପରମାତ୍ମାଙ୍କ ଠାରେ ଭଲଭାବରେ ସ୍ଥିର ହୋଇଯାଏ ॥ ୬୫ ॥

**ନାସ୍ତି ବୁଦ୍ଧି-ରଯୁକ୍ତସ୍ୟ, ନ ଚାଯୁକ୍ତସ୍ୟ ଭାବନା ।**
**ନ ଚାଭାବୟତଃ ଶାନ୍ତି,-ରଶାନ୍ତସ୍ୟ କୁତଃ ସୁଖମ୍ ॥**

ମନ ଓ ଇନ୍ଦ୍ରିୟମାନଙ୍କୁ ଜୟ କରି ନ ଥିବା ମନୁଷ୍ୟର ନିଶ୍ଚୟାତ୍ମିକା ବୁଦ୍ଧି ହୁଏ ନାହିଁ ଏବଂ ସେପରି ଅଯୁକ୍ତ ମନୁଷ୍ୟର ଅନ୍ତଃକରଣରେ ଆସ୍ତିକଭାବନା ବି ଆସେ ନାହିଁ; ଆସ୍ତିକ-ଭାବନାହୀନ ମନୁଷ୍ୟକୁ ଶାନ୍ତି ମିଳେ ନାହିଁ; ଶାନ୍ତିରହିତ ମନୁଷ୍ୟକୁ ସୁଖ ବା କେଉଁଠୁ ମିଳିବ? ॥ ୬୬ ॥

**ଇନ୍ଦ୍ରିୟାଣାଂ ହି ଚରତାଂ, ଯନ୍ମନୋଽନୁ-ବିଧୀୟତେ ।**
**ତଦସ୍ୟ ହରତି ପ୍ରଜ୍ଞାଂ, ବାୟୁର୍-ନାବ-ମିବାମ୍ଭସି ॥**

କାରଣ ବାୟୁ ଯେପରି ଜଳରେ ଚାଲୁଥିବା ନୌକାକୁ ହରଣ କରିନିଏ, ବିଷୟରେ ବିଚରଣ କରୁଥିବା ଇନ୍ଦ୍ରିୟମାନଙ୍କ ମଧ୍ୟରୁ ଯେଉଁ ଇନ୍ଦ୍ରିୟଟି ସହିତ ମନ ରହିଥାଏ, ସେହି ଗୋଟିକ

ଇନ୍ଦ୍ରିୟ ବି ସେହିପରି ଉକ୍ତ ଅଯୁକ୍ତ ମନୁଷ୍ୟର ବୁଦ୍ଧିକୁ ହରଣ କରିନିଏ ॥ ୬୭ ॥

**ତସ୍ମାଦ୍-ଯସ୍ୟ ମହାବାହୋ, ନିଗୃହୀତାନି ସର୍ବଶଃ ।**
**ଇନ୍ଦ୍ରିୟା-ଣୀନ୍ଦ୍ରିୟାର୍ଥେଭ୍ୟସ୍,-ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥**

ତେଣୁ ହେ ମହାବାହୁ ! ଯେଉଁ ପୁରୁଷଙ୍କ ଇନ୍ଦ୍ରିୟମାନେ ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କ ଠାରୁ ସକଳପ୍ରକାରେ ନିଗୃହୀତ ହୋଇଯାଇଥାନ୍ତି, ତାହାଙ୍କର ବୁଦ୍ଧି ସ୍ଥିର ଅଟେ ॥ ୬୮ ॥

**ଯା ନିଶା ସର୍ବ-ଭୂତାନାଂ, ତସ୍ୟାଂ ଜାଗର୍ତ୍ତି ସଂଯମୀ ।**
**ଯସ୍ୟାଂ ଜାଗ୍ରତି ଭୂତାନି, ସା ନିଶା ପଶ୍ୟତୋ ମୁନେଃ ॥**

ଯେଉଁ ପରମାନନ୍ଦପ୍ରାପ୍ତି ସକଳ ପ୍ରାଣୀଙ୍କ ନିମନ୍ତେ ରାତ୍ରି-ସମାନ, ସେହି ନିତ୍ୟଜ୍ଞାନସ୍ୱରୂପ ପରମାନନ୍ଦପ୍ରାପ୍ତିରେ ସ୍ଥିତପ୍ରଜ୍ଞ ଯୋଗୀ ଜାଗ୍ରତ ରହନ୍ତି ଏବଂ ଯେଉଁ ନାଶବାନ୍ ସାଂସାରିକ-ସୁଖଲାଭରେ ସକଳପ୍ରାଣୀ ଜାଗ୍ରତ ରହନ୍ତି, ପରମାତ୍ମତତ୍ତ୍ୱ ଜାଣିଥିବା ମୁନିଙ୍କ ନିମନ୍ତେ ତାହା ରାତ୍ରିସମାନ ॥ ୬୯ ॥

**ଆପୂର୍ଯ୍ୟମାଣ-ମଚଲ-ପ୍ରତିଷ୍ଠଂ**
**ସମୁଦ୍ର-ମାପଃ ପ୍ରବିଶନ୍ତି ଯଦ୍ୱତ୍ ।**
**ତଦ୍ୱତ୍ କାମା ଯଂ ପ୍ରବିଶନ୍ତି ସର୍ବେ**
**ସ ଶାନ୍ତି-ମାପ୍ନୋତି ନ କାମ-କାମୀ ॥**

ନାନାନଦୀର ଜଳ ଯେପରି ସକଳ ଦିଗରୁ ପରିପୂର୍ଣ୍ଣ ଅଚଳ-ପ୍ରତିଷ୍ଠାଯୁକ୍ତ ସମୁଦ୍ରକୁ ବିଚଳିତ ନ କରି ତା'ଭିତରେ

ପ୍ରବେଶ କରେ, ସକଳ ଭୋଗ ସେହିପରି ଯେଉଁ ସ୍ଥିତପ୍ରଜ୍ଞ ପୁରୁଷଙ୍କ ଠାରେ କୌଣସିପ୍ରକାର ବିକାର ଉତ୍ପନ୍ନ ନ କରି ପ୍ରବେଶ କରନ୍ତି, ସେହି ପୁରୁଷ ପରମ ଶାନ୍ତି ପ୍ରାପ୍ତ ହୁଅନ୍ତି । ଭୋଗ ଗ୍ରହୁଁଥିବା ଲୋକ ତାହା ପାଏ ନାହିଁ ॥ ୭୦ ॥

**ବିହାୟ କାମାନ୍ ୟଃ ସର୍ବାନ୍, ପୁମାଂଶ୍-ଚରତି ନିଃସ୍ପୃହଃ ।**
**ନିର୍ମମୋ ନିରହଙ୍କାରଃ, ସ ଶାନ୍ତି-ମଧି-ଗଚ୍ଛତି ॥**

ଯେଉଁ ପୁରୁଷ ସମସ୍ତ କାମନା ତ୍ୟାଗ କରି ମମତ୍ୱରହିତ, ଅହଂକାରରହିତ ଏବଂ ସ୍ପୃହାରହିତ ହୋଇ ବିଚରଣ କରନ୍ତି, ସେହିଁ ଶାନ୍ତି ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ଶାନ୍ତି ଲାଭ କରିଥାନ୍ତି ॥ ୭୧ ॥

**ଏଷା ବ୍ରାହ୍ମୀ ସ୍ଥିତିଃ ପାର୍ଥ, ନୈନାଂ ପ୍ରାପ୍ୟ ବିମୁହ୍ୟତି ।**
**ସ୍ଥିତ୍ୱାସ୍ୟା-ମନ୍ତ-କାଲେଽପି, ବ୍ରହ୍ମ-ନିର୍ବାଣ-ମୃଚ୍ଛତି ॥**

ହେ ଅର୍ଜୁନ ! ଏହା ହେଉଛି ବ୍ରହ୍ମକୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କ ସ୍ଥିତି । ଏହାକୁ ପ୍ରାପ୍ତ ହୋଇ ଯୋଗୀ କେବେହେଲେ ମୋହିତ ହୁଅନ୍ତି ନାହିଁ ଏବଂ ଅନ୍ତକାଳରେ ମଧ୍ୟ ଏହି ବ୍ରାହ୍ମୀ ସ୍ଥିତିରେ ସ୍ଥିତ ହୋଇ ସେ ବ୍ରହ୍ମାନନ୍ଦ ପ୍ରାପ୍ତ ହୁଅନ୍ତି ॥ ୭୨ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ସାଂଖ୍ୟ-ଯୋଗୋ ନାମ ଦ୍ୱିତୀୟୋଽଧ୍ୟାୟଃ ॥ ୨ ॥*



॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ତୃତୀୟୋଽଧ୍ୟାୟଃ

*ଅର୍ଜୁନ ଉବାଚ*

**ଜ୍ୟାୟସୀ ଚେତ୍ କର୍ମଣସ୍-ତେ, ମତା ବୁଦ୍ଧିର୍-ଜନାର୍ଦ୍ଦନ ।**
**ତତ୍-କିଂ କର୍ମଣି ଘୋରେ ମାଂ, ନିୟୋଜୟସି କେଶବ ॥**

ଅର୍ଜୁନ ପଚାରିଲେ—ହେ ଜନାର୍ଦ୍ଦନ ! ଯଦି ଆପଣଙ୍କ ମତରେ କର୍ମ ଅପେକ୍ଷା ଜ୍ଞାନ ଶ୍ରେଷ୍ଠ, ତେବେ ହେ କେଶବ ! ମୋତେ କାହିଁକି ଭୟଙ୍କର କର୍ମରେ ଲଗାଉଛନ୍ତି? ॥ ୧ ॥

**ବ୍ୟା-ମିଶ୍ରେଣେବ ବାକ୍ୟେନ, ବୁଦ୍ଧିଂ ମୋହୟସୀବ ମେ ।**
**ତଦେକଂ ବଦ ନିଶ୍ଚିତ୍ୟ, ୟେନ ଶ୍ରେୟୋଽହ-ମାପ୍ନୁୟାମ୍ ॥**

ଆପଣ ଗୋଳିଆମିଶା ପରି ଲାଗୁଥିବା କଥାଦ୍ୱାରା ମୋର ବୁଦ୍ଧିକୁ, ଜାଣନ୍ତୁ, ମୋହିତପ୍ରାୟ କରିଦେଉଛନ୍ତି; ତେଣୁ ନିଶ୍ଚୟ କରି ଗୋଟିଏ କଥା କହନ୍ତୁ, ଯାହାଦ୍ୱାରା କି ମୁଁ କଲ୍ୟାଣ ପ୍ରାପ୍ତ ହେବି ॥ ୨ ॥

*ଶ୍ରୀଭଗବାନୁବାଚ*

**ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା, ପୁରା ପ୍ରୋକ୍ତା ମୟାନଘ ।**
**ଜ୍ଞାନ-ୟୋଗେନ ସାଂଖ୍ୟାନାଂ, କର୍ମ-ୟୋଗେନ ୟୋଗିନାମ୍ ॥**

ଶ୍ରୀଭଗବାନ୍ କହିଲେ—ହେ ନିଷ୍ପାପ ! ଏହି ଲୋକରେ

ଦୁଇପ୍ରକାର ନିଷ୍ଠା ହୁଏ ବୋଲି ମୁଁ ଆଗରୁ କହିସାରିଛି । ତନ୍ମଧ୍ୟରୁ ସାଂଖ୍ୟଯୋଗୀମାନଙ୍କର ନିଷ୍ଠା ଜ୍ଞାନଯୋଗଦ୍ୱାରା* ଏବଂ ଯୋଗୀମାନଙ୍କର ନିଷ୍ଠାψ କର୍ମଯୋଗଦ୍ୱାରା✦ ହୋଇଥାଏ ॥ ୩ ॥

**ନ କର୍ମଣା-ମନାରମ୍ଭାନ୍‌,-ନୈଷ୍କର୍ମ୍ୟଂ ପୁରୁଷୋଽଶ୍ନୁତେ ।**
**ନ ଚ ସନ୍ନ୍ୟସନା-ଦେବ, ସିଦ୍ଧିଂ ସମଧି-ଗଚ୍ଛତି ॥**

ମନୁଷ୍ୟ କର୍ମାଚରଣ ନ କରି ନିଷ୍କର୍ମତା§ ବା ଯୋଗନିଷ୍ଠା ପାଇପାରେ ନାହିଁ, କି କେବଳ କର୍ମ ତ୍ୟାଗ କରିଦେଇ ସିଦ୍ଧି ଅର୍ଥାତ୍ ସାଂଖ୍ୟନିଷ୍ଠା ପାଇପାରେ ନାହିଁ ॥ ୪ ॥

**ନ ହି କଶ୍ଚିତ୍ କ୍ଷଣମପି, ଜାତୁ ତିଷ୍ଠ-ତ୍ୟକର୍ମ-କୃତ୍ ।**
**କାର୍ଯ୍ୟତେ ହ୍ୟବଶଃ କର୍ମ, ସର୍ବଃ ପ୍ରକୃତିଜୈର୍-ଗୁଣୈଃ ॥**

ଏହା ନିଃସନ୍ଦେହ ଯେ, କୌଣସି ମନୁଷ୍ୟ କୌଣସି ସମୟରେ କ୍ଷଣେ ସୁଦ୍ଧା କର୍ମ ନ କରି ରହିପାରିବ ନାହିଁ । କାରଣ ସମସ୍ତ ପ୍ରାଣୀ

---

* ମାୟାରୁ ଉତ୍ପନ୍ନ ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବର୍ତ୍ତିତ ହୁଅନ୍ତି ଜାଣି ମନ, ଇନ୍ଦ୍ରିୟ ଓ ଶରୀରଦ୍ୱାରା ହେଉଥିବା ସମସ୍ତ କ୍ରିୟାରେ କର୍ତ୍ତାପଣ ତ୍ୟାଗ କରିଦେଇ ସଚ୍ଚିଦାନନ୍ଦ ପରମାତ୍ମାଙ୍କ ଠାରେ ଏକୀଭାବରେ ସ୍ଥିତ ହୋଇଯିବାର ନାମ ଜ୍ଞାନଯୋଗ; ଏହାକୁ ସନ୍ନ୍ୟାସ, ସାଂଖ୍ୟଯୋଗ ଇତ୍ୟାଦି ମଧ୍ୟ କହନ୍ତି ।

ψ ସାଧନାର ପରିପକ୍ୱ ଅବସ୍ଥାକୁ ନିଷ୍ଠା କହନ୍ତି ।

✦ ଫଳ ଓ ଆସକ୍ତି ଛାଡ଼ି ଭଗବଦାଜ୍ଞାନୁସାରେ ଭଗବାନଙ୍କ ପାଇଁ ସମତ୍ୱବୁଦ୍ଧିରେ କର୍ମ କରିବାର ନାମ ନିଷ୍କାମ କର୍ମଯୋଗ, ଏହାକୁ ସମତ୍ୱଯୋଗ, ବୁଦ୍ଧିଯୋଗ, କର୍ମଯୋଗ, ତଦର୍ଥକର୍ମ, ମଦର୍ଥକର୍ମ ମଧ୍ୟ କହନ୍ତି ।

§ ଯେଉଁ ଅବସ୍ଥା ପାଇଗଲେ ମନୁଷ୍ୟର କର୍ମ ଅକର୍ମ ହୋଇଯାଏ ଅର୍ଥାତ୍ ତା'ର ଫଳ ଉତ୍ପନ୍ନ ହୁଏ ନାହିଁ, ସେହି ଅବସ୍ଥାକୁ ନିଷ୍କର୍ମତା କହନ୍ତି ।

ପ୍ରକୃତିରୁ ଉତ୍ପନ୍ନ ଗୁଣମାନଙ୍କ ଦ୍ୱାରା ପରବଶ ହୋଇ କର୍ମ କରିବାକୁ ବାଧ୍ୟ ହୁଅନ୍ତି ॥ ୫ ॥

**କର୍ମେନ୍ଦ୍ରିୟାଣି ସଂୟମ୍ୟ, ୟ ଆସ୍ତେ ମନସା ସ୍ମରନ୍ ।**
**ଇନ୍ଦ୍ରିୟାର୍ଥାନ୍-ବିମୂଢାତ୍ମା, ମିଥ୍ୟାଚାରଃ ସ ଉଚ୍ୟତେ ॥**

ଯେଉଁ ମୂଢ଼ବୁଦ୍ଧି ମନୁଷ୍ୟ ସମସ୍ତ ଇନ୍ଦ୍ରିୟଙ୍କୁ ବଳପୂର୍ବକ ଉପରୁ ଉପରୁ ରୁଦ୍ଧ କରିଦେଇ ମନଦ୍ୱାରା ସେହି ଇନ୍ଦ୍ରିୟମାନଙ୍କର ବିଷୟକୁ ଚିନ୍ତନ କରୁଥାଏ, ସେ ମିଥ୍ୟାଚାରୀ ଅର୍ଥାତ୍ ଦମ୍ଭୀ ବୋଲି କଥିତ ହୁଏ ॥ ୬ ॥

**ୟସ୍-ତ୍ୱିନ୍ଦ୍ରିୟାଣି ମନସା, ନିୟମ୍ୟା-ରଭତେଽର୍ଜୁନ ।**
**କର୍ମେନ୍ଦ୍ରିୟୈଃ କର୍ମ-ୟୋଗ,-ମସକ୍ତଃ ସ ବିଶିଷ୍ୟତେ ॥**

କିନ୍ତୁ ହେ ଅର୍ଜୁନ ! ଯେଉଁ ପୁରୁଷ ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ବଶ କରି ଅନାସକ୍ତ ହୋଇ ସମସ୍ତ ଇନ୍ଦ୍ରିୟଦ୍ୱାରା କର୍ମଯୋଗ ଆଚରଣ କରନ୍ତି, ସେ ଶ୍ରେଷ୍ଠ ଅଟନ୍ତି ॥ ୭ ॥

**ନିୟତଂ କୁରୁ କର୍ମ ତ୍ୱଂ, କର୍ମ ଜ୍ୟାୟୋ ହ୍ୟକର୍ମଣଃ ।**
**ଶରୀର-ୟାତ୍ରାପି ଚ ତେ, ନ ପ୍ରସିଦ୍ଧ୍ୟେ-ଦକର୍ମଣଃ ॥**

ତୁମେ ଶାସ୍ତ୍ରବିହିତ କର୍ତ୍ତବ୍ୟ-କର୍ମ କର; କାରଣ କର୍ମ ନ କରିବାଠାରୁ କର୍ମ କରିବା ଶ୍ରେଷ୍ଠ; ତଥା କର୍ମ ନ କଲେ ତୁମର ଶରୀରନିର୍ବାହ ମଧ୍ୟ ସିଦ୍ଧ ହୋଇପାରିବ ନାହିଁ ॥ ୮ ॥

**ୟଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର, ଲୋକୋଽୟଂ କର୍ମ-ବନ୍ଧନଃ ।**
**ତଦର୍ଥଂ କର୍ମ କୌନ୍ତେୟ, ମୁକ୍ତ-ସଙ୍ଗଃ ସମାଚର ॥**

ଯଜ୍ଞପାଇଁ କରାଯାଉଥିବା କର୍ମ ଛଡ଼ା ଅନ୍ୟ କର୍ମମାନଙ୍କରେ ଲାଗିରହିବା ଫଳରେ ହିଁ ଏହି ମନୁଷ୍ୟସମୁଦାୟ କର୍ମଦ୍ୱାରା ବାନ୍ଧି ହୁଅନ୍ତି । ତେଣୁ ହେ ଅର୍ଜୁନ ! ତୁମେ ଆସକ୍ତିରହିତ ହୋଇ କେବଳ ଯଜ୍ଞନିମିତ୍ତ ହିଁ ଭଲଭାବରେ କର୍ତ୍ତବ୍ୟକର୍ମ ଆଚରଣ କର ॥ ୯ ॥

**ସହ-ଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା, ପୁରୋବାଚ ପ୍ରଜାପତିଃ ।**
**ଅନେନ ପ୍ରସବିଷ୍ୟଧ୍ୱ,-ମେଷ ବୋଽସ୍ତ୍ୱିଷ୍ଟ-କାମଧୁକ୍ ॥**

ପ୍ରଜାପତି ବ୍ରହ୍ମା କଳ୍ପର ପ୍ରାରମ୍ଭରେ ଯଜ୍ଞସହିତ ପ୍ରଜାମାନଙ୍କୁ ରଚନା କରି ସେମାନଙ୍କୁ କହିଥିଲେ, 'ତୁମ୍ଭେମାନେ ଏହି ଯଜ୍ଞଦ୍ୱାରା ବୃଦ୍ଧିପ୍ରାପ୍ତ ହୁଅ ଏବଂ ଏହି ଯଜ୍ଞ ତୁମ୍ଭମାନଙ୍କର ବାଞ୍ଛିତଭୋଗ-ପ୍ରଦାୟକ ହେଉ' ॥ ୧୦ ॥

**ଦେବାନ୍-ଭାବୟତାନେନ, ତେ ଦେବା ଭାବୟନ୍ତୁ ବଃ ।**
**ପରସ୍ପରଂ ଭାବୟନ୍ତଃ, ଶ୍ରେୟଃ ପର-ମବାପ୍ସ୍ୟଥ ॥**

ତୁମ୍ଭେମାନେ ଏହି ଯଜ୍ଞଦ୍ୱାରା ଦେବତାମାନଙ୍କୁ ଉନ୍ନତ କର ଏବଂ ସେହି ଦେବତାମାନେ ତୁମକୁ ଉନ୍ନତ କରନ୍ତୁ । ଏହିଭଳି ନିଃସ୍ୱାର୍ଥଭାବରେ ଏକ ଅନ୍ୟକୁ ଉନ୍ନତ କରିବା ଦ୍ୱାରା ତୁମ୍ଭେମାନେ ପରମକଲ୍ୟାଣ ପ୍ରାପ୍ତ ହୋଇଯିବ ॥ ୧୧ ॥

**ଇଷ୍ଟାନ୍-ଭୋଗାନ୍-ହି ବୋ ଦେବା, ଦାସ୍ୟନ୍ତେ ଯଜ୍ଞ-ଭାବିତାଃ ।**
**ତୈର୍-ଦତ୍ତା-ନପ୍ରଦାୟୈଭ୍ୟୋ, ଯୋ ଭୁଙ୍କ୍ତେ ସ୍ତେନ ଏବ ସଃ ॥**

'ଯଜ୍ଞଦ୍ୱାରା ସଂବର୍ଦ୍ଧିତ ଦେବତାମାନେ ତୁମକୁ ବିନା ପ୍ରାର୍ଥନାରେ ବାଞ୍ଛିତଭୋଗ ନିଶ୍ଚୟ ପ୍ରଦାନ କରିଚାଲିବେ ।' ସେହି

ଦେବତାମାନଙ୍କ ଦ୍ୱାରା ଏହିପରି ପ୍ରଦତ୍ତ ଭୋଗପଦାର୍ଥଗୁଡ଼ିକୁ ଯେଉଁ ମନୁଷ୍ୟ ସେମାନଙ୍କୁ ସମର୍ପଣ ନ କରି ସ୍ୱୟଂ ଭୋଗ କରେ, ସେ ଚୋର ହିଁ ଅଟେ ॥ ୧୨ ॥

**ଯଜ୍ଞ-ଶିଷ୍ଟାଶିନଃ ସନ୍ତୋ, ମୁଚ୍ୟନ୍ତେ ସର୍ବ-କିଲ୍ବିଷୈଃ ।**
**ଭୁଞ୍ଜତେ ତେ ତ୍ୱଘଂ ପାପା, ଯେ ପଚନ୍ତ୍ୟାତ୍ମ-କାରଣାତ୍ ॥**

ଯଜ୍ଞରୁ ବଳିଥିବା ଅନ୍ନ ଭୋଜନ କରୁଥିବା ଶ୍ରେଷ୍ଠ ପୁରୁଷମାନେ ସମସ୍ତ ପାପରୁ ମୁକ୍ତ ହୋଇଯାଆନ୍ତି ଏବଂ ଯେଉଁ ପାପୀଲୋକମାନେ ନିଜର ଶରୀରପୋଷଣପାଇଁ ଅନ୍ନ ରନ୍ଧନ କରନ୍ତି, ସେମାନେ ପାପ ହିଁ ଭୋଜନ କରନ୍ତି ॥ ୧୩ ॥

**ଅନ୍ନାଦ୍-ଭବନ୍ତି ଭୂତାନି, ପର୍ଜନ୍ୟା-ଦନ୍ନ-ସମ୍ଭବଃ ।**
**ଯଜ୍ଞାଦ୍-ଭବତି ପର୍ଜନ୍ୟୋ, ଯଜ୍ଞଃ କର୍ମ-ସମୁଦ୍ଭବଃ ॥**
**କର୍ମ ବ୍ରହ୍ମୋଦ୍-ଭବଂ ବିଦ୍ଧି, ବ୍ରହ୍ମାକ୍ଷର-ସମୁଦ୍-ଭବମ୍ ।**
**ତସ୍ମାତ୍ ସର୍ବଗତଂ ବ୍ରହ୍ମ, ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍ ॥**

ସମସ୍ତ ପ୍ରାଣୀ ଅନ୍ନରୁ ଉତ୍ପନ୍ନ ହୁଅନ୍ତି; ଅନ୍ନର ଉତ୍ପତ୍ତି ବୃଷ୍ଟିରୁ ହୁଏ; ବୃଷ୍ଟି ଯଜ୍ଞରୁ ହୁଏ ଏବଂ ଯଜ୍ଞ ବିହିତକର୍ମରୁ ଉତ୍ପନ୍ନ ହୁଏ । କର୍ମସମୁଦାୟ ବେଦରୁ ଉତ୍ପନ୍ନ ହୁଏ ଏବଂ ବେଦ ଅବିନାଶୀ ପରମାତ୍ମାଙ୍କ ଠାରୁ ଉତ୍ପନ୍ନ ହୁଅନ୍ତି ବୋଲି ଜାଣ । ତେଣୁ ସିଦ୍ଧ ହେଲା ଯେ, ସର୍ବବ୍ୟାପୀ ପରମ ଅକ୍ଷର ପରମାତ୍ମା ସଦାସର୍ବଦା ଯଜ୍ଞରେ ପ୍ରତିଷ୍ଠିତ ॥ ୧୪-୧୫ ॥

**ଏବଂ ପ୍ରବର୍ତ୍ତିତଂ ଚକ୍ରଂ, ନାନୁ-ବର୍ତ୍ତୟତୀହ ଯଃ ।**
**ଅଘାୟୁ-ରିନ୍ଦ୍ରିୟା-ରାମୋ, ମୋଘଂ ପାର୍ଥ ସ ଜୀବତି ॥**

ହେ ପାର୍ଥ ! ଯେଉଁ ପୁରୁଷ ଇହଲୋକରେ ଏହିପ୍ରକାରେ ପରମ୍ପରାକ୍ରମେ ପ୍ରଚଳିତ ହୋଇ ଆସିଥିବା ସୃଷ୍ଟିଚକ୍ରର ଅନୁକୂଳ ହୋଇ ଚଳେ ନାହିଁ ଅର୍ଥାତ୍ ନିଜର କର୍ତ୍ତବ୍ୟ ପାଳନ କରେ ନାହିଁ, ଇନ୍ଦ୍ରିୟମାନଙ୍କ ଦ୍ୱାରା ଭୋଗରେ ରମଣ କରୁଥିବା ସେହି ପାପାୟୁ ପୁରୁଷ ବୃଥାରେ ଜୀବନ ଧାରଣ କରେ ॥ ୧୬ ॥

**ଯସ୍ତ୍ୱାତ୍ମ-ରତି-ରେବ ସ୍ୟା,-ଦାତ୍ମ-ତୃପ୍ତଶ୍-ଚ ମାନବଃ ।**
**ଆତ୍ମନ୍ୟେବ ଚ ସନ୍ତୁଷ୍ଟସ୍,-ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ ॥**

କିନ୍ତୁ ଯେଉଁ ପୁରୁଷ ଆତ୍ମାରେ ରମଣ କରୁଥାନ୍ତି ଏବଂ ଆତ୍ମାରେ ତୃପ୍ତ ତଥା ଆତ୍ମାରେ ସନ୍ତୁଷ୍ଟ ହୋଇ ରହିଥାନ୍ତି, ତାହାଙ୍କ ପାଇଁ କୌଣସି କର୍ତ୍ତବ୍ୟ ନାହିଁ ॥ ୧୭ ॥

**ନୈବ ତସ୍ୟ କୃତେନାର୍ଥୋ, ନାକୃତେନେହ କଶ୍ଚନ ।**
**ନ ଚାସ୍ୟ ସର୍ବ-ଭୂତେଷୁ, କଶ୍ଚିଦର୍ଥ-ବ୍ୟପାଶ୍ରୟଃ ॥**

ସେହି ମହାପୁରୁଷଙ୍କର ଏହି ବିଶ୍ୱରେ କର୍ମ କରିବାରେ କୌଣସି ପ୍ରୟୋଜନ ରହେ ନାହିଁ କିମ୍ବା କର୍ମ ନ କରିବାରେ କୌଣସି ପ୍ରୟୋଜନ ରହେ ନାହିଁ, ତଥା କୌଣସି ପ୍ରାଣୀ ସହିତ ମଧ୍ୟ ତାଙ୍କର କିଛି ବି ସ୍ୱାର୍ଥସମ୍ବନ୍ଧ ରହେ ନାହିଁ ॥ ୧୮ ॥

**ତସ୍ମା-ଦସକ୍ତଃ ସତତଂ, କାର୍ଯ୍ୟଂ କର୍ମ ସମାଚର ।**
**ଅସକ୍ତୋ ହ୍ୟାଚରନ୍ କର୍ମ, ପରମାପ୍ନୋତି ପୂରୁଷଃ ॥**

ତେଣୁ ନିରନ୍ତର ଆସକ୍ତିରହିତ ହୋଇ ନିଷ୍ଠାର ସହିତ

କର୍ତ୍ତବ୍ୟକର୍ମ କର; କାରଣ ଆସକ୍ତିରହିତ ହୋଇ କର୍ମ କରୁଥିବା ମନୁଷ୍ୟ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଯାଏ ॥ ୧୯ ॥

**କର୍ମଣୈବ ହି ସଂସିଦ୍ଧି,-ମାସ୍ଥିତା ଜନକାଦୟଃ ।**
**ଲୋକ-ସଂଗ୍ରହ-ମେବାପି, ସମ୍ପଶ୍ୟନ୍ କର୍ତ୍ତୁ-ମର୍ହସି ॥**

ଜନକାଦି ଜ୍ଞାନୀମାନେ ମଧ୍ୟ ଆସକ୍ତିରହିତ କର୍ମଦ୍ୱାରା ହିଁ ପରମସିଦ୍ଧି ପ୍ରାପ୍ତ ହୋଇଥିଲେ । ସେଥିପାଇଁ ତଥା ଲୋକକଲ୍ୟାଣ ଦୃଷ୍ଟିରୁ ତୁମେ କର୍ମ କରିବା ହିଁ ଉଚିତ ॥ ୨୦ ॥

**ୟଦ୍-ୟଦାଚରତି ଶ୍ରେଷ୍ଠସ୍,-ତତ୍-ତଦେବେତରୋ ଜନଃ ।**
**ସ ୟତ୍-ପ୍ରମାଣଂ କୁରୁତେ, ଲୋକସ୍-ତଦନୁବର୍ତ୍ତତେ ॥**

ଶ୍ରେଷ୍ଠ ପୁରୁଷ ଯେଉଁ ଯେଉଁ ଆଚରଣ କରନ୍ତି, ଅନ୍ୟ ପୁରୁଷମାନେ ମଧ୍ୟ ସେହି ସେହି ଆଚରଣ କରନ୍ତି ଏବଂ ସେ ଯାହା କିଛି ପ୍ରମାଣ କରିଦିଅନ୍ତି, ସମସ୍ତ ମନୁଷ୍ୟ ତାହା ଅନୁସରଣ କରନ୍ତି ॥ ୨୧ ॥

**ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ, ତ୍ରିଷୁ ଲୋକେଷୁ କିଞ୍ଚନ ।**
**ନାନବାପ୍ତ-ମବାପ୍ତବ୍ୟଂ, ବର୍ତ୍ତ ଏବ ଚ କର୍ମଣି ॥**

ହେ ଅର୍ଜୁନ ! ତିନିଲୋକରେ ମୋ ପାଇଁ କୌଣସି କର୍ତ୍ତବ୍ୟ ନାହିଁ, କୌଣସି ପ୍ରାପ୍ତିଯୋଗ୍ୟ ବସ୍ତୁ ମୋତେ ଅପ୍ରାପ୍ତ ନୁହେଁ; ତଥାପି ମୁଁ କର୍ମରେ ହିଁ ଲାଗିରହିଛି ॥ ୨୨ ॥

**ୟଦି ହ୍ୟହଂ ନ ବର୍ତ୍ତେୟଂ, ଜାତୁ କର୍ମଣ୍ୟ-ତନ୍ଦ୍ରିତଃ ।**
**ମମ ବର୍ତ୍ମାନୁ-ବର୍ତ୍ତନ୍ତେ, ମନୁଷ୍ୟାଃ ପାର୍ଥ ସର୍ବଶଃ ॥**

କାରଣ, ହେ ପାର୍ଥ ! ଯଦି କଦାଚିତ୍ ମୁଁ ସାବଧାନ ହୋଇ କର୍ମରେ ଲାଗି ନ ରହେ, ତେବେ ବଡ଼ କ୍ଷତି ହୋଇଯିବ; କାରଣ ମନୁଷ୍ୟମାନେ ସବୁ ଦିଗରୁ ମୋରି ମାର୍ଗ ଅନୁସରଣ କରନ୍ତି ॥ ୨୩ ॥

**ଉତ୍ସୀଦେୟୁ-ରିମେ ଲୋକା, ନ କୁର୍ଯ୍ୟାଂ କର୍ମ ଚେଦହମ୍ ।**
**ସଙ୍କରସ୍ୟ ଚ କର୍ତ୍ତା ସ୍ୟା,-ମୁପ-ହନ୍ୟା-ମିମାଃ ପ୍ରଜାଃ ॥**

ତେଣୁ ଯଦି ମୁଁ କର୍ମ ନ କରିବି, ତେବେ ଏ ସବୁ ମନୁଷ୍ୟ ନଷ୍ଟଭ୍ରଷ୍ଟ ହୋଇଯିବେ ଏବଂ ମୁଁ ସଙ୍କରତାର କର୍ତ୍ତା ହୋଇଯିବି, ତଥା ଏହି ସମସ୍ତ ପ୍ରଜାଙ୍କୁ ପଥଭ୍ରଷ୍ଟ କରିବାର କାରଣ ହୋଇଯିବି ॥ ୨୪ ॥

**ସକ୍ତାଃ କର୍ମଣ୍ୟ-ବିଦ୍ୱାଂସୋ, ଯଥା କୁର୍ବନ୍ତି ଭାରତ ।**
**କୁର୍ଯ୍ୟାଦ୍-ବିଦ୍ୱାଂସ୍-ତଥା-ସକ୍ତଶ୍,-ଚିକୀର୍ଷୁର୍-ଲୋକ-ସଂଗ୍ରହମ୍ ॥**

ହେ ଭାରତ ! କର୍ମରେ ଆସକ୍ତ ହୋଇଥିବା ଅଜ୍ଞାନୀମାନେ ଯେଉଁପରି କର୍ମ କରନ୍ତି, ଆସକ୍ତିରହିତ ବିଦ୍ୱାନ୍ ମଧ୍ୟ ଲୋକ-କଲ୍ୟାଣ କରିବାକୁ ଇଚ୍ଛୁକ ହୋଇ ସେହିପରି କର୍ମ କରିବା ଉଚିତ ॥ ୨୫ ॥

**ନ ବୁଦ୍ଧି-ଭେଦଂ ଜନୟେ,-ଦଜ୍ଞାନାଂ କର୍ମ-ସଙ୍ଗିନାମ୍ ।**
**ଜୋଷୟେତ୍-ସର୍ବ-କର୍ମାଣି, ବିଦ୍ୱାନ୍ ଯୁକ୍ତଃ ସମାଚରନ୍ ॥**

ପରମାତ୍ମାଙ୍କ ସ୍ୱରୂପରେ ଅଟଳଭାବରେ ସ୍ଥିତ ଜ୍ଞାନୀ ପୁରୁଷ ଶାସ୍ତ୍ରବିହିତ କର୍ମରେ ଆସକ୍ତିଯୁକ୍ତ ଅଜ୍ଞାନୀମାନଙ୍କ ବୁଦ୍ଧିରେ ଭ୍ରମ

ଅର୍ଥାତ୍ କର୍ମରେ ଅଶ୍ରଦ୍ଧା ଉତ୍ପନ୍ନ କରାଇବା ଉଚିତ ନୁହେଁ; ବରଂ ସ୍ୱୟଂ ଶାସ୍ତ୍ରବିହିତ ସମସ୍ତ କର୍ମ ଭଲଭାବରେ ଆଚରଣ କରି ସେମାନଙ୍କ ଦ୍ୱାରା ମଧ୍ୟ ସେହିପରି ଆଚରଣ କରାଇବା ଉଚିତ ॥ ୨୬ ॥

**ପ୍ରକୃତେଃ କ୍ରିୟମାଣାନି, ଗୁଣୈଃ କର୍ମାଣି ସର୍ବଶଃ ।**
**ଅହଙ୍କାର-ବିମୂଢାତ୍ମା, କର୍ତ୍ତାହ-ମିତି ମନ୍ୟତେ ॥**

ବସ୍ତୁତଃ ସମସ୍ତ କର୍ମ ସବୁପ୍ରକାରେ ପ୍ରକୃତିର ଗୁଣମାନଙ୍କ ଦ୍ୱାରା କରାଯାଉଥାଏ; ତଥାପି ଯାହାର ଅନ୍ତଃକରଣ ଅହଂକାରଦ୍ୱାରା ମୋହିତ ହୋଇ ରହିଥାଏ, ସେହି ଅଜ୍ଞାନୀ 'ମୁଁ ହିଁ କର୍ତ୍ତା ଅଟେ' ବୋଲି ମନେକରେ ॥ ୨୭ ॥

**ତତ୍ତ୍ୱ-ବିତ୍ତୁ ମହାବାହୋ, ଗୁଣ-କର୍ମ-ବିଭାଗୟୋଃ ।**
**ଗୁଣା ଗୁଣେଷୁ ବର୍ତ୍ତନ୍ତ, ଇତି ମତ୍ୱା ନ ସଜ୍ଜତେ ॥**

କିନ୍ତୁ ହେ ମହାବାହୁ ! ଗୁଣ-ବିଭାଗ ଓ କର୍ମ-ବିଭାଗର* ତତ୍ତ୍ୱΨ ଜାଣିଥିବା ଜ୍ଞାନଯୋଗୀ ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହୁଅନ୍ତି ବୋଲି ବୁଝି ସେଥିରେ ଆସକ୍ତ ହୁଅନ୍ତି ନାହିଁ ॥ ୨୮ ॥

* ତ୍ରିଗୁଣାତ୍ମକ ମାୟାର କାର୍ଯ୍ୟରୂପ ପଞ୍ଚମହାଭୂତ, ମନ, ବୁଦ୍ଧି, ଅହଂକାର, ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ ଏବଂ ଶବ୍ଦାଦି ପଞ୍ଚ ତନ୍ମାତ୍ର—ଏଗୁଡ଼ିକ ହେଉଛି ଗୁଣବିଭାଗ ଏବଂ ଏସବୁଦ୍ୱାରା ସଂଘଟିତ କର୍ମର ନାମ କର୍ମବିଭାଗ ।

Ψ ଉପରୋକ୍ତ ଗୁଣବିଭାଗ ଓ କର୍ମବିଭାଗରୁ ଆତ୍ମାକୁ ପୃଥକ୍ ଅର୍ଥାତ୍ ନିର୍ଲେପ ବୋଲି ଜାଣିପାରିବା ହିଁ ଆତ୍ମାର ତତ୍ତ୍ୱ ଜାଣିବା ।

**ପ୍ରକୃତେର୍-ଗୁଣ-ସମ୍ମୂଢ଼ାଃ, ସଜ୍ଜନ୍ତେ ଗୁଣ-କର୍ମସୁ ।**
**ତାନକୃତ୍ସ୍ନ-ବିଦୋ ମନ୍ଦାନ୍, କୃତ୍ସ୍ନ-ବିନ୍-ନ ବିଚାଲୟେତ୍ ॥**

ପ୍ରକୃତିର ଗୁଣମାନଙ୍କ ଦ୍ୱାରା ଅତ୍ୟନ୍ତ ମୋହିତ ହୋଇଥିବା ମନୁଷ୍ୟମାନେ ଗୁଣମାନଙ୍କରେ ଓ କର୍ମମାନଙ୍କରେ ଆସକ୍ତ ରହନ୍ତି; ପୂର୍ଣ୍ଣଭାବରେ ବୁଝି ନ ଥିବା ସେହି ମନ୍ଦବୁଦ୍ଧି ଅଜ୍ଞାନୀମାନଙ୍କୁ ପୂର୍ଣ୍ଣ-ଭାବରେ ଜାଣିଥିବା ଜ୍ଞାନୀ ବିଚଳିତ କରିବା ଉଚିତ ନୁହେଁ ॥ ୨୯ ॥

**ମୟି ସର୍ବାଣି କର୍ମାଣି, ସଂନ୍ୟସ୍ୟା-ଧ୍ୟାତ୍ମ-ଚେତସା ।**
**ନିରାଶୀର୍-ନିର୍ମମୋ ଭୂତ୍ୱା, ଯୁଧ୍ୟସ୍ୱ ବିଗତ-ଜ୍ୱରଃ ॥**

ଅନ୍ତର୍ଯାମୀ ପରମାତ୍ମାଙ୍କ ଠାରେ ଲାଗିରହିଥିବା ଚିତ୍ତଦ୍ୱାରା ସମସ୍ତ କର୍ମ ମୋଠାରେ ଅର୍ପଣ କରି ଆଶାରହିତ, ମମତ୍ୱରହିତ ଓ ସନ୍ତାପରହିତ ହୋଇ ଯୁଦ୍ଧ କର ॥ ୩୦ ॥

**ୟେ ମେ ମତ-ମିଦଂ ନିତ୍ୟ,-ମନୁତିଷ୍ଠନ୍ତି ମାନବାଃ ।**
**ଶ୍ରଦ୍ଧା-ବନ୍ତୋଽନ-ସୂୟନ୍ତୋ, ମୁଚ୍ୟନ୍ତେ ତେଽପି କର୍ମଭିଃ ॥**

ଯେଉଁ ମନୁଷ୍ୟମାନେ ଦୋଷଦୃଷ୍ଟିରୁ ରହିତ ହୋଇ ଏବଂ ଶ୍ରଦ୍ଧାଯୁକ୍ତ ହୋଇ ମୋର ଏହି ମତକୁ ସଦାସର୍ବଦା ଅନୁସରଣ କରନ୍ତି, ସେମାନେ ମଧ୍ୟ ସମସ୍ତ କର୍ମରୁ ମୁକ୍ତ ହୋଇଯାଆନ୍ତି ॥ ୩୧ ॥

**ୟେ ତ୍ୱେ-ତଦଭ୍ୟ-ସୂୟନ୍ତୋ, ନାନୁ-ତିଷ୍ଠନ୍ତି ମେ ମତମ୍ ।**
**ସର୍ବଜ୍ଞାନ-ବିମୂଢ଼ାଂସ୍-ତାନ୍, ବିଦ୍ଧି ନଷ୍ଟା-ନଚେତସଃ ॥**

କିନ୍ତୁ ଯେଉଁ ମନୁଷ୍ୟମାନେ ମୋଠାରେ ଦୋଷାରୋପଣ

କରି ମୋର ଏହି ମତ ଅନୁସାରେ ଚଳନ୍ତି ନାହିଁ, ସେହି ମୂର୍ଖମାନଙ୍କୁ ତୁମେ ସମସ୍ତ ଜ୍ଞାନରେ ମୂଢ଼ ବୋଲି ଓ ନଷ୍ଟ ହୋଇଯାଇଛନ୍ତି ବୋଲି ଜାଣ ॥ ୩୨ ॥

**ସଦୃଶଂ ଚେଷ୍ଟତେ ସ୍ୱସ୍ୟାଃ, ପ୍ରକୃତେର୍-ଜ୍ଞାନବାନପି ।**
**ପ୍ରକୃତିଂ ଯାନ୍ତି ଭୂତାନି, ନିଗ୍ରହଃ କିଂ କରିଷ୍ୟତି ॥**

ସମସ୍ତ ପ୍ରାଣୀ ପ୍ରକୃତିକୁ ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ନିଜ ସ୍ୱଭାବର ପରବଶ ହୋଇ କର୍ମ କରନ୍ତି । ଜ୍ଞାନବାନ୍ ବ୍ୟକ୍ତି ମଧ୍ୟ ନିଜ ପ୍ରକୃତି ଅନୁସାରେ ଚେଷ୍ଟା କରନ୍ତି । ତେଣୁ ଏଥିରେ କାହାର ଜିଦ୍ ବା କ'ଣ କରିବ? ॥ ୩୩ ॥

**ଇନ୍ଦ୍ରିୟସ୍ୟେ-ନ୍ଦ୍ରିୟସ୍ୟାର୍ଥେ, ରାଗ-ଦ୍ୱେଷୌ ବ୍ୟବସ୍ଥିତୌ ।**
**ତୟୋର୍-ନ ବଶ-ମାଗଚ୍ଛେତ୍, ତୌ ହ୍ୟସ୍ୟ ପରି-ପନ୍ଥିନୌ ॥**

ଇନ୍ଦ୍ରିୟ-ଇନ୍ଦ୍ରିୟର ଅର୍ଥରେ ଅର୍ଥାତ୍ ପ୍ରତ୍ୟେକ ଇନ୍ଦ୍ରିୟର ବିଷୟରେ ରାଗ ଓ ଦ୍ୱେଷ ଲୁଚିରହିଛି । ମନୁଷ୍ୟ ସେହି ଦୁଇଟିର ବଶବର୍ତ୍ତୀ ହେବା ଉଚିତ ନୁହେଁ; କାରଣ ସେ ଦୁଇଟି ତା'ର କଲ୍ୟାଣମାର୍ଗରେ ବିଘ୍ନସୃଷ୍ଟି କରୁଥିବା ମହାନ୍ ଶତ୍ରୁ ଅଟନ୍ତି ॥ ୩୪ ॥

**ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ, ପର-ଧର୍ମାତ୍ ସ୍ୱନୁଷ୍ଠିତାତ୍ ।**
**ସ୍ୱଧର୍ମେ ନିଧନଂ ଶ୍ରେୟଃ, ପର-ଧର୍ମୋ ଭୟାବହଃ ॥**

ଉତ୍ତମ ଆଚରଣ ସହିତ ପାଳିତ ହେଉଥିବା ଅନ୍ୟର ଧର୍ମଠାରୁ ଗୁଣରହିତ ହେଲେ ମଧ୍ୟ ସ୍ୱଧର୍ମ ଅଧିକ ମଙ୍ଗଳକର ।

ନିଜ ଧର୍ମରେ ମରିବା ମଧ୍ୟ କଲ୍ୟାଣକାରକ; କିନ୍ତୁ ଅନ୍ୟର ଧର୍ମ ଭୟାବହ ଅଟେ ॥ ୩୫ ॥

ଅର୍ଜୁନ ଉବାଚ

**ଅଥ କେନ ପ୍ରଯୁକ୍ତୋଽୟଂ, ପାପଂ ଚରତି ପୂରୁଷଃ ।**
**ଅନିଚ୍ଛନ୍-ନପି ବାର୍ଷ୍ଣେୟ, ବଲାଦିବ ନିୟୋଜିତଃ ॥**

ଅର୍ଜୁନ ପଚାରିଲେ—ହେ କୃଷ୍ଣ ! ପୁଣି ଏହି ମନୁଷ୍ୟ ସ୍ୱୟଂ ଇଚ୍ଛା ନ କଲେ ମଧ୍ୟ ବଳପୂର୍ବକ ନିୟୋଜିତ ହେଲା ପରି କାହାଦ୍ୱାରା ପ୍ରେରିତ ହୋଇ ପାପ ଆଚରଣ କରେ? ॥ ୩୬ ॥

ଶ୍ରୀଭଗବାନୁବାଚ

**କାମ ଏଷ କ୍ରୋଧ ଏଷ, ରଜୋ-ଗୁଣ-ସମୁଦ୍ଭବଃ ।**
**ମହାଶନୋ ମହା-ପାପ୍ମା, ବିଦ୍ଧ୍ୟେନ-ମିହ ବୈରିଣମ୍ ॥**

ଶ୍ରୀଭଗବାନ୍ କହିଲେ—ରଜୋଗୁଣରୁ ଉତ୍ପନ୍ନ ଏହି କାମ ହିଁ କ୍ରୋଧ ଅଟେ; ଏହି କାମ ବଡ଼ ଭୋଜନିଆ ଅର୍ଥାତ୍ ଭୋଗରେ କେବେ ହେଲେ ତୃପ୍ତ ହୁଏ ନାହିଁ ଓ ସେ ବଡ଼ ପାପୀ । ଏହି ବିଷୟରେ ଏହାକୁ ହିଁ ତୁମେ ଶତ୍ରୁ ବୋଲି ଜାଣ ॥ ୩୭ ॥

**ଧୂମେ-ନାବ୍ରିୟତେ ବହ୍ନିର୍,-ୟଥାଦର୍ଶୋ ମଲେନ ଚ ।**
**ୟଥୋଲ୍ବେ-ନାବୃତୋ ଗର୍ଭସ୍,-ତଥା ତେନେଦ-ମାବୃତମ୍ ॥**

ଯେପରି ଧୂଆଁଦ୍ୱାରା ଅଗ୍ନି ଆବୃତ ହୋଇଥାଏ, ଧୂଳିଦ୍ୱାରା ଦର୍ପଣ ଆବୃତ ହୋଇଥାଏ ତଥା ଜରାୟୁଦ୍ୱାରା ଗର୍ଭ ଆବୃତ ହୋଇ ରହିଥାଏ, କାମଦ୍ୱାରା ଏହି ଜ୍ଞାନ ସେହିପରି ଆବୃତ ହୋଇ ରହିଥାଏ ॥ ୩୮ ॥

**ଆବୃତଂ ଜ୍ଞାନ-ମେତେନ, ଜ୍ଞାନିନୋ ନିତ୍ୟ-ବୈରିଣା ।**
**କାମ-ରୂପେଣ କୌନ୍ତେୟ, ଦୁଷ୍ପୂରେ-ଣାନଲେ୍ନ ଚ ॥**

ଏବଂ ହେ ଅର୍ଜୁନ ! ଅଗ୍ନିପରି କେବେ ତୃପ୍ତ ହେଉ ନ ଥିବା ଏହି କାମରୂପକ ଜ୍ଞାନୀମାନଙ୍କର ନିତ୍ୟଶତ୍ରୁଦ୍ୱାରା ମନୁଷ୍ୟର ଜ୍ଞାନ ଆବୃତ ହୋଇ ରହିଛି ॥ ୩୯ ॥

**ଇନ୍ଦ୍ରିୟାଣି ମନୋ ବୁଦ୍ଧି,-ରସ୍ୟାଧିଷ୍ଠାନ-ମୁଚ୍ୟତେ ।**
**ଏତୈର୍-ବିମୋହ-ୟତ୍ୟେଷ, ଜ୍ଞାନ-ମାବୃତ୍ୟ ଦେହିନମ୍ ॥**

ଇନ୍ଦ୍ରିୟଗଣ, ମନ ଓ ବୁଦ୍ଧି—ଏସବୁକୁ କାମର ବାସସ୍ଥାନ ବୋଲି କୁହାଯାଏ । ଏହି କାମ ଏମାନଙ୍କ ଦ୍ୱାରା ଅର୍ଥାତ୍ ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ହିଁ ଜ୍ଞାନକୁ ଆଚ୍ଛାଦିତ କରି ଜୀବାତ୍ମାକୁ ବିମୋହିତ କରେ ॥ ୪୦ ॥

**ତସ୍ମାତ୍-ତ୍ୱମିନ୍ଦ୍ରିୟା-ଣ୍ୟାଦୌ, ନିୟମ୍ୟ ଭରତର୍ଷଭ ।**
**ପାପ୍ମାନଂ ପ୍ରଜହି ହ୍ୟେନଂ, ଜ୍ଞାନ-ବିଜ୍ଞାନ-ନାଶନମ୍ ॥**

ତେଣୁ ହେ ଭରତବଂଶର ଶ୍ରେଷ୍ଠ ଅର୍ଜୁନ ! ତୁମେ ପ୍ରଥମେ ଇନ୍ଦ୍ରିୟମାନଙ୍କୁ ବଶ କରି ଜ୍ଞାନ ଓ ବିଜ୍ଞାନକୁ ନାଶ କରୁଥିବା ଏହି ମହାପାପୀ କାମକୁ ଅବଶ୍ୟ ବଳପୂର୍ବକ ମାରିଦିଅ ॥ ୪୧ ॥

**ଇନ୍ଦ୍ରିୟାଣି ପରାଣ୍ୟାହୁ,-ରିନ୍ଦ୍ରିୟେଭ୍ୟଃ ପରଂ ମନଃ ।**
**ମନସସ୍-ତୁ ପରା ବୁଦ୍ଧିର୍,-ୟୋ ବୁଦ୍ଧେଃ ପରତସ୍-ତୁ ସଃ ॥**

ଇନ୍ଦ୍ରିୟମାନଙ୍କୁ ସ୍ଥୂଳଶରୀର ଅପେକ୍ଷା ଶ୍ରେଷ୍ଠ, ବଳବାନ୍ ଓ ସୂକ୍ଷ୍ମ ବୋଲି କହନ୍ତି; ଇନ୍ଦ୍ରିୟମାନଙ୍କ ଠାରୁ ମନ ଶ୍ରେଷ୍ଠ; ମନଠାରୁ

ବୁଦ୍ଧି ଶ୍ରେଷ୍ଠ ଓ ଯାହା ବୁଦ୍ଧିଠାରୁ ମଧ୍ୟ ଅତ୍ୟନ୍ତ ଶ୍ରେଷ୍ଠ, ତାହା ହେଉଛି ଆତ୍ମା ॥ ୪୨ ॥

**ଏବଂ ବୁଦ୍ଧେଃ ପରଂ ବୁଦ୍ଧ୍ୱା, ସଂସ୍ତଭ୍ୟାତ୍ମାନ-ମାତ୍ମନା ।**
**ଜହି ଶତ୍ରୁଂ ମହାବାହୋ, କାମ-ରୂପଂ ଦୁରାସଦମ୍ ॥**

ଏପରିଭାବରେ ଆତ୍ମାକୁ ବୁଦ୍ଧିଠାରୁ ମହତ୍ ଅର୍ଥାତ୍ ସୂକ୍ଷ୍ମ, ବଳବାନ୍ ଓ ଅତ୍ୟନ୍ତ ଶ୍ରେଷ୍ଠ ବୋଲି ଜାଣି ଏବଂ ବୁଦ୍ଧିଦ୍ୱାରା ମନକୁ ବଶ କରି, ହେ ମହାବାହୁ ! ତୁମେ ଏହି କାମରୂପୀ ଦୁର୍ଜୟ ଶତ୍ରୁକୁ ମାରିଦିଅ ॥ ୪୩ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, କର୍ମ-ଯୋଗୋ ନାମ ତୃତୀୟୋଽଧ୍ୟାୟଃ ॥ ୩ ॥*



॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ଚତୁର୍ଥୋଽଧ୍ୟାୟଃ

*ଶ୍ରୀଭଗବାନୁବାଚ*

**ଇମଂ ବିବସ୍ୱତେ ଯୋଗଂ, ପ୍ରୋକ୍ତବାନହ-ମବ୍ୟୟମ୍ ।**
**ବିବସ୍ୱାନ୍-ମନବେ ପ୍ରାହ, ମନୁ-ରିକ୍ଷ୍ୱାକବେଽବ୍ରବୀତ୍ ॥**

**ଶ୍ରୀଭଗବାନ୍ କହିଲେ**—ମୁଁ ଏହି ଅବିନାଶୀ ଯୋଗ ସୂର୍ଯ୍ୟଙ୍କୁ କହିଥିଲି; ସୂର୍ଯ୍ୟ ନିଜର ପୁତ୍ର ବୈବସ୍ୱତ ମନୁଙ୍କୁ ତାହା କହିଥିଲେ ଏବଂ ମନୁ ନିଜର ପୁତ୍ର ରାଜା ଇକ୍ଷ୍ୱାକୁଙ୍କୁ ତାହା କହିଥିଲେ ॥ ୧ ॥

**ଏବଂ ପରମ୍ପରା-ପ୍ରାପ୍ତ,-ମିମଂ ରାଜର୍ଷୟୋ ବିଦୁଃ ।**
**ସ କାଲେନେହ ମହତା, ଯୋଗୋ ନଷ୍ଟଃ ପରନ୍-ତପ ॥**

ହେ ପରନ୍ତପ ଅର୍ଜୁନ ! ଏପରିଭାବରେ ପରମ୍ପରାରୁ ପ୍ରାପ୍ତ ଏହି ଯୋଗ ରାଜର୍ଷିମାନେ ଜାଣିଥିଲେ; କିନ୍ତୁ ତା'ପରେ ସେହି ଯୋଗ ବହୁକାଳରୁ ଏହି ପୃଥିବୀଲୋକରେ ଲୁପ୍ତପ୍ରାୟ ହୋଇଯାଇଛି ॥ ୨ ॥

**ସ ଏବାୟଂ ମୟା ତେଽଦ୍ୟ, ଯୋଗଃ ପ୍ରୋକ୍ତଃ ପୁରାତନଃ ।**
**ଭକ୍ତୋଽସି ମେ ସଖା ଚେତି, ରହସ୍ୟଂ ହ୍ୟେତ-ଦୁତ୍ତମମ୍ ॥**

ତୁମେ ମୋର ଭକ୍ତ ଓ ପ୍ରିୟ ସଖା; ଏଣୁ ସେହି

ପୁରାତନ ଯୋଗ ହିଁ ଆଜି ମୁଁ ତୁମକୁ କହିଦେଲି; କାରଣ ଏହା ହେଉଛି ଅତ୍ୟନ୍ତ ଉତ୍ତମ ରହସ୍ୟ ଅର୍ଥାତ୍ ଗୁପ୍ତ ରଖିବାଯୋଗ୍ୟ ବିଷୟ ॥ ୩ ॥

*ଅର୍ଜୁନ ଉବାଚ*

**ଅପରଂ ଭବତୋ ଜନ୍ମ, ପରଂ ଜନ୍ମ ବିବସ୍ୱତଃ ।**
**କଥ-ମେତଦ୍-ବିଜାନୀୟାଂ, ତ୍ୱମାଦୌ ପ୍ରୋକ୍ତ-ବାନିତି ॥**

ଅର୍ଜୁନ କହିଲେ—ଆପଣଙ୍କ ଜନ୍ମ ତ ଅର୍ବାଚୀନ—ଏବେ ହୋଇଛି ଏବଂ ସୂର୍ଯ୍ୟଙ୍କର ଜନ୍ମ ବହୁ ପୁରାତନ ଅର୍ଥାତ୍ କଳ୍ପର ଆରମ୍ଭରେ ହୋଇଥିଲା; ତେଣୁ ଆପଣ କଳ୍ପର ଆରମ୍ଭରେ ସୂର୍ଯ୍ୟଙ୍କୁ ଏହି ଯୋଗ କହିଥିଲେ ବୋଲି ମୁଁ କିପରି ବୁଝିପାରିବି? ॥ ୪ ॥

*ଶ୍ରୀଭଗବାନୁବାଚ*

**ବହୂନି ମେ ବ୍ୟତୀତାନି, ଜନ୍ମାନି ତବ ଚାର୍ଜୁନ ।**
**ତାନ୍ୟହଂ ବେଦ ସର୍ବାଣି, ନ ତ୍ୱଂ ବେତ୍ଥ ପରନ୍-ତପ ॥**

ଶ୍ରୀଭଗବାନ୍ କହିଲେ—ହେ ପରନ୍ତପ ଅର୍ଜୁନ ! ମୋର ଓ ତୁମର ଅନେକ ଜନ୍ମ ଅତିବାହିତ ହୋଇସାରିଛି । ତୁମେ ସେ ସବୁକୁ ଜାଣ ନାହିଁ; କିନ୍ତୁ ମୁଁ ଜାଣେ ॥ ୫ ॥

**ଅଜୋଽପି ସନ୍-ନବ୍ୟୟାତ୍ମା, ଭୂତାନା-ମୀଶ୍ୱରୋଽପି ସନ୍ ।**
**ପ୍ରକୃତିଂ ସ୍ୱା-ମଧିଷ୍ଠାୟ, ସମ୍ଭବା-ମ୍ୟାତ୍ମ-ମାୟୟା ॥**

ମୁଁ ଅଜନ୍ମା ଓ ଅବିନାଶୀସ୍ୱରୂପ ହୋଇଥିଲେ ମଧ୍ୟ ଏବଂ ସମସ୍ତ ପ୍ରାଣୀମାନଙ୍କର ଈଶ୍ୱର ହୋଇଥିଲେ ମଧ୍ୟ ନିଜ ପ୍ରକୃତିକୁ

ଅଧୀନ କରି ନିଜ ଯୋଗମାୟାବଳରେ ପ୍ରକଟ ହୋଇଥାଏ ॥ ୬ ॥

**ୟଦା ୟଦା ହି ଧର୍ମସ୍ୟ, ଗ୍ଲାନିର୍-ଭବତି ଭାରତ ।**
**ଅଭ୍ୟୁତ୍ଥାନ-ମଧର୍ମସ୍ୟ, ତଦାତ୍ମାନଂ ସୃଜାମ୍ୟହମ୍ ॥**

ହେ ଭାରତ ! ଯେଉଁ ଯେଉଁ ସମୟରେ ଧର୍ମର ଅବକ୍ଷୟ ହୁଏ ଓ ଅଧର୍ମର ବୃଦ୍ଧି ହୁଏ, ସେହି ସେହି ସମୟରେ ମୁଁ ନିଜର ରୂପ ସୃଷ୍ଟି କରିଥାଏ ଅର୍ଥାତ୍ ସାକାରରୂପରେ ଲୋକମାନଙ୍କ ସମ୍ମୁଖରେ ପ୍ରକଟ ହୁଏ ॥ ୭ ॥

**ପରିତ୍ରାଣାୟ ସାଧୂନାଂ, ବିନାଶାୟ ଚ ଦୁଷ୍କୃତାମ୍ ।**
**ଧର୍ମ-ସଂସ୍ଥାପ-ନାର୍ଥାୟ, ସମ୍ଭବାମି ୟୁଗେ ୟୁଗେ ॥**

ସାଧୁପୁରୁଷମାନଙ୍କୁ ଉଦ୍ଧାର କରିବାପାଇଁ, ପାପୀମାନଙ୍କୁ ବିନାଶ କରିବାପାଇଁ ଏବଂ ଧର୍ମ ସଂସ୍ଥାପନ କରିବାପାଇଁ ମୁଁ ଯୁଗେ ଯୁଗେ ପ୍ରକଟ ହୋଇଥାଏ ॥ ୮ ॥

**ଜନ୍ମ କର୍ମ ଚ ମେ ଦିବ୍ୟ,-ମେବଂ ୟୋ ବେତ୍ତି ତତ୍ତ୍ୱତଃ ।**
**ତ୍ୟକ୍ତ୍ୱା ଦେହଂ ପୁନର୍ଜନ୍ମ, ନୈତି ମାମେତି ସୋଽର୍ଜୁନ ॥**

ହେ ଅର୍ଜୁନ ! ମୋର ଜନ୍ମ ଓ କର୍ମ ଦିବ୍ୟ ଅର୍ଥାତ୍ ନିର୍ମଳ ଏବଂ ଅଲୌକିକ ବୋଲି ଯେଉଁ ମନୁଷ୍ୟ ତତ୍ତ୍ୱତଃ* ଜାଣିପାରେ,

---

* ସର୍ବଶକ୍ତିମାନ୍ ସଚ୍ଚିଦାନନ୍ଦ ପରମାତ୍ମା ଅଜନ୍ମା, ଅବିନାଶୀ ଓ ସର୍ବଭୂତର ପରମଗତି ତଥା ପରମ ଆଶ୍ରୟ ଅଟନ୍ତି । ସେ କେବଳ ଧର୍ମ ସ୍ଥାପନା କରିବା ନିମନ୍ତେ ଓ ସଂସାର ଉଦ୍ଧାର କରିବା ନିମନ୍ତେ ନିଜ ଯୋଗମାୟା ବଳରେ ସଗୁଣସ୍ୱରୂପ ହୋଇ ପ୍ରକଟିତ ହୁଅନ୍ତି । ତେଣୁ ତାଙ୍କ ସମାନ ସୁହୃଦ୍, ପ୍ରେମୀ ଓ ପତିତପାବନ ଦ୍ୱିତୀୟ କେହି ନାହିଁ । ଏହା ବୁଝିପାରି ପରମେଶ୍ୱରଙ୍କୁ ଅନନ୍ୟ ପ୍ରେମରେ ନିରନ୍ତର ଚିନ୍ତନ କରି କରି ଅନାସକ୍ତଭାବରେ ସଂସାରରେ ବ୍ୟବହାରାଦି ସମ୍ପନ୍ନ କରିବା ହିଁ ପରମେଶ୍ୱରଙ୍କୁ ତତ୍ତ୍ୱତଃ ଜାଣିବା ।

ସେ ଶରୀର ତ୍ୟାଗ କରି ପୁନର୍ଜନ୍ମ ପାଏ ନାହିଁ; ସେ ମୋତେ ହିଁ ପାଇଯାଏ ॥ ୯ ॥

**ବୀତରାଗ-ଭୟ-କ୍ରୋଧା, ମନ୍ମୟା ମାମୁପାଶ୍ରିତାଃ ।**
**ବହବୋ ଜ୍ଞାନ-ତପସା, ପୂତା ମଦ୍-ଭାବ-ମାଗତାଃ ॥**

ପୂର୍ବକାଳରେ ବି ଯେଉଁମାନଙ୍କର ରାଗ, ଭୟ ଓ କ୍ରୋଧ ସର୍ବଥା ନଷ୍ଟ ହୋଇଯାଇଥିଲା ଏବଂ ଯେଉଁମାନେ ମୋଠାରେ ଅନନ୍ୟ ପ୍ରେମପୂର୍ବକ ତନ୍ମୟ ହୋଇ ରହିଥିଲେ, ମୋତେ ଆଶ୍ରୟ କରି ରହିଥିବା ସେହିସବୁ ଭକ୍ତ ଉପରୋକ୍ତ ଜ୍ଞାନରୂପକ ତପଦ୍ୱାରା ପବିତ୍ର ହୋଇ ମୋର ସ୍ୱରୂପ ପ୍ରାପ୍ତ ହୋଇସାରିଛନ୍ତି ॥ ୧୦ ॥

**ଯେ ଯଥା ମାଂ ପ୍ରପଦ୍ୟନ୍ତେ, ତାଂସ୍-ତଥୈବ ଭଜାମ୍ୟହମ୍ ।**
**ମମ ବର୍ତ୍ମାନୁ-ବର୍ତ୍ତନ୍ତେ, ମନୁଷ୍ୟାଃ ପାର୍ଥ ସର୍ବଶଃ ॥**

ହେ ଅର୍ଜୁନ ! ଯେଉଁ ଭକ୍ତମାନେ ମୋତେ ଯେଉଁପରି ଭଜନ କରନ୍ତି, ମୁଁ ସେମାନଙ୍କୁ ସେହିପରି ଭଜନ କରେ; କାରଣ ମନୁଷ୍ୟମାନେ ସବୁପ୍ରକାରେ ମୋର ହିଁ ମାର୍ଗ ଅନୁସରଣ କରନ୍ତି ॥ ୧୧ ॥

**କାଙ୍କ୍ଷନ୍ତଃ କର୍ମଣାଂ ସିଦ୍ଧିଂ, ଯଜନ୍ତ ଇହ ଦେବତାଃ ।**
**କ୍ଷିପ୍ରଂ ହି ମାନୁଷେ ଲୋକେ, ସିଦ୍ଧର୍-ଭବତି କର୍ମଜା ॥**

ଏହି ମନୁଷ୍ୟଲୋକରେ କର୍ମଫଳ ଆକାଙ୍କ୍ଷା କରୁଥିବା ଲୋକେ ଦେବତାମାନଙ୍କୁ ପୂଜା କରନ୍ତି; କାରଣ ସେମାନଙ୍କୁ କର୍ମରୁ ଉତ୍ପନ୍ନ ହେଉଥିବା ସିଦ୍ଧି ଶୀଘ୍ର ମିଳିଯାଏ ॥ ୧୨ ॥

**ଚାତୁର୍-ବର୍ଣ୍ଣ୍ୟଂ ମୟା ସୃଷ୍ଟଂ, ଗୁଣ-କର୍ମ-ବିଭାଗଶଃ ।**
**ତସ୍ୟ କର୍ତାର-ମପି ମାଂ, ବିଦ୍ଧ୍ୟ-କର୍ତାର-ମବ୍ୟୟମ୍ ॥**

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର—ଏହି ଚାରି ବର୍ଣ୍ଣର ସମୂହ ଗୁଣ ଓ କର୍ମର ବିଭାଗପୂର୍ବକ ମୋ ଦ୍ୱାରା ରଚିତ ହୋଇଛି । ଏପରିଭାବରେ ମୁଁ ସେହି ସୃଷ୍ଟିରଚନାଦି କର୍ମର କର୍ତା ହୋଇଥିଲେ ମଧ୍ୟ, ତୁମେ ମୋତେ ଅର୍ଥାତ୍ ଅବିନାଶୀ ପରମେଶ୍ୱରଙ୍କୁ ବସ୍ତୁତଃ ଅକର୍ତା ବୋଲି ହିଁ ଜାଣ ॥ ୧୩ ॥

**ନ ମାଂ କର୍ମାଣି ଲିମ୍ପନ୍ତି, ନ ମେ କର୍ମ-ଫଲେ ସ୍ପୃହା ।**
**ଇତି ମାଂ ଯୋଽଭି-ଜାନାତି, କର୍ମଭିର୍-ନ ସ ବଧ୍ୟତେ ॥**

କର୍ମଫଳରେ ମୋର ସ୍ପୃହା ନାହିଁ, ତେଣୁ ମୋତେ କର୍ମମାନେ ଲିପ୍ତ କରନ୍ତି ନାହିଁ । ଯେ ମୋତେ ଏହିପରି ତତ୍ତ୍ୱତଃ ଜାଣିପାରନ୍ତି, ସେ ମଧ୍ୟ କର୍ମମାନଙ୍କ ଦ୍ୱାରା ବାନ୍ଧିହୁଅନ୍ତି ନାହିଁ ॥ ୧୪ ॥

**ଏବଂ ଜ୍ଞାତ୍ୱା କୃତଂ କର୍ମ, ପୂର୍ବୈ-ରପି ମୁମୁକ୍ଷୁଭିଃ ।**
**କୁରୁ କର୍ମୈବ ତସ୍ମାତ୍ତ୍ୱଂ, ପୂର୍ବୈଃ ପୂର୍ବତରଂ କୃତମ୍ ॥**

ପୂର୍ବକାଳର ମୁମୁକ୍ଷୁମାନେ ମଧ୍ୟ ଏହା ଜାଣି କର୍ମ କରିଥିଲେ । ତେଣୁ ତୁମେ ମଧ୍ୟ ପୂର୍ବଜମାନଙ୍କ ଦ୍ୱାରା ଆଦିକାଳରୁ କରାଯାଇଥିବା କର୍ମ ହିଁ କର ॥ ୧୫ ॥

**କିଂ କର୍ମ କିମ-କର୍ମେତି, କବୟୋଽପ୍ୟତ୍ର ମୋହିତାଃ ।**
**ତତ୍ତେ କର୍ମ ପ୍ରବକ୍ଷ୍ୟାମି, ଯଜ୍-ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ ॥**

କର୍ମ କ'ଣ ଏବଂ ଅକର୍ମ କ'ଣ—ତାହା ନିର୍ଣ୍ଣୟ କରିବାବେଳେ ବୁଦ୍ଧିମାନ୍ ପୁରୁଷମାନେ ମଧ୍ୟ ଭ୍ରମରେ ପଡ଼ିଯାଆନ୍ତି । ତେଣୁ ମୁଁ ତୁମକୁ ସେହି କର୍ମତତ୍ତ୍ୱ ଭଲଭାବରେ ବୁଝାଇ କହିଦେବି, ଯାହା ଜାଣିଲେ ତୁମେ ଅଶୁଭରୁ ଅର୍ଥାତ୍ କର୍ମବନ୍ଧନରୁ ମୁକ୍ତ ହୋଇଯିବ ॥ ୧୬ ॥

**କର୍ମଣୋ ହ୍ୟପି ବୋଦ୍ଧବ୍ୟଂ, ବୋଦ୍ଧବ୍ୟଂ ଚ ବିକର୍ମଣଃ ।**
**ଅକର୍ମଣଶ୍ଚ ବୋଦ୍ଧବ୍ୟଂ, ଗହନା କର୍ମଣୋ ଗତିଃ ॥**

କର୍ମର ସ୍ୱରୂପ ବି ଜାଣିବା ଉଚିତ ଓ ଅକର୍ମର ସ୍ୱରୂପ ବି ଜାଣିବା ଉଚିତ ଏବଂ ବିକର୍ମର ସ୍ୱରୂପ ମଧ୍ୟ ଜାଣିବା ଉଚିତ; କାରଣ କର୍ମର ଗତି ବଡ଼ ଗହନ ॥ ୧୭ ॥

**କର୍ମଣ୍ୟକର୍ମ ଯଃ ପଶ୍ୟେ,-ଦକର୍ମଣି ଚ କର୍ମ ଯଃ ।**
**ସ ବୁଦ୍ଧିମାନ୍ ମନୁଷ୍ୟେଷୁ, ସ ଯୁକ୍ତଃ କୃତ୍ସ୍ନ-କର୍ମ-କୃତ୍ ॥**

ଯେ କର୍ମରେ ଅକର୍ମ ଦର୍ଶନ କରନ୍ତି ଏବଂ ଅକର୍ମରେ କର୍ମ ଦର୍ଶନ କରନ୍ତି, ସେ ମନୁଷ୍ୟମାନଙ୍କ ମଧ୍ୟରେ ବୁଦ୍ଧିମାନ୍ ଏବଂ ସେହି ଯୋଗୀ ସମସ୍ତ କର୍ମ କରିଥାନ୍ତି ॥ ୧୮ ॥

**ଯସ୍ୟ ସର୍ବେ ସମାରମ୍ଭାଃ, କାମ-ସଙ୍କଳ୍ପ-ବର୍ଜିତାଃ ।**
**ଜ୍ଞାନାଗ୍ନି-ଦଗ୍ଧ-କର୍ମାଣଂ, ତମାହୁଃ ପଣ୍ଡିତଂ ବୁଧାଃ ॥**

ଯାହାଙ୍କର ସମସ୍ତ ଶାସ୍ତ୍ରସମ୍ମତ କର୍ମ କାମନାଶୂନ୍ୟ ଓ ସଙ୍କଳ୍ପଶୂନ୍ୟ ହୋଇଥାଏ, ତଥା ଯାହାଙ୍କର ସମସ୍ତ କର୍ମ ଜ୍ଞାନରୂପକ

ଅଗ୍ନିଦ୍ୱାରା ଭସ୍ମ ହୋଇଯାଇଛି, ସେହି ମହାପୁରୁଷଙ୍କୁ ଜ୍ଞାନୀମାନେ ମଧ୍ୟ ପଣ୍ଡିତ ବୋଲି କହନ୍ତି ॥ ୧୯ ॥

**ତ୍ୟକ୍ତ୍ୱା କର୍ମ-ଫଳାସଙ୍ଗଂ, ନିତ୍ୟ-ତୃପ୍ତୋ ନିରାଶ୍ରୟଃ ।**
**କର୍ମଣ୍ୟଭି-ପ୍ରବୃତ୍ତୋଽପି, ନୈବ କିଞ୍ଚିତ୍-କରୋତି ସଃ ॥**

ଯେଉଁ ପୁରୁଷ ସମସ୍ତ କର୍ମରେ ଏବଂ ତାହାର ଫଳରେ ସର୍ବଥା ଆସକ୍ତି ତ୍ୟାଗ କରି ସଂସାରର ଆଶ୍ରୟରୁ ରହିତ ହୋଇଯାଇଛନ୍ତି ଏବଂ ପରମାତ୍ମାଙ୍କ ଠାରେ ନିତ୍ୟ ତୃପ୍ତ ହୋଇ ରହିଛନ୍ତି, ସେ କର୍ମରେ ଭଲଭାବରେ ପ୍ରବୃତ୍ତ ହୋଇ ମଧ୍ୟ ବସ୍ତୁତଃ କିଛି ବି କରନ୍ତି ନାହିଁ ॥ ୨୦ ॥

**ନିରାଶୀର୍-ଯତ-ଚିତ୍ତାତ୍ମା, ତ୍ୟକ୍ତ-ସର୍ବ-ପରିଗ୍ରହଃ ।**
**ଶାରୀରଂ କେବଲଂ କର୍ମ, କୁର୍ବନ୍-ନାପ୍ନୋତି କିଲ୍‌ବିଷମ୍ ॥**

ଯେ ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ଜୟ କରିନେଇଛନ୍ତି, ଯେ ସମସ୍ତ ଭୋଗସାମଗ୍ରୀ ପରିତ୍ୟାଗ କରିଦେଇଛନ୍ତି, ସେହି ଆଶାରହିତ ପୁରୁଷ କେବଳ ଶରୀର-ସମ୍ବନ୍ଧୀ କର୍ମ କରୁଥିଲେ ମଧ୍ୟ ପାପଭାଗୀ ହୁଅନ୍ତି ନାହିଁ ॥ ୨୧ ॥

**ଯଦୃଚ୍ଛା-ଲାଭ-ସନ୍ତୁଷ୍ଟୋ, ଦ୍ୱନ୍ଦ୍ୱାତୀତୋ ବିମତ୍ସରଃ ।**
**ସମଃ ସିଦ୍ଧା-ବସିଦ୍ଧୌ ଚ, କୃତ୍ୱାପି ନ ନିବଧ୍ୟତେ ॥**

ଯେ ବିନା ଇଚ୍ଛାରେ ସ୍ୱତଃ ମିଳୁଥିବା ପଦାର୍ଥରେ ସଦା ସନ୍ତୁଷ୍ଟ ରହନ୍ତି, ଯେ ସର୍ବଥା ଈର୍ଷାଶୂନ୍ୟ ହୋଇଯାଇଛନ୍ତି, ଯେ

ହର୍ଷଶୋକ ଆଦି ଦ୍ୱନ୍ଦ୍ୱରୁ ସର୍ବଥା ଅତୀତ ହୋଇଯାଇଛନ୍ତି, ସିଦ୍ଧି ଓ ଅସିଦ୍ଧିରେ ସମ ରହୁଥିବା ସେହି କର୍ମଯୋଗୀ କର୍ମ କରି ମଧ୍ୟ ସେଥିରେ ବାନ୍ଧିହୁଅନ୍ତି ନାହିଁ, ଅର୍ଥାତ୍ ସେ କର୍ମବନ୍ଧନରେ ପଡ଼ନ୍ତି ନାହିଁ ॥ ୨୨ ॥

**ଗତ-ସଙ୍ଗସ୍ୟ ମୁକ୍ତସ୍ୟ, ଜ୍ଞାନା-ବସ୍ଥିତ-ଚେତସଃ ।**
**ଯଜ୍ଞା-ଯାଚରତଃ କର୍ମ, ସମଗ୍ରଂ ପ୍ରବିଲୀୟତେ ॥**

ଯାହାଙ୍କର ଆସକ୍ତି ସର୍ବଥା ନଷ୍ଟ ହୋଇଯାଇଛି, ଯେ ଦେହାଭିମାନ ଓ ମମତ୍ୱରୁ ରହିତ ହୋଇଯାଇଛନ୍ତି, ଯାହାଙ୍କ ଚିତ୍ତ ନିରନ୍ତର ପରମାତ୍ମାଙ୍କ ଜ୍ଞାନରେ ଲାଗିରହିଛି, କେବଳ ଯଜ୍ଞ ସମ୍ପାଦନନିମିତ୍ତ କର୍ମ କରୁଥିବା ସେହି ମନୁଷ୍ୟଙ୍କର ସକଳ କର୍ମ ଭଲଭାବରେ ବିଲୀନ ହୋଇଯାଏ ॥ ୨୩ ॥

**ବ୍ରହ୍ମାର୍ପଣଂ ବ୍ରହ୍ମ ହବିର୍,-ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତମ୍ ।**
**ବ୍ରହ୍ମୈବ ତେନ ଗନ୍ତବ୍ୟଂ, ବ୍ରହ୍ମ-କର୍ମ-ସମାଧିନା ॥**

ଯେଉଁ ଯଜ୍ଞରେ ଅର୍ପଣ ଅର୍ଥାତ୍ ସ୍ରୁବ ଆଦି ଉପକରଣ ମଧ୍ୟ ବ୍ରହ୍ମ ଏବଂ ହବନଯୋଗ୍ୟ ଦ୍ରବ୍ୟ ମଧ୍ୟ ବ୍ରହ୍ମ, ତଥା ବ୍ରହ୍ମରୂପକ କର୍ତ୍ତାଙ୍କ ଦ୍ୱାରା ବ୍ରହ୍ମରୂପକ ଅଗ୍ନିରେ ଆହୁତିଦାନରୂପକ କ୍ରିୟା ମଧ୍ୟ ବ୍ରହ୍ମ, ସେହି ବ୍ରହ୍ମକର୍ମରେ ସ୍ଥିତ ରହୁଥିବା ଯୋଗୀଙ୍କ ଦ୍ୱାରା ପାଇବାଯୋଗ୍ୟ ଫଳ ମଧ୍ୟ ବ୍ରହ୍ମ ହିଁ ଅଟେ ॥ ୨୪ ॥

**ଦୈବ-ମେବାପରେ ଯଜ୍ଞଂ, ଯୋଗିନଃ ପର୍ୟ୍ୟୁପାସତେ ।**
**ବ୍ରହ୍ମାଗ୍ନା-ବପରେ ଯଜ୍ଞଂ, ଯଜ୍ଞେନୈବୋପ-ଜୁହ୍ୱତି ॥**

ଅନ୍ୟ କେତେକ ଯୋଗୀ ଦେବତାମାନଙ୍କର ପୂଜନରୂପକ ଯଜ୍ଞକୁ ହିଁ ଭଲଭାବରେ ଅନୁଷ୍ଠାନ କରନ୍ତି ଏବଂ ଅନ୍ୟ କେତେକ ଯୋଗୀ ପରବ୍ରହ୍ମ-ପରମାତ୍ମାରୂପକ ଅଗ୍ନିରେ ଅଭେଦ-ଦର୍ଶନରୂପକ ଯଜ୍ଞଦ୍ୱାରା ହିଁ ଆତ୍ମରୂପକ ଯଜ୍ଞକୁ ହବନ* କରନ୍ତି ॥ ୨୫ ॥

**ଶ୍ରୋତ୍ରାଦୀ-ନୀନ୍ଦ୍ରିୟା-ଣ୍ୟନ୍ୟେ, ସଂୟମାଗ୍ନିଷୁ ଜୁହ୍ୱତି ।**
**ଶବ୍ଦାଦୀନ୍-ବିଷୟା-ନନ୍ୟ, ଇନ୍ଦ୍ରିୟାଗ୍ନିଷୁ ଜୁହ୍ୱତି ॥**

ଅନ୍ୟ ଯୋଗୀମାନେ ଶ୍ରୋତ୍ର ଆଦି ଇନ୍ଦ୍ରିୟମାନଙ୍କୁ ସଂଯମ-ରୂପକ ଅଗ୍ନିମାନଙ୍କରେ ହୋମ କରନ୍ତି ଏବଂ ଆଉ କେତେକ ଯୋଗୀ ଶବ୍ଦାଦି ବିଷୟମାନଙ୍କୁ ଇନ୍ଦ୍ରିୟରୂପକ ଅଗ୍ନିମାନଙ୍କରେ ହୋମ କରନ୍ତି ॥ ୨୬ ॥

**ସର୍ବାଣୀନ୍ଦ୍ରିୟ-କର୍ମାଣି, ପ୍ରାଣ-କର୍ମାଣି ଚାପରେ ।**
**ଆତ୍ମ-ସଂୟମ-ଯୋଗାଗ୍ନୌ, ଜୁହ୍ୱତି ଜ୍ଞାନ-ଦୀପିତେ ॥**

ଅନ୍ୟ ଯୋଗୀମାନେ ଇନ୍ଦ୍ରିୟମାନଙ୍କର ସମସ୍ତ କ୍ରିୟା ଏବଂ ପ୍ରାଣମାନଙ୍କର ସମସ୍ତ କ୍ରିୟା ଜ୍ଞାନଦ୍ୱାରା ପ୍ରକାଶିତ ଆତ୍ମସଂଯମ-ଯୋଗରୂପକ ଅଗ୍ନିରେ ହୋମΨ କରିଦିଅନ୍ତି ॥ ୨୭ ॥

**ଦ୍ରବ୍ୟ-ଯଜ୍ଞାସ୍-ତପୋ-ଯଜ୍ଞା, ଯୋଗ-ଯଜ୍ଞାସ୍-ତଥାପରେ ।**
**ସ୍ୱାଧ୍ୟାୟ-ଜ୍ଞାନ-ଯଜ୍ଞାଶ୍-ଚ, ଯତୟଃ ସଂଶିତ-ବ୍ରତାଃ ॥**

* ପରବ୍ରହ୍ମ ପରମାତ୍ମାଙ୍କ ଠାରେ ଜ୍ଞାନଦ୍ୱାରା ଏକୀଭାବରେ ସ୍ଥିତ ହେବା ହିଁ ବ୍ରହ୍ମରୂପ ଅଗ୍ନିରେ ଯଜ୍ଞଦ୍ୱାରା ଯଜ୍ଞର ହବନ କରିବା ।

Ψ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଭିନ୍ନ ଅନ୍ୟ କାହାର ବି ଚିନ୍ତନ ନ କରିବା ହିଁ ସେସବୁକୁ ଆହୁତି ଦେବା ।

କେତେକ ପୁରୁଷ ଦ୍ରବ୍ୟସମ୍ବନ୍ଧୀ ଯଜ୍ଞ କରନ୍ତି; କେତେକ ତପସ୍ୟାରୂପକ ଯଜ୍ଞ କରନ୍ତି ଆଉ କେତେକ ଯୋଗରୂପକ ଯଜ୍ଞ କରନ୍ତି; ପୁଣି ଆଉ କେତେକ ଅହିଂସାଦି ତୀକ୍ଷ୍ଣବ୍ରତରେ ଯୁକ୍ତ ପ୍ରଯତ୍ନଶୀଳ ପୁରୁଷ ସ୍ୱାଧ୍ୟାୟରୂପକ ଜ୍ଞାନଯଜ୍ଞ କରନ୍ତି ॥ ୨୮ ॥

**ଅପାନେ ଜୁହ୍ୱତି ପ୍ରାଣଂ, ପ୍ରାଣେଽପାନଂ ତଥାପରେ ।**
**ପ୍ରାଣାପାନ-ଗତୀ ରୁଦ୍ଧ୍ୱା, ପ୍ରାଣାୟାମ-ପରାୟଣାଃ ॥**
**ଅପରେ ନିୟତାହାରାଃ, ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି ।**
**ସର୍ବେଽପ୍ୟେତେ ଯଜ୍ଞ-ବିଦୋ, ଯଜ୍ଞ-କ୍ଷପିତ-କଲ୍ମଷାଃ ॥**

ଅନ୍ୟ କେତେକ ଯୋଗୀ ଅପାନବାୟୁରେ ପ୍ରାଣବାୟୁକୁ ହବନ କରନ୍ତି; ସେହିପରି ଅନ୍ୟ ଯୋଗୀମାନେ ପ୍ରାଣବାୟୁରେ ଅପାନବାୟୁକୁ ହବନ କରନ୍ତି; ତଥା ଅନ୍ୟ କେତେକ ନିୟମିତ ଆହାର କରୁଥିବା ପ୍ରାଣାୟାମପରାୟଣ ପୁରୁଷ ପ୍ରାଣ ଓ ଅପାନର ଗତି ରୋଧ କରି ପ୍ରାଣମାନଙ୍କୁ ପ୍ରାଣମାନଙ୍କରେ ହିଁ ହବନ କରନ୍ତି । ଏ ସମସ୍ତ ସାଧକ ଯଜ୍ଞଦ୍ୱାରା ପାପ ନାଶ କରାଇଦିଅନ୍ତି, ଏମାନେ ଯଜ୍ଞର ଜ୍ଞାତା ଅଟନ୍ତି ॥ ୨୯, ୩୦ ॥

**ଯଜ୍ଞ-ଶିଷ୍ଟାମୃତ-ଭୁଜୋ, ଯାନ୍ତି ବ୍ରହ୍ମ ସନାତନମ୍ ।**
**ନାୟଂ ଲୋକୋଽସ୍ତ୍ୟ-ଯଜ୍ଞସ୍ୟ, କୁତୋଽନ୍ୟଃ କୁରୁ-ସତ୍ତମ ॥**

ହେ କୁରୁଶ୍ରେଷ୍ଠ ଅର୍ଜୁନ ! ଯଜ୍ଞରୁ ବଳିଥିବା ଅମୃତ ସେବନ କରୁଥିବା ଯୋଗୀମାନେ ସନାତନ ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହୁଅନ୍ତି ଏବଂ ଯଜ୍ଞ କରୁ ନ ଥିବା ପୁରୁଷ ପାଇଁ ତ ଏହି

ମନୁଷ୍ୟଲୋକ ମଧ୍ୟ ସୁଖଦାୟକ ନୁହେଁ, ପରଲୋକ ବା କିପରି ସୁଖଦାୟକ ହୋଇପାରିବ ! ॥ ୩୧ ॥

**ଏବଂ ବହୁବିଧା ଯଜ୍ଞା, ବିତତା ବ୍ରହ୍ମଣୋ ମୁଖେ ।**
**କର୍ମଜାନ୍ ବିଦ୍ଧି ତାନ୍ ସର୍ବା,-ନେବଂ ଜ୍ଞାତ୍ୱା ବିମୋକ୍ଷ୍ୟସେ ॥**

ଏହିପରି ଆହୁରି ବହୁପ୍ରକାର ଯଜ୍ଞ ବେଦବାଣୀଦ୍ୱାରା ବିସ୍ତାରିତଭାବରେ କୁହାଯାଇଛି । ସେସବୁ ମନ, ଇନ୍ଦ୍ରିୟ ଏବଂ ଶରୀରର କ୍ରିୟାଦ୍ୱାରା ସମ୍ପନ୍ନ ହୁଏ ବୋଲି ଜାଣ । ଏହିପରି ତତ୍ତ୍ୱତଃ ଜାଣି ଯଜ୍ଞନିମିତ୍ତ କର୍ମାନୁଷ୍ଠାନ କଲେ ତୁମେ କର୍ମବନ୍ଧନରୁ ସର୍ବଥା ମୁକ୍ତ ହୋଇଯିବ ॥ ୩୨ ॥

**ଶ୍ରେୟାନ୍-ଦ୍ରବ୍ୟ-ମୟାଦ୍-ଯଜ୍ଞାଜ୍,-ଜ୍ଞାନ-ଯଜ୍ଞଃ ପରନ୍-ତପ ।**
**ସର୍ବଂ କର୍ମାଖିଲଂ ପାର୍ଥ, ଜ୍ଞାନେ ପରି-ସମାପ୍ୟତେ ॥**

ହେ ପରନ୍ତପ ଅର୍ଜୁନ ! ଦ୍ରବ୍ୟମୟ ଯଜ୍ଞ ଅପେକ୍ଷା ଜ୍ଞାନଯଜ୍ଞ ଅତ୍ୟନ୍ତ ଶ୍ରେଷ୍ଠ; କାରଣ ଯେକୌଣସିପ୍ରକାର କର୍ମ ହେଉ ନା କାହିଁକି, ସକଳ କର୍ମର ପରିସମାପ୍ତି ଜ୍ଞାନରେ ହୋଇଯାଏ ॥ ୩୩ ॥

**ତଦ୍-ବିଦ୍ଧି ପ୍ରଣିପାତେନ, ପରି-ପ୍ରଶ୍ନେନ ସେବୟା ।**
**ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ, ଜ୍ଞାନିନସ୍-ତତ୍ତ୍ୱ-ଦର୍ଶିନଃ ॥**

ସେହି ଜ୍ଞାନକୁ ତୁମେ ତତ୍ତ୍ୱଦର୍ଶୀ ଜ୍ଞାନୀମାନଙ୍କ ନିକଟକୁ ଯାଇ ବୁଝ । ତାଙ୍କୁ ଭଲଭାବେ ଦଣ୍ଡବତ୍ ପ୍ରଣାମ କରି, ସେବା କରି ଏବଂ କପଟ ତ୍ୟାଗ କରି ସରଳତାପୂର୍ବକ ପ୍ରଶ୍ନ କଲେ,

ଭଲଭାବରେ ପରମାତ୍ମତତ୍ତ୍ୱ ଜାଣିଥିବା ସେହି ଜ୍ଞାନୀ ମହାତ୍ମାମାନେ ତୁମକୁ ତତ୍ତ୍ୱଜ୍ଞାନ ଉପଦେଶ ଦେବେ,—॥ ୩୪ ॥

**ଯଜ୍‌-ଜ୍ଞାତ୍ୱା ନ ପୁନର୍ମୋହ,-ମେବଂ ଯାସ୍ୟସି ପାଣ୍ଡବ ।**
**ଯେନ ଭୂତାନ୍ୟଶେଷେଣ, ଦ୍ରକ୍ଷ୍ୟସ୍ୟାତ୍‌-ମନ୍ୟଥୋ ମୟି ॥**

ଯାହା ଜାଣି ତୁମେ ଆଉ ଏହିପରି ମୋହପ୍ରାପ୍ତ ହେବ ନାହିଁ, ତଥା ହେ ଅର୍ଜୁନ ! ସେହି ଜ୍ଞାନଦ୍ୱାରା ତୁମେ ସକଳଭୂତଙ୍କୁ ସମ୍ପୂର୍ଣ୍ଣଭାବରେ ପ୍ରଥମେ ନିଜଠାରେ* ଏବଂ ପରେ ମୋ'ଠାରେ ଅର୍ଥାତ୍ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ଦେଖିବ♆ ॥ ୩୫ ॥

**ଅପି ଚେଦସି ପାପେଭ୍ୟଃ, ସର୍ବେଭ୍ୟଃ ପାପ-କୃତ୍ତମଃ ।**
**ସର୍ବଂ ଜ୍ଞାନ-ପ୍ଳବେନୈବ, ବୃଜିନଂ ସନ୍ତରିଷ୍ୟସି ॥**

ଯଦି ତୁମେ ସମସ୍ତ ପାପୀଙ୍କ ଠାରୁ ମଧ୍ୟ ଅଧିକ ପାପୀ ହୋଇଥାଅ, ତେବେ ମଧ୍ୟ ତୁମେ ଜ୍ଞାନରୂପକ ନୌକାଦ୍ୱାରା ନିଃସନ୍ଦେହ ସମ୍ପୂର୍ଣ୍ଣ ପାପସମୁଦ୍ରକୁ ଭଲଭାବରେ ପାର ହୋଇଯିବ ॥ ୩୬ ॥

**ଯଥୈଧାଂସି ସମିଦ୍ଧୋଽଗ୍ନିର୍‌,-ଭସ୍ମସାତ୍ କୁରୁତେଽର୍ଜୁନ ।**
**ଜ୍ଞାନାଗ୍ନିଃ ସର୍ବ-କର୍ମାଣି, ଭସ୍ମସାତ୍ କୁରୁତେ ତଥା ॥**

କାରଣ, ହେ ଅର୍ଜୁନ ! ପ୍ରଜ୍ୱଳିତ ଅଗ୍ନି ଯେପରି ଇନ୍ଧନସବୁ ଭସ୍ମୀଭୂତ କରିଦିଏ, ଜ୍ଞାନରୂପକ ଅଗ୍ନି ସେହିପରି ସମସ୍ତ କର୍ମ ଭସ୍ମୀଭୂତ କରିଦିଏ ॥ ୩୭ ॥

---

* ଗୀତା ୬ଷ୍ଠ ଅଧ୍ୟାୟ ୨୯ ଶ୍ଳୋକ ଦେଖନ୍ତୁ ।

♆ ୬ଷ୍ଠ ଅଧ୍ୟାୟ ୩୦ ଶ୍ଳୋକ ଦେଖନ୍ତୁ ।

**ନ ହି ଜ୍ଞାନେନ ସଦୃଶଂ, ପବିତ୍ର-ମିହ ବିଦ୍ୟତେ ।**
**ତତ୍-ସ୍ୱୟଂ ଯୋଗ-ସଂସିଦ୍ଧଃ, କାଲେ-ନାତ୍ମନି ବିନ୍ଦତି ॥**

ଏହି ସଂସାରରେ ଜ୍ଞାନସମାନ ପବିତ୍ରକାରକ ବସ୍ତୁ ନିଃସନ୍ଦେହ ଆଉ କିଛି ନାହିଁ। ଦୀର୍ଘକାଳ ଧରି କର୍ମଯୋଗସାଧନାଦ୍ୱାରା ଶୁଦ୍ଧାନ୍ତଃକରଣ ହୋଇଥିବା ମନୁଷ୍ୟ ଏହି ଜ୍ଞାନ ସ୍ୱତଃ ନିଜ ଆତ୍ମାରେ ପାଇପାରନ୍ତି ॥ ୩୮ ॥

**ଶ୍ରଦ୍ଧାବାଁଲ୍-ଲଭତେ ଜ୍ଞାନଂ, ତତ୍ପରଃ ସଂଯତେନ୍ଦ୍ରିୟଃ ।**
**ଜ୍ଞାନଂ ଲବ୍ଧ୍ୱା ପରାଂ ଶାନ୍ତି,-ମଚିରେଣାଧି-ଗଚ୍ଛତି ॥**

ଜିତେନ୍ଦ୍ରିୟ, ସାଧନାପରାୟଣ ଏବଂ ଶ୍ରଦ୍ଧାବାନ୍ ପୁରୁଷ ଜ୍ଞାନ-ପ୍ରାପ୍ତ ହୁଅନ୍ତି ତଥା ଜ୍ଞାନପ୍ରାପ୍ତ ହୋଇ ସେ ଅବିଳମ୍ବେ ତତ୍କାଳ ହିଁ ଭଗବତ୍‌ପ୍ରାପ୍ତିରୂପକ ପରମ ଶାନ୍ତି ପ୍ରାପ୍ତ ହୋଇଯାଆନ୍ତି ॥ ୩୯ ॥

**ଅଜ୍ଞଶ୍ଚା-ଶ୍ରଦ୍-ଦଧାନଶ୍ଚ, ସଂଶୟାତ୍ମା ବିନଶ୍ୟତି ।**
**ନାୟଂ ଲୋକୋଽସ୍ତି ନ ପରୋ, ନ ସୁଖଂ ସଂଶୟାତ୍ମନଃ ॥**

ବିବେକହୀନ, ଶ୍ରଦ୍ଧାରହିତ ଏବଂ ସଂଶୟଯୁକ୍ତ ମନୁଷ୍ୟ ପରମାର୍ଥରୁ ଅବଶ୍ୟ ଭ୍ରଷ୍ଟ ହୋଇଯାଏ। ଏପରି ସଂଶୟଯୁକ୍ତ ମନୁଷ୍ୟପାଇଁ ଇହଲୋକ ନାହିଁ, କି ପରଲୋକ ନାହିଁ, କି ସୁଖ ମଧ୍ୟ ନାହିଁ ॥ ୪୦ ॥

**ଯୋଗ-ସଂନ୍ୟସ୍ତ-କର୍ମାଣଂ, ଜ୍ଞାନ-ସଂଛିନ୍ନ-ସଂଶୟମ୍ ।**
**ଆତ୍ମବନ୍ତଂ ନ କର୍ମାଣି, ନିବଧ୍ନନ୍ତି ଧନଞ୍ଜୟ ॥**

ହେ ଧନଞ୍ଜୟ ! ଯେ କର୍ମଯୋଗବିଧିରେ ସମସ୍ତ କର୍ମ ପରମାତ୍ମାଙ୍କ ଠାରେ ଅର୍ପଣ କରିଦେଇଛନ୍ତି ଏବଂ ଯେ ବିବେକଦ୍ୱାରା ସମସ୍ତ ସଂଶୟ ନାଶ କରିଦେଇଛନ୍ତି, ସେପରି ବଶୀକୃତ-ଅନ୍ତଃକରଣଯୁକ୍ତ ପୁରୁଷଙ୍କୁ କର୍ମମାନେ ବାନ୍ଧିପାରନ୍ତି ନାହିଁ ॥ ୪୧ ॥

**ତସ୍ମା-ଦଜ୍ଞାନ-ସଂଭୂତଂ, ହୃତ୍‌ସ୍ଥଂ ଜ୍ଞାନାସି-ନାତ୍ମନଃ ।**
**ଛିତ୍ତ୍ୱୈନଂ ସଂଶୟଂ ଯୋଗ,-ମାତିଷ୍ଠୋ-ତ୍ତିଷ୍ଠ ଭାରତ ॥**

ତେଣୁ ହେ ଭରତବଂଶୀୟ ଅର୍ଜୁନ ! ତୁମେ ବିବେକଜ୍ଞାନ-ରୂପକ ତରବାରିଦ୍ୱାରା ହୃଦୟରେ ରହିଥିବା ନିଜର ଅଜ୍ଞାନଜନିତ ସଂଶୟ ଛେଦନ କରି ସମତ୍ୱରୂପକ କର୍ମଯୋଗରେ ସ୍ଥିତ ହୁଅ ଏବଂ ଯୁଦ୍ଧପାଇଁ ଠିଆ ହୋଇଯାଅ ॥ ୪୨ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ଜ୍ଞାନ-କର୍ମ-ସଂନ୍ୟାସ-ଯୋଗୋ ନାମ ଚତୁର୍ଥୋଽଧ୍ୟାୟଃ ॥ ୪ ॥*



॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ପଞ୍ଚମୋଽଧ୍ୟାୟଃ

*ଅର୍ଜୁନ ଉବାଚ*

**ସଂନ୍ୟାସଂ କର୍ମଣାଂ କୃଷ୍ଣ, ପୁନର୍‌-ଯୋଗଂ ଚ ଶଂସସି ।**
**ଯଚ୍ଛ୍ରେୟ ଏତୟୋ-ରେକଂ, ତନ୍‌-ମେ ବ୍ରୂହି ସୁନିଶ୍ଚିତମ୍‌ ॥**

ଅର୍ଜୁନ କହିଲେ—ହେ କୃଷ୍ଣ ! ଆପଣ କର୍ମମାନଙ୍କର ସନ୍ନ୍ୟାସକୁ ପ୍ରଶଂସା କରୁଛନ୍ତି, ପୁନଶ୍ଚ କର୍ମଯୋଗର ମଧ୍ୟ ପ୍ରଶଂସା କରୁଛନ୍ତି। ତେଣୁ ଏହି ଦୁଇଟି ମଧ୍ୟରୁ ଯେଉଁଟି ମୋପାଇଁ ଭଲଭାବରେ ନିଶ୍ଚିତ କଲ୍ୟାଣକର ସାଧନା ହେବ, ତାହା ମୋତେ କହନ୍ତୁ ॥ ୧ ॥

*ଶ୍ରୀଭଗବାନୁବାଚ*

**ସଂନ୍ୟାସଃ କର୍ମ-ଯୋଗଶ୍ଚ, ନିଃଶ୍ରେୟସ-କରାବୁଭୌ ।**
**ତୟୋସ୍ତୁ କର୍ମ-ସଂନ୍ୟାସାତ୍‌, କର୍ମଯୋଗୋ ବିଶିଷ୍ୟତେ ॥**

ଶ୍ରୀଭଗବାନ୍ କହିଲେ—କର୍ମସନ୍ନ୍ୟାସ* ଓ କର୍ମଯୋଗ☬—ଏ ଉଭୟେ ପରମ କଲ୍ୟାଣକାରକ ଅଟନ୍ତି, କିନ୍ତୁ ଏହି ଦୁଇଟି

---

* ଅର୍ଥାତ୍ ମନ, ଇନ୍ଦ୍ରିୟ ଓ ଶରୀରଦ୍ୱାରା ହେଉଥିବା ସକଳ କର୍ମରେ କର୍ତ୍ତାପଣ ତ୍ୟାଗ।

☬ ସମତ୍ୱ ବୁଦ୍ଧିରେ ଭଗବାନଙ୍କ ପାଇଁ କର୍ମ କରିବା।

ମଧ୍ୟରୁ ବି କର୍ମସନ୍ନ୍ୟାସ ଅପେକ୍ଷା ସାଧନାରେ ସୁଗମ ହୋଇଥିବାରୁ କର୍ମଯୋଗ ଶ୍ରେଷ୍ଠ ଅଟେ ॥ ୨ ॥

**ଜ୍ଞେୟଃ ସ ନିତ୍ୟ-ସଂନ୍ୟାସୀ, ଯୋ ନ ଦ୍ୱେଷ୍ଟି ନ କାଙ୍‌କ୍ଷତି ।**
**ନିର୍ଦ୍ୱନ୍ଦ୍ୱୋ ହି ମହାବାହୋ, ସୁଖଂ ବନ୍ଧାତ୍ ପ୍ରମୁଚ୍ୟତେ ॥**

ହେ ଅର୍ଜୁନ ! ଯେଉଁ ପୁରୁଷ କାହା ସହିତ ଦ୍ୱେଷ କରନ୍ତି ନାହିଁ କି, କିଛି ଆକାଂକ୍ଷା କରନ୍ତି ନାହିଁ, ସେହି କର୍ମଯୋଗୀ ସଦା ସନ୍ନ୍ୟାସୀ ବୋଲାଯିବାର ଯୋଗ୍ୟ ଅଟନ୍ତି; କାରଣ ରାଗ-ଦ୍ୱେଷାଦି ଦ୍ୱନ୍ଦ୍ୱରୁ ରହିତ ପୁରୁଷ ସୁଖପୂର୍ବକ ସଂସାରବନ୍ଧନରୁ ମୁକ୍ତ ହୋଇଯାଆନ୍ତି ॥ ୩ ॥

**ସାଂଖ୍ୟ-ଯୋଗୌ ପୃଥଗ୍-ବାଲାଃ, ପ୍ରବଦନ୍ତି ନ ପଣ୍ଡିତାଃ ।**
**ଏକ-ମପ୍ୟା-ସ୍ଥିତଃ ସମ୍ୟ,-ଗୁଭୟୋର୍-ବିନ୍ଦତେ ଫଲମ୍ ॥**

ଉପରୋକ୍ତ ସନ୍ନ୍ୟାସ ଓ କର୍ମଯୋଗକୁ ମୂର୍ଖଲୋକେ ପୃଥକ୍ ପୃଥକ୍ ଫଳଦାତା ବୋଲି କହନ୍ତି, କିନ୍ତୁ ପଣ୍ଡିତମାନେ ତାହା କହନ୍ତି ନାହିଁ; କାରଣ ସେହି ଦୁଇଟି ମଧ୍ୟରୁ କୌଣସି ଗୋଟିକରେ ବି ସମ୍ୟକ୍‌ଭାବରେ ସ୍ଥିତ ହୋଇଥିବା ପୁରୁଷ ଉଭୟର ଫଳରୂପକ ପରମାତ୍ମାଙ୍କୁ ପାଇଯାଆନ୍ତି ॥ ୪ ॥

**ଯତ୍-ସାଂଖ୍ୟୈଃ ପ୍ରାପ୍ୟତେ ସ୍ଥାନଂ, ତଦ୍‌ଯୋଗୈ-ରପି ଗମ୍ୟତେ ।**
**ଏକଂ ସାଂଖ୍ୟଂ ଚ ଯୋଗଂ ଚ, ଯଃ ପଶ୍ୟତି ସ ପଶ୍ୟତି ॥**

ଜ୍ଞାନଯୋଗୀମାନଙ୍କ ଦ୍ୱାରା ଯେଉଁ ପରମଧାମ ପ୍ରାପ୍ତ କରାଯାଏ, କର୍ମଯୋଗୀମାନଙ୍କ ଦ୍ୱାରା ମଧ୍ୟ ସେହି ପରମଧାମ ପ୍ରାପ୍ତ କରାଯାଏ ।

ତେଣୁ ଯେଉଁ ପୁରୁଷ ଜ୍ଞାନଯୋଗ ଓ କର୍ମଯୋଗକୁ ଫଳରୂପରେ ଏକ ବୋଲି ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି ॥ ୫ ॥

**ସଂନ୍ୟାସସ୍ତୁ ମହାବାହୋ, ଦୁଃଖ-ମାପ୍ତୁ-ମଯୋ଼ଗତଃ ।**
**ଯୋ଼ଗ-ଯୁକ୍ତୋ ମୁନିର୍-ବ୍ରହ୍ମ, ନଚିରେଣାଧି-ଗଚ୍ଛତି ॥**

କିନ୍ତୁ ହେ ଅର୍ଜୁନ ! କର୍ମଯୋଗ ବିନା ସନ୍ନ୍ୟାସ ଅର୍ଥାତ୍ ମନ, ଇନ୍ଦ୍ରିୟ ଓ ଶରୀରଦ୍ୱାରା ହେଉଥିବା ସକଳ କର୍ମରେ କର୍ତ୍ତାପଣ ତ୍ୟାଗ କରିପାରିବା କଠିନ ଏବଂ ଭଗବତ୍‌ସ୍ୱରୂପକୁ ମନନ କରୁଥିବା କର୍ମଯୋଗୀ ପରବ୍ରହ୍ମ ପରମାତ୍ମାଙ୍କୁ ଶୀଘ୍ର ହିଁ ପାଇଯାଆନ୍ତି ॥ ୬ ॥

**ଯୋ଼ଗ-ଯୁକ୍ତୋ ବିଶୁଦ୍ଧାତ୍ମା, ବିଜିତାତ୍ମା ଜିତେନ୍ଦ୍ରିୟଃ ।**
**ସର୍ବ-ଭୂତାତ୍ମ-ଭୂତାତ୍ମା, କୁର୍ବନ୍-ନପି ନ ଲିପ୍ୟତେ ॥**

ଯାହାଙ୍କର ମନ ନିଜ ବଶରେ ଥାଏ, ଯେ ଜିତେନ୍ଦ୍ରିୟ ଓ ଯାହାଙ୍କର ଅନ୍ତଃକରଣ ବିଶୁଦ୍ଧ ଏବଂ ସକଳ ପ୍ରାଣୀଙ୍କର ଆତ୍ମରୂପ ପରମାତ୍ମା ହିଁ ଯାହାଙ୍କର ଆତ୍ମା, ସେହି କର୍ମଯୋଗୀ କର୍ମ କରୁଥିଲେ ମଧ୍ୟ କର୍ମରେ ଲିପ୍ତ ହୁଅନ୍ତି ନାହିଁ ॥ ୭ ॥

**ନୈବ କିଞ୍ଚିତ୍ କରୋମୀତି, ଯୁକ୍ତୋ ମନ୍ୟେତ ତତ୍ତ୍ୱ-ବିତ୍ ।**
**ପଶ୍ୟଞ୍-ଶୃଣ୍ୱନ୍-ସ୍ପୃଶଞ୍-ଜିଘ୍ରନ୍,-ନଶ୍ନନ୍-ଗଚ୍ଛନ୍-ସ୍ୱପଞ୍-ଶ୍ୱସନ୍ ॥**
**ପ୍ରଲପନ୍-ବିସୃଜନ୍-ଗୃହ୍ଣନ୍,-ନୁନ୍ମିଷନ୍-ନିମିଷନ୍-ନପି ।**
**ଇନ୍ଦ୍ରିୟା-ଣୀନ୍ଦ୍ରିୟାର୍ଥେଷୁ, ବର୍ତ୍ତନ୍ତ ଇତି ଧାରୟନ୍ ॥**

ତତ୍ତ୍ୱଜ୍ଞ ସାଙ୍ଖ୍ୟଯୋଗୀ ଦେଖୁଥିଲେ, ଶୁଣୁଥିଲେ,

ଛୁଉଁଥିଲେ, ଶୁଙ୍ଘୁଥିଲେ, ଖାଉଥିଲେ, ଯାଉଥିଲେ, ଶୋଉଥିଲେ, ଶ୍ୱାସକ୍ରିୟା କରୁଥିଲେ, କଥା କହୁଥିଲେ, ତ୍ୟାଗ କରୁଥିଲେ, ଗ୍ରହଣ କରୁଥିଲେ ତଥା ଆଖି ଖୋଲୁଥିଲେ, ବୁଜୁଥିଲେ ଇତ୍ୟାଦି ସବୁ କରୁଥିଲେ ବି ଇନ୍ଦ୍ରିୟମାନେ ହିଁ ନିଜ ନିଜ ଅର୍ଥରେ ପ୍ରବୃତ୍ତ ହେଉଛନ୍ତି ବୋଲି ଜାଣି 'ମୁଁ କିଛି ବି କରୁ ନାହିଁ' ବୋଲି ଭାବିବା ଉଚିତ ॥ ୮, ୯ ॥

**ବ୍ରହ୍ମଣ୍ୟାଧାୟ କର୍ମାଣି, ସଙ୍ଗଂ ତ୍ୟକ୍ତ୍ୱା କରୋତି ଯଃ ।**
**ଲିପ୍ୟତେ ନ ସ ପାପେନ, ପଦ୍ମ-ପତ୍ର-ମିବାମ୍ଭସା ॥**

ଯେଉଁ ପୁରୁଷ ସକଳ କର୍ମ ପରମାତ୍ମାଙ୍କ ଠାରେ ଅର୍ପଣ କରି ଓ ଆସକ୍ତି ତ୍ୟାଗ କରି କର୍ମ କରନ୍ତି, ପଦ୍ମପତ୍ର ଯେପରି ଜଳଦ୍ୱାରା ଲିପ୍ତ ହୁଏ ନାହିଁ, ସେହି ପୁରୁଷ ସେପରି ପାପଦ୍ୱାରା ଲିପ୍ତ ହୁଅନ୍ତି ନାହିଁ ॥ ୧୦ ॥

**କାୟେନ ମନସା ବୁଦ୍ଧ୍ୟା, କେବଲୈ-ରିନ୍ଦ୍ରିୟୈ-ରପି ।**
**ଯୋଗିନଃ କର୍ମ କୁର୍ବନ୍ତି, ସଙ୍ଗଂ ତ୍ୟକ୍ତ୍ୱାତ୍ମ-ଶୁଦ୍ଧୟେ ॥**

କର୍ମଯୋଗୀମାନେ ମମତ୍ୱବୁଦ୍ଧିରହିତ ହୋଇ କେବଳ ଇନ୍ଦ୍ରିୟ, ମନ, ବୁଦ୍ଧି ଓ ଶରୀରଦ୍ୱାରା ମଧ୍ୟ ସକଳ ଆସକ୍ତି ତ୍ୟାଗ କରି ଅନ୍ତଃକରଣର ଶୁଦ୍ଧିନିମନ୍ତେ କର୍ମ କରନ୍ତି ॥ ୧୧ ॥

**ଯୁକ୍ତଃ କର୍ମ-ଫଳଂ ତ୍ୟକ୍ତ୍ୱା, ଶାନ୍ତି-ମାପ୍ନୋତି ନୈଷ୍ଠିକୀମ୍ ।**
**ଅଯୁକ୍ତଃ କାମ-କାରେଣ, ଫଲେ ସକ୍ତୋ ନିବଧ୍ୟତେ ॥**

କର୍ମଯୋଗୀ କର୍ମଫଳ ତ୍ୟାଗ କରି ଭଗବତ୍‌ପ୍ରାପ୍ତିରୂପକ

ଶାନ୍ତି ଲାଭ କରନ୍ତି ଏବଂ ସକାମପୁରୁଷ କାମନାର ପ୍ରେରଣାଦ୍ୱାରା ଫଳାସକ୍ତ ହୋଇ ବନ୍ଧନରେ ପଡ଼େ ॥ ୧୨ ॥

**ସର୍ବ-କର୍ମାଣି ମନସା, ସଂନ୍ୟସ୍ୟାସ୍ତେ ସୁଖଂ ବଶୀ ।**
**ନବ-ଦ୍ୱାରେ ପୁରେ ଦେହୀ, ନୈବ କୁର୍ବନ୍ ନ କାରୟନ୍ ॥**

ଅନ୍ତଃକରଣକୁ ବଶୀଭୂତ କରି ସାଂଖ୍ୟଯୋଗ ଆଚରଣ କରୁଥିବା ପୁରୁଷ କିଛି ନ କରି ଓ ନ କରାଇ ହିଁ ନବଦ୍ୱାରବିଶିଷ୍ଟ ଶରୀରରୂପକ ପୁରରେ ମନଦ୍ୱାରା ସକଳ କର୍ମ ତ୍ୟାଗ କରିଦେଇ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଆନନ୍ଦପୂର୍ବକ ଅବସ୍ଥାନ କରନ୍ତି ॥ ୧୩ ॥

**ନ କର୍ତ୍ତୃତ୍ୱଂ ନ କର୍ମାଣି, ଲୋକସ୍ୟ ସୃଜତି ପ୍ରଭୁଃ ।**
**ନ କର୍ମ-ଫଲ-ସଂଯୋଗଂ, ସ୍ୱଭାବସ୍ତୁ ପ୍ରବର୍ତ୍ତତେ ॥**

ପରମେଶ୍ୱର ମନୁଷ୍ୟମାନଙ୍କର କର୍ତ୍ତାପଣକୁ, କର୍ମମାନଙ୍କୁ କିମ୍ବା କର୍ମଫଳର ସଂଯୋଗକୁ ରଚନା କରନ୍ତି ନାହିଁ; କିନ୍ତୁ ସ୍ୱଭାବ ଅର୍ଥାତ୍ ପ୍ରକୃତି ହିଁ ପ୍ରବୃତ୍ତ ହୁଏ ॥ ୧୪ ॥

**ନାଦତ୍ତେ କସ୍ୟଚିତ୍-ପାପଂ, ନ ଚୈବ ସୁକୃତଂ ବିଭୁଃ ।**
**ଅଜ୍ଞାନେ-ନାବୃତଂ ଜ୍ଞାନଂ, ତେନ ମୁହ୍ୟନ୍ତି ଜନ୍ତବଃ ॥**

ସର୍ବବ୍ୟାପୀ ପରମେଶ୍ୱର କାହାରି ପାପକର୍ମ, କି କାହାରି ଶୁଭକର୍ମକୁ ଗ୍ରହଣ କରନ୍ତି ନାହିଁ; କିନ୍ତୁ ଅଜ୍ଞାନଦ୍ୱାରା ଜ୍ଞାନ ଢାଙ୍କି ହୋଇ ରହିଛି; ତେଣୁ ଅଜ୍ଞାନୀ ମନୁଷ୍ୟମାନେ ମୋହିତ ହେଉଛନ୍ତି ॥ ୧୫ ॥

**ଜ୍ଞାନେନ ତୁ ତଦଜ୍ଞାନଂ, ଯେଷାଂ ନାଶିତ-ମାତ୍ମନଃ ।**
**ତେଷା-ମାଦିତ୍ୟବଜ୍-ଜ୍ଞାନଂ, ପ୍ରକାଶୟତି ତତ୍-ପରମ୍ ॥**

କିନ୍ତୁ ଯେଉଁମାନଙ୍କର ସେହି ଅଜ୍ଞାନ ପରମାତ୍ମାଙ୍କର ତତ୍ତ୍ୱଜ୍ଞାନଦ୍ୱାରା ନଷ୍ଟ କରାଯାଇଛି, ସେମାନଙ୍କର ଜ୍ଞାନ ସୂର୍ଯ୍ୟସଦୃଶ ସେହି ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ପ୍ରକାଶିତ କରିଦିଏ ॥ ୧୬ ॥

**ତଦ୍-ବୁଦ୍ଧୟସ୍-ତଦାତ୍ମାନସ୍,-ତନ୍-ନିଷ୍ଠାସ୍-ତତ୍-ପରାୟଣାଃ ।**
**ଗଚ୍ଛନ୍ତ୍ୟ-ପୁନରାବୃତ୍ତିଂ, ଜ୍ଞାନ-ନିର୍ଧୂତ-କଳ୍ମଷାଃ ॥**

ଯେଉଁମାନଙ୍କର ମନ ତଦ୍ରୂପ ହୋଇଯାଇଛି, ଯେଉଁମାନଙ୍କର ବୁଦ୍ଧି ତଦ୍ରୂପ ହୋଇଯାଇଛି ଓ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ହିଁ ଯେଉଁମାନେ ନିରନ୍ତର ଏକୀଭାବରେ ସ୍ଥିତ ଅଟନ୍ତି, ଏତାଦୃଶ ତତ୍‌ପରାୟଣ ପୁରୁଷମାନେ, ଜ୍ଞାନଦ୍ୱାରା ପାପରହିତ ହୋଇ ଅପୁନରାବୃତ୍ତି ଅର୍ଥାତ୍ ପରମଗତି ପ୍ରାପ୍ତ ହୁଅନ୍ତି ॥ ୧୭ ॥

**ବିଦ୍ୟା-ବିନୟ-ସମ୍ପନ୍ନେ, ବ୍ରାହ୍ମଣେ ଗବି ହସ୍ତିନି ।**
**ଶୁନି ଚୈବ ଶ୍ୱପାକେ ଚ, ପଣ୍ଡିତାଃ ସମଦର୍ଶିନଃ ॥**

ସେହି ଜ୍ଞାନୀମାନେ ବିଦ୍ୟା ଓ ବିନୟଯୁକ୍ତ ବ୍ରାହ୍ମଣଙ୍କ ଠାରେ ତଥା ଗୋ, ହସ୍ତୀ, କୁକୁର ଏବଂ ଚ୍ଣ୍ଡାଳଠାରେ ମଧ୍ୟ ସମଦର୍ଶୀ ହୋଇଥାନ୍ତି ॥ ୧୮ ॥

**ଇହୈବ ତୈର୍-ଜିତଃ ସର୍ଗୋ, ଯେଷାଂ ସାମ୍ୟେ ସ୍ଥିତଂ ମନଃ ।**
**ନିର୍ଦ୍ଦୋଷଂ ହି ସମଂ ବ୍ରହ୍ମ, ତସ୍ମାଦ୍-ବ୍ରହ୍ମଣି ତେ ସ୍ଥିତାଃ ॥**

ଯେଉଁମାନଙ୍କ ମନ ସମଭାବରେ ଅବସ୍ଥିତ, ସେମାନଙ୍କ

ଦ୍ୱାରା ଏହି ଜୀବିତ ଅବସ୍ଥାରେ ହିଁ ସମଗ୍ର ସଂସାର ବିଜିତ ହୋଇଥାଏ*; ଯେହେତୁ ସଚ୍ଚିଦାନନ୍ଦଘନ ପରମାତ୍ମା ନିର୍ଦ୍ଦୋଷ ଓ ସମ, ତେଣୁ ସେମାନେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ହିଁ ଅବସ୍ଥାନ କରିଥାନ୍ତି ॥ ୧୯ ॥

**ନ ପ୍ରହୃଷ୍ୟେତ୍-ପ୍ରିୟଂ ପ୍ରାପ୍ୟ, ନୋଦ୍‌ବିଜେତ୍-ପ୍ରାପ୍ୟ ଚାପ୍ରିୟମ୍ ।**
**ସ୍ଥିର-ବୁଦ୍ଧି-ରସମ୍ମୂଢୋ, ବ୍ରହ୍ମ-ବିଦ୍-ବ୍ରହ୍ମଣି ସ୍ଥିତଃ ॥**

ଯେଉଁ ପୁରୁଷ ପ୍ରିୟବସ୍ତୁ ପ୍ରାପ୍ତ ହୋଇ ହର୍ଷିତ ହୁଅନ୍ତି ନାହିଁ, କି ଅପ୍ରିୟ ବସ୍ତୁ ପ୍ରାପ୍ତ ହୋଇ ଉଦ୍‌ବିଗ୍ନ ହୁଅନ୍ତି ନାହିଁ, ସେହି ସ୍ଥିରବୁଦ୍ଧି ସଂଶୟରହିତ ବ୍ରହ୍ମବେତ୍ତା ପୁରୁଷ ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାରେ ଏକୀଭାବରେ ନିତ୍ୟସ୍ଥିତ ଅଟନ୍ତି ॥ ୨୦ ॥

**ବାହ୍ୟ-ସ୍ପର୍ଶେ-ଷ୍ୱସକ୍ତାତ୍ମା, ବିନ୍ଦ-ତ୍ୟାତ୍ମନି ଯତ୍-ସୁଖମ୍ ।**
**ସ ବ୍ରହ୍ମ-ଯୋଗ-ଯୁକ୍ତାତ୍ମା, ସୁଖ-ମକ୍ଷୟ-ମଶ୍ନୁତେ ॥**

ବାହ୍ୟ ବିଷୟରେ ଆସକ୍ତିରହିତ-ଅନ୍ତଃକରଣବିଶିଷ୍ଟ ସାଧକ ଆତ୍ମାରେ ଯେଉଁ ଧ୍ୟାନଜନିତ ସାତ୍ତ୍ୱିକ ଆନନ୍ଦ ରହିଛି, ତାହା ପ୍ରାପ୍ତ ହୁଅନ୍ତି, ତା'ପରେ ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କର ଧ୍ୟାନରୂପକ ଯୋଗରେ ଅଭିନ୍ନଭାବରେ ଅବସ୍ଥିତ ହୋଇଥିବା ସେହି ପୁରୁଷ ଅକ୍ଷୟ ଆନନ୍ଦ ଅନୁଭବ କରନ୍ତି ॥ ୨୧ ॥

**ଯେ ହି ସଂସ୍ପର୍ଶଜା ଭୋଗା, ଦୁଃଖ-ଯୋନୟ ଏବ ତେ ।**
**ଆଦ୍ୟନ୍ତ-ବନ୍ତଃ କୌନ୍ତେୟ, ନ ତେଷୁ ରମତେ ବୁଧଃ ॥**

* ସେମାନେ ଜୀବିତାବସ୍ଥାରେ ହିଁ ସଂସାରରୁ ମୁକ୍ତ ହୋଇଯାନ୍ତି ।

ଇନ୍ଦ୍ରିୟ ତଥା ବିଷୟମାନଙ୍କ ସଂଯୋଗରୁ ଉତ୍ପନ୍ନ ହେଉଥିବା ଯେଉଁ ଭୋଗଗୁଡ଼ିକ ରହିଛି, ସେଗୁଡ଼ିକ ବିଷୟୀ ପୁରୁଷମାନଙ୍କୁ ସୁଖରୂପ ପ୍ରତୀତ ହେଉଥିଲେ ବି, ନିଃସନ୍ଦେହ ଦୁଃଖର ହିଁ କାରଣ ଅଟନ୍ତି ଏବଂ ଆଦି-ଅନ୍ତବିଶିଷ୍ଟ ଅର୍ଥାତ୍ ଅନିତ୍ୟ ଅଟନ୍ତି । ହେ ଅର୍ଜୁନ ! ତେଣୁ ବୁଦ୍ଧିମାନ୍ ବିବେକୀ ପୁରୁଷ ସେଥିରେ ରମଣ କରନ୍ତି ନାହିଁ ॥ ୨୨ ॥

**ଶକ୍ନୋତୀ-ହୈବ ଯଃ ସୋଢୁଂ, ପ୍ରାକ୍-ଶରୀର-ବିମୋକ୍ଷଣାତ୍ ।**
**କାମ-କ୍ରୋଧୋଦ୍-ଭବଂ ବେଗଂ, ସ ଯୁକ୍ତଃ ସ ସୁଖୀ ନରଃ ॥**

ଯେଉଁ ସାଧକ ଶରୀର ନାଶ ହୋଇଯିବା ପୂର୍ବରୁ ହିଁ ଏହି ମନୁଷ୍ୟଶରୀରରେ କାମକ୍ରୋଧରୁ ଉତ୍ପନ୍ନ ହେଉଥିବା ବେଗ ସହିଯିବାକୁ ସମର୍ଥ ହୋଇଯାଆନ୍ତି, ସେହି ପୁରୁଷ ଯୋଗୀ; ସେ ସୁଖୀ ॥ ୨୩ ॥

**ଯୋଽନ୍ତଃ-ସୁଖୋଽନ୍ତରା-ରାମସ୍,-ତଥାନ୍ତର୍-ଜ୍ୟୋତିରେବ ଯଃ ।**
**ସ ଯୋଗୀ ବ୍ରହ୍ମ-ନିର୍ବାଣଂ, ବ୍ରହ୍ମ-ଭୂତୋଽଧି-ଗଚ୍ଛତି ॥**

ଯେଉଁ ପୁରୁଷ ବ୍ରହ୍ମଭିନ୍ନ ଅନ୍ୟ କିଛି ନାହିଁ ବୋଲି ନିଶ୍ଚୟ କରି ସମଷ୍ଟି ଅନ୍ତରାତ୍ମାରେ ହିଁ ସୁଖଯୁକ୍ତ, ଆତ୍ମାରେ ରମଣକାରୀ ତଥା ଆତ୍ମାରେ ହିଁ ଜ୍ଞାନଯୁକ୍ତ ଅଟନ୍ତି, ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କ ସହିତ ଏକୀଭାବପ୍ରାପ୍ତ ସେହି ସାଙ୍ଖ୍ୟଯୋଗୀ ଶାନ୍ତ ବ୍ରହ୍ମଙ୍କୁ ପ୍ରାପ୍ତ ହୋଇଥାନ୍ତି ॥ ୨୪ ॥

**ଲଭନ୍ତେ ବ୍ରହ୍ମ-ନିର୍ବାଣ,-ମୃଷୟଃ କ୍ଷୀଣ-କଳ୍ମଷାଃ ।**
**ଛିନ୍ନ-ଦ୍ୱୈଧା ଯତାତ୍ମାନଃ, ସର୍ବ-ଭୂତ-ହିତେ ରତାଃ ॥**

ଯେଉଁମାନଙ୍କର ସକଳ ପାପ ନଷ୍ଟ ହୋଇଯାଇଛି, ଯେଉଁମାନଙ୍କର ସକଳ ସଂଶୟ ଜ୍ଞାନଦ୍ୱାରା ନିବୃତ୍ତ ହୋଇଯାଇଛି, ଯେଉଁମାନେ ସକଳ ପ୍ରାଣୀଙ୍କ ହିତରେ ରତ ଏବଂ ଯେଉଁମାନଙ୍କର ବିଜିତ ମନ ନିଶ୍ଚଳଭାବରେ ପରମାତ୍ମାଙ୍କ ଠାରେ ସ୍ଥିତ, ସେହି ବ୍ରହ୍ମବେତ୍ତା ପୁରୁଷମାନେ ଶାନ୍ତ ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି ॥ ୨୫ ॥

**କାମ-କ୍ରୋଧ-ବିଯୁକ୍ତାନାଂ, ଯତୀନାଂ ଯତ-ଚେତସାମ୍ ।**
**ଅଭିତୋ ବ୍ରହ୍ମ-ନିର୍ବାଣଂ, ବର୍ତ୍ତତେ ବିଦି-ତାତ୍ମନାମ୍ ॥**

କାମକ୍ରୋଧରହିତ, ବିଜିତଚିତ୍ତ ଏବଂ ପରବ୍ରହ୍ମ ପରମାତ୍ମାଙ୍କର ସାକ୍ଷାତ୍କାର କରିଥିବା ଜ୍ଞାନୀପୁରୁଷମାନଙ୍କ ପାଇଁ ସକଳ ଦିଗରେ ଶାନ୍ତ ପରବ୍ରହ୍ମ ପରମାତ୍ମା ହିଁ ପରିପୂର୍ଣ୍ଣ ହୋଇ ରହିଥାନ୍ତି ॥ ୨୬ ॥

**ସ୍ପର୍ଶାନ୍ କୃତ୍ୱା ବହିର୍-ବାହ୍ୟାଂଶ୍,-ଚକ୍ଷୁଶ୍-ଚୈବାନ୍ତରେ ଭ୍ରୁବୋଃ ।**
**ପ୍ରାଣା-ପାନୌ ସମୌ କୃତ୍ୱା, ନାସା-ଭ୍ୟନ୍ତର-ଚାରିଣୌ ॥**
**ଯତେନ୍ଦ୍ରିୟ-ମନୋ-ବୁଦ୍ଧିର୍,-ମୁନିର୍-ମୋକ୍ଷ-ପରାୟଣଃ ।**
**ବିଗତେଚ୍ଛା-ଭୟ-କ୍ରୋଧୋ, ଯଃ ସଦା ମୁକ୍ତ ଏବ ସଃ ॥**

ବାହ୍ୟ ବିଷୟଭୋଗମାନଙ୍କୁ ଚିନ୍ତନ ନ କରି, ସେସବୁକୁ ବାହାରେ ହିଁ ତ୍ୟାଗ କରିଦେଇ ଏବଂ ନେତ୍ରର ଦୃଷ୍ଟି ଭ୍ରୂଦ୍ୱୟର ମଧ୍ୟବର୍ତ୍ତୀ ସ୍ଥାନରେ ନିବଦ୍ଧ କରି, ନାସିକାଦ୍ୱୟର ଅଭ୍ୟନ୍ତରରେ ବିଚରଣ କରୁଥିବା ପ୍ରାଣ ଓ ଅପାନ ବାୟୁକୁ ସମଗତି କରି, ଯେଉଁ ମୋକ୍ଷପରାୟଣ ମୁନି* ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କୁ

* ନିରନ୍ତର ପରମେଶ୍ୱରଙ୍କ ସ୍ୱରୂପକୁ ମନନ କରୁଥିବା ପୁରୁଷ ।

ସଂଯତ କରିଥାନ୍ତି, ଇଚ୍ଛା, ଭୟ ଓ କ୍ରୋଧରୁ ରହିତ ହୋଇଥିବା ସେହି ମୁନି ସର୍ବଦା ମୁକ୍ତ ହିଁ ଅଟନ୍ତି ॥ ୨୭-୨୮ ॥

**ଭୋକ୍ତାରଂ ଯଜ୍ଞ-ତପସାଂ, ସର୍ବ-ଲୋକ-ମହେଶ୍ୱରମ୍ ।**
**ସୁହୃଦଂ ସର୍ବ-ଭୂତାନାଂ, ଜ୍ଞାତ୍ୱା ମାଂ ଶାନ୍ତି-ମୃଚ୍ଛତି ॥**

ମୋର ଭକ୍ତ ମୋତେ ସକଳ ଯଜ୍ଞର ଓ ତପର ଭୋକ୍ତା, ସମସ୍ତ ଲୋକର ଈଶ୍ୱରମାନଙ୍କର ବି ଈଶ୍ୱର, ତଥା ସକଳ ପ୍ରାଣୀମାନଙ୍କର ସୁହୃଦ୍ ଅର୍ଥାତ୍ ସ୍ୱାର୍ଥରହିତ ଦୟାଳୁ ଓ ପ୍ରେମୀ ବୋଲି ତତ୍ତ୍ୱତଃ ଜାଣିପାରି ଶାନ୍ତି ପ୍ରାପ୍ତ ହୁଅନ୍ତି ॥ ୨୯ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, କର୍ମ-ସଂନ୍ୟାସ-ଯୋଗୋ ନାମ ପଞ୍ଚମୋଽଧ୍ୟାୟଃ ॥ ୫ ॥*



॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ଷଷ୍ଠୋଽଧ୍ୟାୟଃ

*ଶ୍ରୀଭଗବାନୁବାଚ*

**ଅନାଶ୍ରିତଃ କର୍ମଫଳଂ, କାର୍ଯ୍ୟଂ କର୍ମ କରୋତି ଯଃ ।**
**ସ ସଂନ୍ୟାସୀ ଚ ଯୋଗୀ ଚ, ନ ନିରଗ୍ନିର୍-ନ ଚାକ୍ରିୟଃ ॥**

ଶ୍ରୀଭଗବାନ୍ କହିଲେ—ଯେଉଁ ପୁରୁଷ କର୍ମଫଳକୁ ଆଶ୍ରୟ ନ କରି କର୍ତ୍ତବ୍ୟ-କର୍ମ କରନ୍ତି, ସେ ସନ୍ନ୍ୟାସୀ ତଥା ଯୋଗୀ ଅଟନ୍ତି। କେବଳ ଅଗ୍ନି ତ୍ୟାଗ କରିଥିବା ମନୁଷ୍ୟ ସନ୍ନ୍ୟାସୀ ନୁହେଁ, କି କେବଳ କ୍ରିୟା ତ୍ୟାଗ କରିଥିବା ମନୁଷ୍ୟ ଯୋଗୀ ନୁହେଁ॥ ୧ ॥

**ଯଂ ସଂନ୍ୟାସ-ମିତି ପ୍ରାହୁର୍,-ଯୋଗଂ ତଂ ବିଦ୍ଧି ପାଣ୍ଡବ ।**
**ନ ହ୍ୟ-ସଂନ୍ୟସ୍ତ-ସଙ୍କଳ୍ପୋ, ଯୋଗୀ ଭବତି କଶ୍ଚନ ॥**

ହେ ଅର୍ଜୁନ ! ଯାହାକୁ ସନ୍ନ୍ୟାସ ବୋଲି କହନ୍ତି, ତାହାକୁ ହିଁ ତୁମେ ଯୋଗ ବୋଲି ଜାଣ; କାରଣ ସଙ୍କଳ୍ପ ତ୍ୟାଗ କରି ନ ଥିବା କୌଣସି ବି ପୁରୁଷ ଯୋଗୀ ହୁଏ ନାହିଁ॥ ୨ ॥

**ଆରୁରୁକ୍ଷୋର୍-ମୁନେର୍-ଯୋଗଂ, କର୍ମ କାରଣ-ମୁଚ୍ୟତେ ।**
**ଯୋଗାରୂଢସ୍ୟ ତସ୍ୟୈବ, ଶମଃ କାରଣ-ମୁଚ୍ୟତେ ॥**

ଯୋଗାରୂଢ଼ ହେବାକୁ ଇଚ୍ଛୁକ ମନନଶୀଳ ପୁରୁଷଙ୍କ ନିମନ୍ତେ ନିଷ୍କାମଭାବରେ କର୍ମ କରିବା ହିଁ ଯୋଗପ୍ରାପ୍ତିର ହେତୁ ବୋଲି କୁହାଯାଏ ଏବଂ ଯୋଗାରୂଢ଼ ହୋଇଯିବା ପରେ ସେହି ଯୋଗାରୂଢ଼

ପୁରୁଷଙ୍କର ସର୍ବସଙ୍କଳ୍ପଶୂନ୍ୟତା ହିଁ ତାଙ୍କ କଲ୍ୟାଣର କାରଣ ବୋଲି କୁହାଯାଏ ॥ ୩ ॥

**ଯଦା ହି ନେନ୍ଦ୍ରିୟାର୍ଥେଷୁ, ନ କର୍ମସ୍ୱନୁ-ଷଜ୍ଜତେ ।**
**ସର୍ବ-ସଙ୍କଳ୍ପ-ସନ୍ନ୍ୟାସୀ, ଯୋଗାରୂଢସ୍-ତଦୋଚ୍ୟତେ ॥**

ପୁରୁଷ ଯେତେବେଳେ ଇନ୍ଦ୍ରିୟମାନଙ୍କର ଭୋଗରେ ଓ କର୍ମମାନଙ୍କରେ ମଧ୍ୟ ଆସକ୍ତ ହୁଅନ୍ତି ନାହିଁ, ସେତେବେଳେ ସେହି ସର୍ବସଂକଳ୍ପତ୍ୟାଗୀ ଯୋଗାରୂଢ଼ ବୋଲି କଥିତ ହୁଅନ୍ତି ॥ ୪ ॥

**ଉଦ୍ଧରେ-ଦାତ୍ମ-ନାତ୍ମାନଂ, ନାତ୍ମାନ-ମବସାଦୟେତ୍ ।**
**ଆତ୍ମୈବ ହ୍ୟାତ୍ମନୋ ବନ୍ଧୁ-ରାତ୍ମୈବ ରିପୁ-ରାତ୍ମନଃ ॥**

ନିଜଦ୍ୱାରା ନିଜକୁ ସଂସାରସାଗରରୁ ଉଦ୍ଧାର କରିବା ଉଚିତ; ନିଜକୁ ଅଧୋଗତିରେ ପକାଇବା ଉଚିତ ନୁହେଁ; କାରଣ ମନୁଷ୍ୟ ନିଜେ ହିଁ ନିଜର ମିତ୍ର ଏବଂ ନିଜେ ହିଁ ନିଜର ଶତ୍ରୁ ॥ ୫ ॥

**ବନ୍ଧୁ-ରାତ୍ମାତ୍ମନସ୍-ତସ୍ୟ, ଯେନାତ୍ମୈ-ବାତ୍ମନା ଜିତଃ ।**
**ଅନାତ୍ମନସ୍-ତୁ ଶତ୍ରୁତ୍ୱେ, ବର୍ତ୍ତେ-ତାତ୍ମୈବ ଶତ୍ରୁବତ୍ ॥**

ଯେଉଁ ଜୀବାତ୍ମାଦ୍ୱାରା ମନ ଓ ଇନ୍ଦ୍ରିୟସହିତ ଶରୀରକୁ ଜୟ କରାଯାଇଛି, ସେହି ଜୀବାତ୍ମା ନିଜେ ହିଁ ନିଜର ମିତ୍ର ଏବଂ ଯାହାଦ୍ୱାରା ମନ, ଇନ୍ଦ୍ରିୟ ଓ ଶରୀରକୁ ଜୟ କରାଯାଇ ନାହିଁ, ସେ ନିଜେ ହିଁ ନିଜର ଶତ୍ରୁପରି ଆଚରଣ କରେ ॥ ୬ ॥

**ଜିତାତ୍ମନଃ ପ୍ରଶାନ୍ତସ୍ୟ, ପରମାତ୍ମା ସମାହିତଃ ।**
**ଶୀତୋଷ୍ଣ-ସୁଖ-ଦୁଃଖେଷୁ, ତଥା ମାନାପ-ମାନୟୋଃ ॥**

ଶୀତ-ଉଷ୍ଣ ଓ ସୁଖ-ଦୁଃଖରେ ତଥା ମାନ-ଅପମାନରେ ଯାହାଙ୍କ ଅନ୍ତଃକରଣର ବୃତ୍ତିଗୁଡ଼ିକ ଭଲରୂପେ ଶାନ୍ତ ରହନ୍ତି, ସେପରି ସ୍ୱାଧୀନ-ଆତ୍ମାବିଶିଷ୍ଟ ପୁରୁଷଙ୍କ ଜ୍ଞାନରେ ସଚ୍ଚିଦାନନ୍ଦଘନ ପରମାତ୍ମା ସମ୍ୟକ୍‌ପ୍ରକାରେ ସ୍ଥିତ ଅଟନ୍ତି ଅର୍ଥାତ୍ ତାଙ୍କ ଜ୍ଞାନରେ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ହିଁ ନାହିଁ ॥ ୭ ॥

**ଜ୍ଞାନ-ବିଜ୍ଞାନ-ତୃପ୍ତାତ୍ମା, କୂଟସ୍ଥୋ ବିଜିତେନ୍ଦ୍ରିୟଃ ।**
**ଯୁକ୍ତ ଇତ୍ୟୁଚ୍ୟତେ ଯୋଗୀ, ସମ-ଲୋଷ୍ଟାଶ୍ମ-କାଞ୍ଚନଃ ॥**

ଯାହାଙ୍କର ଅନ୍ତଃକରଣ ଜ୍ଞାନବିଜ୍ଞାନରେ ତୃପ୍ତ, ଯାହାଙ୍କର ସ୍ଥିତି ବିକାରଶୂନ୍ୟ, ଯାହାଙ୍କର ଇନ୍ଦ୍ରିୟମାନେ ଭଲଭାବରେ ବଶୀଭୂତ ହୋଇଛନ୍ତି ଏବଂ ଯାହାଙ୍କ ପାଇଁ ମାଟି, ପଥର ଓ ସୁନା ସମାନ, ସେହି ଯୋଗୀ ଯୁକ୍ତ ଅର୍ଥାତ୍ ଭଗବତ୍‌ପ୍ରାପ୍ତ ବୋଲି କୁହାଯାନ୍ତି ॥ ୮ ॥

**ସୁହୃନ୍-ମିତ୍ରାର୍-ୟୁଦାସୀନ,-ମଧ୍ୟସ୍ଥ-ଦ୍ୱେଷ୍ୟ-ବନ୍ଧୁଷୁ ।**
**ସାଧୁଷ୍ୱପି ଚ ପାପେଷୁ, ସମ-ବୁଦ୍ଧିର୍-ବିଶିଷ୍ୟତେ ॥**

ସୁହୃଦ୍*, ମିତ୍ର, ବୈରୀ, ଉଦାସୀନ☫, ମଧ୍ୟସ୍ଥ✦, ଦ୍ୱେଷ୍ୟ ଓ ବନ୍ଧୁଗଣଙ୍କ ଠାରେ, ଧର୍ମାତ୍ମାମାନଙ୍କ ଠାରେ ଓ ପାପୀମାନଙ୍କ ଠାରେ ମଧ୍ୟ ସମାନ ଭାବ ରଖୁଥିବା ପୁରୁଷ ଅତ୍ୟନ୍ତ ଶ୍ରେଷ୍ଠ ଅଟନ୍ତି ॥ ୯ ॥

---

* ସ୍ୱାର୍ଥରହିତ ହୋଇ ସମସ୍ତଙ୍କ ହିତ କରୁଥିବା ଲୋକ ।

☫ ପକ୍ଷପାତରହିତ ।

✦ ଉଭୟ ପକ୍ଷର ମଙ୍ଗଳକାମୀ ।

**ଯୋଗୀ ଯୁଞ୍ଜୀତ ସତତ,-ମାତ୍ମାନଂ ରହସି ସ୍ଥିତଃ ।**
**ଏକାକୀ ଯତ-ଚିତ୍ତାତ୍ମା, ନିରାଶୀ-ରପରିଗ୍ରହଃ ॥**

ମନ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ବଶ କରି ରଖୁଥିବା, ଆଶାରହିତ ଓ ସଂଗ୍ରହରହିତ ଯୋଗୀ ଏକାକୀ ହିଁ ଏକାନ୍ତ ସ୍ଥାନରେ ଅବସ୍ଥିତ ହୋଇ ଆତ୍ମାକୁ ନିରନ୍ତର ପରମାତ୍ମାରେ ଲଗାଇବା ଉଚିତ ॥ ୧୦ ॥

**ଶୁଚୌ ଦେଶେ ପ୍ରତିଷ୍ଠାପ୍ୟ, ସ୍ଥିର-ମାସନ-ମାତ୍ମନଃ ।**
**ନାତ୍ୟୁଚ୍ଛ୍ରିତଂ ନାତିନୀଚଂ, ଚୈଲାଜିନ-କୁଶୋତ୍ତରମ୍ ॥**

ଶୁଦ୍ଧଭୂମି ଉପରେ କ୍ରମଶଃ କୁଶ, ତା'ଉପରେ ମୃଗଚର୍ମ ଓ ତା'ଉପରେ ବସ୍ତ୍ର ବିଛାଇ, ଅତି ଉଚ୍ଚା କିମ୍ୱା ଅତି ନୀଚ୍ଚ ନ କରି, ନିଜର ଆସନ ସ୍ଥିର କରି ପକାଇ,—॥ ୧୧ ॥

**ତତ୍ରୈକାଗ୍ରଂ ମନଃ କୃତ୍ୱା, ଯତ-ଚିତ୍ତେନ୍ଦ୍ରିୟ-କ୍ରିୟଃ ।**
**ଉପବିଶ୍ୟାସନେ ଯୁଞ୍ଜ୍ୟାଦ୍,-ଯୋଗ-ମାତ୍ମ-ବିଶୁଦ୍ଧୟେ ॥**

ସେହି ଆସନରେ ବସି, ଚିତ୍ତ ଓ ଇନ୍ଦ୍ରିୟମାନଙ୍କର କ୍ରିୟାମାନଙ୍କୁ ବଶରେ ରଖି, ମନ ଏକାଗ୍ର କରି ଅନ୍ତଃକରଣଶୁଦ୍ଧିପାଇଁ ଯୋଗ ଅଭ୍ୟାସ କରିବା ଉଚିତ ॥ ୧୨ ॥

**ସମଂ କାୟ-ଶିରୋ-ଗ୍ରୀବଂ, ଧାରୟନ୍-ନଚଲଂ ସ୍ଥିରଃ ।**
**ସଂପ୍ରେକ୍ଷ୍ୟ ନାସିକାଗ୍ରଂ ସ୍ୱଂ, ଦିଶଶ୍-ଚା-ନବଲୋକୟନ୍ ॥**

ଶରୀର, ଶିର ଏବଂ ଗ୍ରୀବା (ବେକ) ସଳଖ ଓ ଅଚଳ

ରଖି, ଏବଂ ସ୍ଥିର ହୋଇ, ନିଜ ନାସିକାର ଅଗ୍ରଭାଗରେ ଦୃଷ୍ଟି ନିବଦ୍ଧ କରି, ଅନ୍ୟ ଆଡ଼େ ନ ଚାହିଁ,........॥ ୧୩ ॥*

**ପ୍ରଶାନ୍ତାତ୍ମା ବିଗତ-ଭୀର୍,-ବ୍ରହ୍ମଚାରି-ବ୍ରତେ ସ୍ଥିତଃ ।**
**ମନଃ ସଂଯମ୍ୟ ମଚ୍ଚିତ୍ତୋ, ଯୁକ୍ତ ଆସୀତ ମତ୍ପରଃ ॥**

ବ୍ରହ୍ମଚର୍ଯ୍ୟବ୍ରତରେ ସ୍ଥିତ, ଭୟଶୂନ୍ୟ, ପ୍ରଶାନ୍ତ ଅନ୍ତଃକରଣ-ବିଶିଷ୍ଟ ତଥା ସାବଧାନ ଯୋଗୀ ମନକୁ ସଂଯତ କରି, ମୋ'ଠାରେ ଯୁକ୍ତଚିତ୍ତ ହୋଇ ଏବଂ ମୋର ପରାୟଣ ହୋଇ ବସିବା ଉଚିତ ॥ ୧୪ ॥

**ଯୁଞ୍ଜନ୍-ନେବଂ ସଦାତ୍ମାନଂ, ଯୋଗୀ ନିୟତ-ମାନସଃ ।**
**ଶାନ୍ତିଂ ନିର୍ବାଣ-ପରମାଂ, ମତ୍-ସଂସ୍ଥା-ମଧିଗଚ୍ଛତି ॥**

ମନକୁ ବଶ କରିଥିବା ଯୋଗୀ ଏପରିଭାବରେ ଆତ୍ମାକୁ ନିରନ୍ତର ମୋର ଅର୍ଥାତ୍ ପରମେଶ୍ୱରଙ୍କ ସ୍ୱରୂପରେ ଲଗାଇ ମୋ'ଠାରେ ଥିବା ପରମାନନ୍ଦର ପରାକାଷ୍ଠାରୂପକ ଶାନ୍ତି ପ୍ରାପ୍ତ ହୁଅନ୍ତି ॥ ୧୫ ॥

**ନାତ୍ୟଶ୍ନତସ୍-ତୁ ଯୋଗୋଽସ୍ତି, ନ ଚୈକାନ୍ତ-ମନଶ୍ନତଃ ।**
**ନ ଚାତି ସ୍ୱପ୍ନ-ଶୀଲସ୍ୟ, ଜାଗ୍ରତୋ ନୈବ ଚାର୍ଜୁନ ॥**

ହେ ଅର୍ଜୁନ ! ଯେ ବହୁତ ଭୋଜନ କରେ କିମ୍ବା ଯେ ଆଦୌ ଭୋଜନ କରେ ନାହିଁ, ଯେ ବହୁତ ଶୁଏ କିମ୍ବା ଯେ ଆଦୌ ଶୁଏ ନାହିଁ, ତା'ଦ୍ୱାରା ଏହି ଯୋଗ ସିଦ୍ଧ ହୁଏ ନାହିଁ ॥ ୧୬ ॥

* 'ସ୍ଥିରସୁଖମାସନମ୍'—ଅଧିକ ସମୟପର୍ଯ୍ୟନ୍ତ ସୁଖପୂର୍ବକ ସ୍ଥିର ହୋଇ ବସିବାର ନାମ ଆସନ ।

**ଯୁକ୍ତାହାର-ବିହାରସ୍ୟ, ଯୁକ୍ତ-ଚେଷ୍ଟସ୍ୟ କର୍ମସୁ ।**
**ଯୁକ୍ତ-ସ୍ୱପ୍ନାବ-ବୋଧସ୍ୟ, ଯୋଗୋ ଭବତି ଦୁଃଖହା ॥**

ଏହି ଦୁଃଖନାଶକାରୀ ଯୋଗ ତ ଯଥାଯୋଗ୍ୟ ଆହାର-ବିହାର କରୁଥିବା ଲୋକର, କର୍ମ କରିବାକୁ ଯଥାଯୋଗ୍ୟ ଚେଷ୍ଟା କରୁଥିବା ଲୋକର ତଥା ଯଥାଯୋଗ୍ୟ ଶୋଉଥିବା ଓ ଚେଉଁଥିବା ଲୋକର ହିଁ ସିଦ୍ଧ ହୁଏ ॥ ୧୭ ॥

**ଯଦା ବିନିୟତଂ ଚିତ୍ତ,-ମାତ୍ମନ୍ୟେବା-ବତିଷ୍ଠତେ ।**
**ନିଃସ୍ପୃହଃ ସର୍ବ-କାମେଭ୍ୟୋ, ଯୁକ୍ତ ଇତ୍ୟୁଚ୍ୟତେ ତଦା ॥**

ଅତ୍ୟନ୍ତ ବଶୀଭୂତ ହୋଇଥିବା ଚିତ୍ତ ଯେତେବେଳେ ପରମାତ୍ମାଙ୍କ ଠାରେ ହିଁ ଭଲଭାବରେ ଅବସ୍ଥାନ କରେ, ସେତେବେଳେ ସକଳ ଭୋଗରୁ ନିଃସ୍ପୃହ ପୁରୁଷ ଯୋଗଯୁକ୍ତ ହୁଅନ୍ତି ବୋଲି କୁହାଯାଏ ॥ ୧୮ ॥

**ଯଥା ଦୀପୋ ନିବାତସ୍ଥୋ, ନେଙ୍ଗତେ ସୋପମା ସ୍ମୃତା ।**
**ଯୋଗିନୋ ଯତ-ଚିତ୍ତସ୍ୟ, ଯୁଞ୍ଜତୋ ଯୋଗ-ମାତ୍ମନଃ ॥**

ପବନ ନ ଥିବା ସ୍ଥାନରେ ରହିଥିବା ଦୀପର ଶିଖା ଯେପରି ଚଞ୍ଚଳ ହୁଏ ନାହିଁ, ପରମାତ୍ମାଙ୍କ ଧ୍ୟାନରେ ଲାଗିରହିଥିବା, ଯୋଗୀଙ୍କର ବଶୀଭୂତ ଚିତ୍ତ ସେହିପରି ସ୍ଥିର ରହେ ବୋଲି କୁହାଯାଏ ॥ ୧୯ ॥

**ଯତ୍ରୋପ-ରମତେ ଚିତ୍ତଂ, ନିରୁଦ୍ଧଂ ଯୋଗ-ସେବୟା ।**
**ଯତ୍ର ଚୈବାତ୍ମ-ନାତ୍ମାନଂ, ପଶ୍ୟନ୍-ନାତ୍ମନି ତୁଷ୍ୟତି ॥**

ଯୋଗାଭ୍ୟାସଦ୍ୱାରା ନିରୁଦ୍ଧ ହୋଇଥିବା ଚିତ୍ତ ଯେଉଁ ଅବସ୍ଥାରେ ଉପରତି ପ୍ରାପ୍ତ ହୋଇଯାଏ ଓ ଯେଉଁ ଅବସ୍ଥାରେ ପରମାତ୍ମାଙ୍କ ଧ୍ୟାନରେ ଶୁଦ୍ଧ ହୋଇଥିବା ସୂକ୍ଷ୍ମବୁଦ୍ଧିଦ୍ୱାରା ପରମାତ୍ମାଙ୍କୁ ସାକ୍ଷାତ କରି ସଚ୍ଚିଦାନନ୍ଦଘନ ପରମାତ୍ମାରେ ହିଁ ସନ୍ତୁଷ୍ଟ ହୋଇ ରହେ,....।। ୨୦ ।।

**ସୁଖ-ମାତ୍ୟନ୍ତିକଂ ଯତ୍ତଦ୍,-ବୁଦ୍ଧି-ଗ୍ରାହ୍ୟ-ମତୀନ୍ଦ୍ରିୟମ୍ ।**
**ବେତ୍ତି ଯତ୍ର ନ ଚୈବାୟଂ, ସ୍ଥିତଶ୍-ଚଲତି ତତ୍ତ୍ୱତଃ ।।**

କେବଳ ବିଶୁଦ୍ଧ ଓ ସୂକ୍ଷ୍ମ ବୁଦ୍ଧିଦ୍ୱାରା ଗ୍ରହଣଯୋଗ୍ୟ ଯେଉଁ ଇନ୍ଦ୍ରିୟାତୀତ ଅନନ୍ତ ଆନନ୍ଦ ରହିଛି, ଯୋଗୀ ତାହାକୁ ଯେଉଁ ଅବସ୍ଥାରେ ଅନୁଭବ କରନ୍ତି ଓ ଯେଉଁ ଅବସ୍ଥାରେ ସ୍ଥିତ ହେଲେ ଏହି ଯୋଗୀ ପରମାତ୍ମାଙ୍କ ସ୍ୱରୂପରୁ କଦାପି ବିଚଳିତ ହୁଅନ୍ତି ନାହିଁ,.....।। ୨୧ ।।

**ଯଂ ଲବ୍ଧ୍ୱା ଚାପରଂ ଲାଭଂ, ମନ୍ୟତେ ନାଧିକଂ ତତଃ ।**
**ଯସ୍ମିନ୍-ସ୍ଥିତୋ ନ ଦୁଃଖେନ, ଗୁରୁଣାପି ବିଚାଲ୍ୟତେ ।।**

ପରମାତ୍ମପ୍ରାପ୍ତିରୂପକ ଯେଉଁ ଲାଭ ପ୍ରାପ୍ତ ହେଲେ, ତା'ଠାରୁ ଅଧିକ ଅନ୍ୟ କୌଣସି ଲାଭ ଅଛି ବୋଲି ଯୋଗୀ ମାନନ୍ତି ନାହିଁ ଓ ପରମାତ୍ମପ୍ରାପ୍ତିରୂପକ ଯେଉଁ ଅବସ୍ଥାରେ ସ୍ଥିତ ହେଲେ ଯୋଗୀ ଅତିଶୟ ଦୁଃଖରେ ମଧ୍ୟ ବିଚଳିତ ହୁଅନ୍ତି ନାହିଁ,—।। ୨୨ ।।

**ତଂ ବିଦ୍ୟାଦ୍-ଦୁଃଖ-ସଂଯୋଗ,-ବିୟୋଗଂ ଯୋଗ-ସଂଜ୍ଞିତମ୍ ।**
**ସ ନିଶ୍ଚୟେନ ଯୋକ୍ତବ୍ୟୋ, ଯୋଗୋଽନିର୍ବିଣ୍ଣ-ଚେତସା ।।**

ଯାହା ଦୁଃଖରୂପକ ସଂସାରର ସଂଯୋଗରୁ ରହିତ ତଥା ଯାହାର ନାମ ଯୋଗ, ତାହା ଜାଣିବା ଆବଶ୍ୟକ । କ୍ଷୁଣ୍ଣ ନ ହୋଇ ଅର୍ଥାତ୍ ଧୈର୍ଯ୍ୟ ଓ ଉତ୍ସାହଯୁକ୍ତ ଚିତ୍ତରେ ନିଶ୍ଚୟପୂର୍ବକ ସେହି ଯୋଗସାଧନା କରିବା କର୍ତ୍ତବ୍ୟ ॥ ୨୩ ॥

**ସଙ୍କଳ୍ପ-ପ୍ରଭବାନ୍-କାମାଂସ୍,-ତ୍ୟକ୍ତ୍ୱା ସର୍ବା-ନଶେଷତଃ ।**
**ମନସୈ-ବେନ୍ଦ୍ରିୟ-ଗ୍ରାମଂ, ବିନିୟମ୍ୟ ସମନ୍ତତଃ ॥**

ସଙ୍କଳ୍ପରୁ ଉତ୍ପନ୍ନ ହେଉଥିବା ସକଳ କାମନା ନିଃଶେଷ-ରୂପେ ତ୍ୟାଗ କରି, ସମସ୍ତ ଇନ୍ଦ୍ରିୟଙ୍କୁ ସବୁ ଦିଗରୁ ଭଲଭାବେ ମନଦ୍ୱାରା ନିରୋଧ କରି—॥ ୨୪ ॥

**ଶନୈଃ ଶନୈ-ରୁପରମେଦ୍,-ବୁଦ୍ଧ୍ୟା ଧୃତି-ଗୃହୀତୟା ।**
**ଆତ୍ମ-ସଂସ୍ଥଂ ମନଃ କୃତ୍ୱା, ନ କିଞ୍ଚିଦପି ଚିନ୍ତୟେତ୍ ॥**

କ୍ରମଶଃ ଅଭ୍ୟାସ କରି କରି ଉପରତି ପ୍ରାପ୍ତ ହେବା ଉଚିତ ତଥା ଧୈର୍ଯ୍ୟଯୁକ୍ତ ବୁଦ୍ଧିଦ୍ୱାରା ମନକୁ ପରମାତ୍ମାରେ ଲଗାଇ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ବି ଚିନ୍ତନ କରିବା ଉଚିତ ନୁହେଁ ॥ ୨୫ ॥

**ଯତୋ ଯତୋ ନିଶ୍ଚରତି, ମନଶ୍-ଚଞ୍ଚଳ-ମସ୍ଥିରମ୍ ।**
**ତତସ୍-ତତୋ ନିୟମ୍ୟୈତ,-ଦାତ୍ମନ୍ୟେବ ବଶଂ ନୟେତ୍ ॥**

ଏହି ଅସ୍ଥିର ଚଞ୍ଚଳ ମନ ଯେଉଁ ଯେଉଁ ଶବ୍ଦାଦି ବିଷୟନିମନ୍ତେ ସଂସାରରେ ବିଚରଣ କରେ, ତାହାକୁ ସେହି ସେହି ବିଷୟରୁ ରୋଧ କରି ଅର୍ଥାତ୍ ହଟାଇ ଆଣି ବାରମ୍ବାର ପରମାତ୍ମାଙ୍କ ଠାରେ ହିଁ ନିରୁଦ୍ଧ କରିବା ଉଚିତ ॥ ୨୬ ॥

**ପ୍ରଶାନ୍ତ-ମନସଂ ହ୍ୟେନଂ, ୟୋଗିନଂ ସୁଖ-ମୁତ୍ତମମ୍ ।**
**ଉପୈତି ଶାନ୍ତ-ରଜସଂ, ବ୍ରହ୍ମ-ଭୂତ-ମକଲ୍ମଷମ୍ ॥**

ଯାହାଙ୍କର ମନ ଭଲଭାବରେ ଶାନ୍ତ, ଯେ ପାପରୁ ରହିତ ଓ ଯାହାଙ୍କର ରଜୋଗୁଣ ଶାନ୍ତ ହୋଇଗଲାଣି, ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କ ସହିତ ଏକତ୍ୱଭାବ ପ୍ରାପ୍ତ ହୋଇଥିବା ସେହି ଯୋଗୀଙ୍କୁ ଉତ୍ତମ ଆନନ୍ଦ ପ୍ରାପ୍ତ ହୁଏ ॥ ୨୭ ॥

**ୟୁଞ୍ଜନ୍-ନେବଂ ସଦାତ୍ମାନଂ, ୟୋଗୀ ବିଗତ-କଲ୍ମଷଃ ।**
**ସୁଖେନ ବ୍ରହ୍ମ-ସଂସ୍ପର୍ଶ,-ମତ୍ୟନ୍ତଂ ସୁଖ-ମଶ୍ନୁତେ ॥**

ସେହି ନିଷ୍ପାପ ଯୋଗୀ ଏହିପରିଭାବରେ ନିରନ୍ତର ଆତ୍ମାକୁ ପରମାତ୍ମାରେ ଲଗାଇରଖି ସୁଖପୂର୍ବକ ପରବ୍ରହ୍ମ ପରମାତ୍ମପ୍ରାପ୍ତି-ରୂପକ ଅନନ୍ତ ଆନନ୍ଦ ଅନୁଭବ କରନ୍ତି ॥ ୨୮ ॥

**ସର୍ବ-ଭୂତସ୍ଥ-ମାତ୍ମାନଂ, ସର୍ବ-ଭୂତାନି ଚାତ୍ମନି ।**
**ଈକ୍ଷତେ ୟୋଗ-ୟୁକ୍ତାତ୍ମା, ସର୍ବତ୍ର ସମ-ଦର୍ଶନଃ ॥**

ସର୍ବବ୍ୟାପୀ ଅନନ୍ତ ଚେତନାରେ ଅର୍ଥାତ୍ ପରବ୍ରହ୍ମ ପରମାତ୍ମାରେ ଏକୀଭାବରେ ସ୍ଥିତିରୂପ ଯୋଗଦ୍ୱାରା ଯୁକ୍ତ ଆତ୍ମବାନ୍ ତଥା ସର୍ବତ୍ର ସମଭାବ ଦର୍ଶନ କରୁଥିବା ଯୋଗୀ ଆତ୍ମାକୁ ସକଳ ଭୂତରେ ଅବସ୍ଥିତ ଓ ସକଳ ଭୂତଙ୍କୁ ଆତ୍ମାରେ କଳ୍ପିତ ହୋଇଥିବା ଦେଖନ୍ତି ॥ ୨୯ ॥

**ୟୋ ମାଂ ପଶ୍ୟତି ସର୍ବତ୍ର, ସର୍ବଂ ଚ ମୟି ପଶ୍ୟତି ।**
**ତସ୍ୟାହଂ ନ ପ୍ରଣଶ୍ୟାମି, ସ ଚ ମେ ନ ପ୍ରଣଶ୍ୟତି ॥**

ଯେଉଁ ପୁରୁଷ ସକଳ ପ୍ରାଣୀଙ୍କ ଠାରେ ସକଳଙ୍କର ଆତ୍ମାରୂପେ ମୋତେ ଅର୍ଥାତ୍ ବାସୁଦେବଙ୍କୁ ହିଁ ବ୍ୟାପି ରହିଥିବା ଦେଖନ୍ତି ଓ ସକଳ ପ୍ରାଣୀଙ୍କୁ ମୋର ଅର୍ଥାତ୍ ବାସୁଦେବଙ୍କର ଅନ୍ତର୍ଗତ ଥିବା ଦେଖନ୍ତି, ତାଙ୍କ ପାଇଁ ମୁଁ ଅଦୃଶ୍ୟ ହୁଏ ନାହିଁ, କି ସେ ମୋ ପାଇଁ ଅଦୃଶ୍ୟ ହୁଅନ୍ତି ନାହିଁ ॥ ୩୦ ॥

**ସର୍ବ-ଭୂତ-ସ୍ଥିତଂ ଯୋ ମାଂ, ଭଜତ୍ୟେକତ୍ୱ-ମାସ୍ଥିତଃ ।**
**ସର୍ବଥା ବର୍ତ୍ତମାନୋଽପି, ସ ଯୋଗୀ ମୟି ବର୍ତ୍ତତେ ॥**

ଯେଉଁ ପୁରୁଷ ଏକୀଭାବରେ ସ୍ଥିତ ହୋଇ ସମସ୍ତ ପ୍ରାଣୀଙ୍କ ଠାରେ ଆତ୍ମରୂପରେ ସ୍ଥିତ ମୋତେ (ସଚ୍ଚିଦାନନ୍ଦଘନ ବାସୁଦେବଙ୍କୁ) ଭଜନ୍ତି, ସେହି ଯୋଗୀ ସକଳପ୍ରକାର କ୍ରିୟାକଳାପ କରୁଥିଲେ ମଧ୍ୟ ମୋ ସହିତ ହିଁ ସକଳ କ୍ରିୟା କରୁଥାନ୍ତି ॥ ୩୧ ॥

**ଆତ୍ମୌପମ୍ୟେନ ସର୍ବତ୍ର, ସମଂ ପଶ୍ୟତି ଯୋଽର୍ଜୁନ ।**
**ସୁଖଂ ବା ଯଦି ବା ଦୁଃଖଂ, ସ ଯୋଗୀ ପରମୋ ମତଃ ॥**

ହେ ଅର୍ଜୁନ ! ସକଳଭୂତରେ ଆତ୍ମଭାବ* ହୋଇଯିବାରୁ ଯେଉଁ ଯୋଗୀ ସମସ୍ତଙ୍କୁ ନିଜପରି ସମଭାବରେ ଦେଖନ୍ତି ଏବଂ ସମସ୍ତଙ୍କର ସୁଖଦୁଃଖକୁ ବି ନିଜର ସୁଖଦୁଃଖସମାନ ଦେଖନ୍ତି, ତାଙ୍କୁ ପରମ ଶ୍ରେଷ୍ଠ ବୋଲି ସ୍ୱୀକାର କରାଯାଏ ॥ ୩୨ ॥

---

* ମନୁଷ୍ୟ ନିଜର ମସ୍ତକ, ହସ୍ତ, ପାଦ ଓ ମଳଦ୍ୱାର ସହିତ ବ୍ରାହ୍ମଣ, କ୍ଷତ୍ରିୟ, ଶୂଦ୍ର ଓ ମ୍ଳେଚ୍ଛଙ୍କ ସହିତ ବ୍ୟବହାର କରିବା ପରି ବ୍ୟବହାର କରୁଥିଲେ ବି ସେସବୁରେ ଏକାପ୍ରକାର ଆପଣାଭାବ ଥିବାରୁ ସେସବୁର ସୁଖଦୁଃଖକୁ ସମାନଭାବରେ ଦେଖେ; ସକଳ ଭୂତଙ୍କୁ ସେହିଭାବରେ ଦେଖିବା ହିଁ ସମସ୍ତଙ୍କ ଠାରେ ଆତ୍ମଭାବ ରଖିବା ।

ଅର୍ଜୁନ ଉବାଚ

**ଯୋଽୟଂ ଯୋଗସ୍-ତ୍ୱୟା ପ୍ରୋକ୍ତଃ, ସାମ୍ୟେନ ମଧୁସୂଦନ ।**
**ଏତସ୍ୟାହଂ ନ ପଶ୍ୟାମି, ଚଞ୍ଚଳତ୍ୱାତ୍ ସ୍ଥିତିଂ ସ୍ଥିରାମ୍ ॥**

ଅର୍ଜୁନ କହିଲେ—ହେ ମଧୁସୂଦନ ! ଆପଣଙ୍କ ଦ୍ୱାରା ଏହି ଯେଉଁ ସମତ୍ୱରୂପକ ଯୋଗ କୁହାଗଲା, ମନର ଚଞ୍ଚଳତା-ହେତୁ ମୁଁ ତାହାର ନିତ୍ୟସ୍ଥିତି ଦେଖିପାରୁ ନାହିଁ ॥ ୩୩ ॥

**ଚଞ୍ଚଳଂ ହି ମନଃ କୃଷ୍ଣ, ପ୍ରମାଥି ବଲବଦ୍-ଦୃଢ଼ମ୍ ।**
**ତସ୍ୟାହଂ ନିଗ୍ରହଂ ମନ୍ୟେ, ବାୟୋରିବ ସୁଦୁଷ୍କରମ୍ ॥**

କାରଣ ହେ ଶ୍ରୀକୃଷ୍ଣ ! ଏହି ମନ ବଡ଼ ଚଞ୍ଚଳ, ଇନ୍ଦ୍ରିୟବିକ୍ଷୋଭକାରୀ, ବଡ଼ ଦୃଢ଼ ଓ ବଳବାନ୍ । ତେଣୁ ମୁଁ ଭାବୁଛି, ତାହାକୁ ବଶ କରିବା ବାୟୁକୁ ବଶ କରିବା ପରି ଅତ୍ୟନ୍ତ ଦୁଷ୍କର ॥ ୩୪ ॥

ଶ୍ରୀଭଗବାନୁବାଚ

**ଅସଂଶୟଂ ମହାବାହୋ, ମନୋ ଦୁର୍-ନିଗ୍ରହଂ ଚଲମ୍ ।**
**ଅଭ୍ୟାସେନ ତୁ କୌନ୍ତେୟ, ବୈରାଗ୍ୟେଣ ଚ ଗୃହ୍ୟତେ ॥**

ଶ୍ରୀଭଗବାନ୍ କହିଲେ—ହେ ମହାବାହୁ ! ମନ ଯେ ଚଞ୍ଚଳ ଓ ବଡ଼ କଷ୍ଟରେ ବଶୀଭୂତ ହୁଏ, ତାହା ନିଃସନ୍ଦେହ । କିନ୍ତୁ ହେ କୁନ୍ତୀପୁତ୍ର ଅର୍ଜୁନ ! ଏହା ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ବଶୀଭୂତ ହୋଇଥାଏ ॥ ୩୫ ॥

**ଅସଂଯତାତ୍ମନା ଯୋଗୋ, ଦୁଷ୍ପ୍ରାପ ଇତି ମେ ମତିଃ ।**
**ବଶ୍ୟାତ୍ମନା ତୁ ଯତତା, ଶକ୍ୟୋଽବାପ୍ତୁ-ମୁପାୟତଃ ॥**

ଯାହାର ମନ ସଂଯତ ହୋଇ ନାହିଁ, ତା'ଦ୍ୱାରା ଯୋଗ ଦୁଷ୍ପ୍ରାପ୍ୟ ଓ ମନକୁ ବଶ କରିଥିବା ପ୍ରଯତ୍ନଶୀଳ ପୁରୁଷଙ୍କ ଦ୍ୱାରା ସାଧନା ବଳରେ ତାହା ପ୍ରାପ୍ତ ହେବା ସହଜ—ଏହା ମୋର ମତ ॥ ୩୬ ॥

ଅର୍ଜୁନ ଉବାଚ

**ଅୟତିଃ ଶ୍ରଦ୍ଧୟୋପେତୋ, ୟୋଗାଚ୍-ଚଲିତ-ମାନସଃ ।**
**ଅପ୍ରାପ୍ୟ ୟୋଗ-ସଂସିଦ୍ଧିଂ, କାଂ ଗତିଂ କୃଷ୍ଣ ଗଚ୍ଛତି ॥**

ଅର୍ଜୁନ ପଚ୍ଚାରିଲେ—ହେ ଶ୍ରୀକୃଷ୍ଣ ! ଯେ ଯୋଗରେ ଶ୍ରଦ୍ଧା ରଖନ୍ତି କିନ୍ତୁ ସଂଯମୀ ନୁହନ୍ତି ଏବଂ ସେହି କାରଣରୁ ଯାହାଙ୍କ ମନ ଅନ୍ତକାଳରେ ଯୋଗରୁ ବିଚଳିତ ହୋଇଯାଏ, ସେପରି ସାଧକ ଯୋଗସିଦ୍ଧି ଅର୍ଥାତ୍ ଭଗବତ୍‌ସାକ୍ଷାତ୍କାର ପ୍ରାପ୍ତି କରି ନ ପାରି କେଉଁ ଗତି ପ୍ରାପ୍ତ ହୁଅନ୍ତି? ॥ ୩୭ ॥

**କଚ୍ଚିନ୍-ନୋଭୟ-ବିଭ୍ରଷ୍ଟଶ୍,-ଛିନ୍ନାଭ୍ର-ମିବ ନଶ୍ୟତି ।**
**ଅପ୍ରତିଷ୍ଠୋ ମହାବାହୋ, ବିମୂଢୋ ବ୍ରହ୍ମଣଃ ପଥି ॥**

ହେ ମହାବାହୁ ! କ'ଣ ସେହି ଭଗବତ୍‌ପ୍ରାପ୍ତି-ମାର୍ଗରେ ମୋହିତ ଓ ଆଶ୍ରୟରହିତ ହୋଇଯାଇଥିବା ପୁରୁଷ ଛିନ୍ନଭିନ୍ନ ମେଘ ପରି ଉଭୟ ଦିଗରୁ ଭ୍ରଷ୍ଟ ହୋଇ ନଷ୍ଟ ହୋଇଯା'ନ୍ତି ନାହିଁ କି? ॥ ୩୮ ॥

**ଏତନ୍-ମେ ସଂଶୟଂ କୃଷ୍ଣ, ଛେତ୍ତୁ-ମର୍ହସ୍ୟ-ଶେଷତଃ ।**
**ତ୍ୱଦନ୍ୟଃ ସଂଶୟସ୍ୟାସ୍ୟ, ଛେତ୍ତା ନ ହ୍ୟୁପ-ପଦ୍ୟତେ ॥**

ହେ ଶ୍ରୀକୃଷ୍ଣ ! ମୋର ଏହି ସଂଶୟ ସମ୍ପୂର୍ଣ୍ଣରୂପେ ଛେଦନ

କରିବାକୁ ଆପଣ ହିଁ ସମର୍ଥ ଅଟନ୍ତି; କାରଣ ଆପଣଙ୍କ ବ୍ୟତୀତ ଅନ୍ୟ କେହି ଏହି ସଂଶୟର ଛେଦନକାରୀ ମିଳିବା ସମ୍ଭବ ନୁହେଁ ॥ ୩୯ ॥

ଶ୍ରୀଭଗବାନୁବାଚ

**ପାର୍ଥ ନୈବେହ ନାମୁତ୍ର, ବିନାଶସ୍-ତସ୍ୟ ବିଦ୍ୟତେ ।**
**ନ ହି କଲ୍ୟାଣ-କୃତ୍-କଶ୍ଚିଦ୍,-ଦୁର୍-ଗତିଂ ତାତ ଗଚ୍ଛତି ॥**

ଶ୍ରୀଭଗବାନ୍ କହିଲେ—ହେ ପାର୍ଥ ! ସେହି ପୁରୁଷଙ୍କର ଇହଲୋକରେ ବିନାଶ ହୁଏ ନାହିଁ, କି ପରଲୋକରେ ବିନାଶ ହୁଏ ନାହିଁ; କାରଣ ହେ ପ୍ରିୟ ! ଆତ୍ମୋଦ୍ଧାରପାଇଁ ଅର୍ଥାତ୍ ଭଗବତ୍‌ପ୍ରାପ୍ତିପାଇଁ କର୍ମ କରୁଥିବା କୌଣସି ବି ପୁରୁଷ ଦୁର୍ଗତି ପ୍ରାପ୍ତ ହୁଅନ୍ତି ନାହିଁ ॥ ୪୦ ॥

**ପ୍ରାପ୍ୟ ପୁଣ୍ୟ-କୃତାଂ ଲୋକା,-ନୁଷିତ୍ୱା ଶାଶ୍ୱତୀଃ ସମାଃ ।**
**ଶୁଚୀନାଂ ଶ୍ରୀମତାଂ ଗେହେ, ୟୋଗ-ଭ୍ରଷ୍ଟୋଽଭିଜାୟତେ ॥**

ଯୋଗଭ୍ରଷ୍ଟ ପୁରୁଷ ପୁଣ୍ୟବାନ୍‌ମାନଙ୍କର ଲୋକ ଅର୍ଥାତ୍ ସ୍ୱର୍ଗାଦି ଉତ୍ତମ ଲୋକ ପ୍ରାପ୍ତ ହୋଇ, ବହୁ ବର୍ଷପାଏ ସେଠାରେ ନିବାସ କରି ଶୁଦ୍ଧ ଆଚରଣବିଶିଷ୍ଟ ଶ୍ରୀମନ୍ତ (ଲକ୍ଷ୍ମୀମନ୍ତ) ପୁରୁଷମାନଙ୍କ ଗୃହରେ ଜନ୍ମ ନିଅନ୍ତି ॥ ୪୧ ॥

**ଅଥବା ୟୋଗିନା-ମେବ, କୁଲେ ଭବତି ଧୀମତାମ୍ ।**
**ଏତଦ୍ଧି ଦୁର୍ଲଭ-ତରଂ, ଲୋକେ ଜନ୍ମ ୟଦୀ-ଦୃଶମ୍ ॥**

ଅଥବା ବୈରାଗ୍ୟବାନ୍ ପୁରୁଷ ସେସବୁ ଲୋକକୁ ନ ଯାଇ

ଜ୍ଞାନବାନ୍ ଯୋଗୀମାନଙ୍କର କୁଳରେ ହିଁ ଜନ୍ମନ୍ତି; ଏପରି ଜନ୍ମ ସଂସାରରେ ନିଃସନ୍ଦେହ ଅତ୍ୟନ୍ତ ଦୁର୍ଲଭ ॥ ୪୨ ॥

**ତତ୍ର ତଂ ବୁଦ୍ଧି-ସଂଯୋଗଂ, ଲଭତେ ପୌର୍ବ-ଦେହିକମ୍ ।**
**ଯତତେ ଚ ତତୋ ଭୂୟଃ, ସଂସିଦ୍ଧୌ କୁରୁ-ନନ୍ଦନ ॥**

ସେଠାରେ ପୂର୍ବଜନ୍ମର ଶରୀରରେ ସଂଗ୍ରହ କରିଥିବା ବୁଦ୍ଧିର ସେହି ସଂଯୋଗକୁ ଅର୍ଥାତ୍ ସମବୁଦ୍ଧିରୂପକ ଯୋଗସଂସ୍କାରମାନଙ୍କୁ ସେ ସହଜରେ ପ୍ରାପ୍ତ ହୋଇଯାନ୍ତି ଏବଂ ହେ କୁରୁନନ୍ଦନ ! ତାହାର ପ୍ରଭାବରେ ସେ ପୁଣିଥରେ ପରମାତ୍ମପ୍ରାପ୍ତିରୂପକ ସିଦ୍ଧିପାଇଁ ପୂର୍ବ ଅପେକ୍ଷା ଅଧିକ ପ୍ରଯତ୍ନ କରନ୍ତି ॥ ୪୩ ॥

**ପୂର୍ବାଭ୍ୟାସେନ ତେନୈବ, ହ୍ରିୟତେ ହ୍ୟବଶୋଽପି ସଃ ।**
**ଜିଜ୍ଞାସୁ-ରପି ଯୋଗସ୍ୟ, ଶବ୍ଦ-ବ୍ରହ୍ମାତି-ବର୍ତ୍ତତେ ॥**

ଲକ୍ଷ୍ମୀବାନ୍ ଲୋକଙ୍କ ଘରେ ଜନ୍ମ ହୋଇଥିବା ସେହି ଯୋଗଭ୍ରଷ୍ଟ ପୁରୁଷ ପରାଧୀନ ହୋଇ ମଧ୍ୟ ପୂର୍ବାଭ୍ୟାସପ୍ରଭାବରେ ହିଁ ନିଃସନ୍ଦେହ ଭଗବାନଙ୍କ ପ୍ରତି ଆକର୍ଷିତ ହୁଅନ୍ତି ତଥା ସମବୁଦ୍ଧିରୂପକ ଯୋଗର ଜିଜ୍ଞାସୁ ମଧ୍ୟ ବେଦରେ କଥିତ ସକାମକର୍ମର ଫଳକୁ ଉଲ୍ଲଙ୍ଘନ କରିଯା'ନ୍ତି ॥ ୪୪ ॥

**ପ୍ରଯତ୍ନାଦ୍-ଯତମାନସ୍-ତୁ, ଯୋଗୀ ସଂଶୁଦ୍ଧ-କିଲ୍‌ବିଷଃ ।**
**ଅନେକ-ଜନ୍ମ-ସଂସିଦ୍ଧସ୍,-ତତୋ ଯାତି ପରାଂ ଗତିମ୍ ॥**

ପରନ୍ତୁ ପ୍ରଯତ୍ନପୂର୍ବକ ଅଭ୍ୟାସ କରିଥିବା ଯୋଗୀ ତ ପୂର୍ବର ଅନେକ ଜନ୍ମର ସଂସ୍କାରବଳରେ ଇହଜନ୍ମରେ ସଂସିଦ୍ଧ ହୋଇ,

ସମସ୍ତ ପାପରୁ ରହିତ ହୋଇ, ତତ୍କାଳ ହିଁ ପରମଗତି ପ୍ରାପ୍ତ ହୋଇଯାନ୍ତି ॥ ୪୫ ॥

**ତପସ୍ୱିଭ୍ୟୋଽଧିକୋ ଯୋଗୀ, ଜ୍ଞାନିଭ୍ୟୋଽପି ମତୋଽଧିକଃ ।**
**କର୍ମିଭ୍ୟଶ୍-ଚାଧିକୋ ଯୋଗୀ, ତସ୍ମାଦ୍-ଯୋଗୀ ଭବାର୍ଜୁନ ॥**

ଯୋଗୀ ତପସ୍ୱୀମାନଙ୍କ ଠାରୁ ଶ୍ରେଷ୍ଠ; ଶାସ୍ତ୍ରଜ୍ଞାନୀମାନଙ୍କ ଠାରୁ ମଧ୍ୟ ଶ୍ରେଷ୍ଠ ବୋଲି ଗଣ୍ୟ ଏବଂ ସକାମକର୍ମ କରୁଥିବା ଲୋକଙ୍କ ଠାରୁ ମଧ୍ୟ ଯୋଗୀ ଶ୍ରେଷ୍ଠ; ତେଣୁ ହେ ଅର୍ଜୁନ ! ତୁମେ ଯୋଗୀ ହୋଇଯାଅ ॥ ୪୬ ॥

**ଯୋଗିନା-ମପି ସର୍ବେଷାଂ, ମଦ୍-ଗତେ-ନାନ୍ତ-ରାତ୍ମନା ।**
**ଶ୍ରଦ୍ଧା-ବାନ୍ ଭଜତେ ଯୋ ମାଂ, ସ ମେ ଯୁକ୍ତ-ତମୋ ମତଃ ॥**

ସମସ୍ତ ଯୋଗୀମାନଙ୍କ ମଧ୍ୟରେ ବି ଯେଉଁ ଶ୍ରଦ୍ଧାବାନ୍ ଯୋଗୀ ମୋଠାରେ ଲାଗିରହିଥିବା ଅନ୍ତରାତ୍ମାଦ୍ୱାରା ମୋତେ ନିରନ୍ତର ଭଜୁଥାନ୍ତି, ସେହି ଯୋଗୀ ମୋ ପକ୍ଷରେ ପରମ ଶ୍ରେଷ୍ଠ ବୋଲି ମାନ୍ୟ ଅଟନ୍ତି ॥ ୪୭ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ଆତ୍ମ-ସଂଯମ-ଯୋଗୋ ନାମ ଷଷ୍ଠୋଽଧ୍ୟାୟଃ ॥ ୬ ॥*



॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ସପ୍ତମୋଽଧ୍ୟାୟଃ

ଶ୍ରୀଭଗବାନୁବାଚ

**ମୟ୍ୟାସକ୍ତ-ମନାଃ ପାର୍ଥ, ଯୋଗଂ ଯୁଞ୍ଜନ୍ ମଦାଶ୍ରୟଃ ।**
**ଅସଂଶୟଂ ସମଗ୍ରଂ ମାଂ, ଯଥା ଜ୍ଞାସ୍ୟସି ତଚ୍ଛୃଣୁ ॥**

ଶ୍ରୀଭଗବାନ୍ କହିଲେ—ହେ ପାର୍ଥ ! ଅନନ୍ୟପ୍ରେମରେ ମୋ'ଠାରେ ଆସକ୍ତଚିତ୍ତ ହୋଇ ତଥା ଅନନ୍ୟଭାବରେ ମୋର ପରାୟଣ ହୋଇ ଯୋଗରତ ହେଲେ ତୁମେ ଯେପରି ସକଳ ବିଭୂତି, ବଳ, ଐଶ୍ୱର୍ଯ୍ୟାଦି ଗୁଣଯୁକ୍ତ ଓ ସମସ୍ତଙ୍କର ଆତ୍ମରୂପ ମୋତେ ନିଃସଂଶୟଭାବରେ ଜାଣିପାରିବ, ତାହା ଶୁଣ ॥ ୧ ॥

**ଜ୍ଞାନଂ ତେଽହଂ ସବିଜ୍ଞାନ,-ମିଦଂ ବକ୍ଷ୍ୟାମ୍ୟ-ଶେଷତଃ ।**
**ଯଜ୍-ଜ୍ଞାତ୍ୱା ନେହ ଭୂୟୋଽନ୍ୟଜ୍,-ଜ୍ଞାତବ୍ୟ-ମବଶିଷ୍ୟତେ ॥**

ମୁଁ ତୁମକୁ ବିଜ୍ଞାନ ସହିତ ଏହି ତତ୍ତ୍ୱଜ୍ଞାନ ସମ୍ପୂର୍ଣ୍ଣଭାବରେ କହିଦେବି; ଏହା ଜାଣିଗଲେ ସଂସାରରେ ଆଉ କିଛି ଜାଣିବାର ଯୋଗ୍ୟ ବସ୍ତୁ ବାକି ରହିଯାଏ ନାହିଁ ॥ ୨ ॥

**ମନୁଷ୍ୟାଣାଂ ସହସ୍ରେଷୁ, କଶ୍ଚିଦ୍-ଯତତି ସିଦ୍ଧୟେ ।**
**ଯତତା-ମପି ସିଦ୍ଧାନାଂ, କଶ୍ଚିନ୍-ମାଂ ବେତ୍ତି ତତ୍ତ୍ୱତଃ ॥**

ସହସ୍ର ସହସ୍ର ମନୁଷ୍ୟଙ୍କ ମଧ୍ୟରୁ କ୍ବଚିତ୍ କେହି ଜଣେ ମୋର ପ୍ରାପ୍ତିପାଇଁ ଯତ୍ନ କରିଥାନ୍ତି ଏବଂ ସେହି ଯତ୍ନ କରୁଥିବା ଯୋଗୀମାନଙ୍କ ମଧ୍ୟରୁ ବି କ୍ବଚିତ୍ କେହି ଜଣେ ମୋର ପରାୟଣ ହୋଇ ମୋତେ ତତ୍ତ୍ୱତଃ ଯଥାର୍ଥରୂପରେ ଜାଣନ୍ତି ॥ ୩ ॥

**ଭୂମି-ରାପୋଽନଲୋ ବାୟୁଃ, ଖଂ ମନୋ ବୁଦ୍ଧି-ରେବ ଚ ।**
**ଅହଂକାର ଇତୀୟଂ ମେ, ଭିନ୍ନା ପ୍ରକୃତି-ରଷ୍ଟଧା ॥**
**ଅପରେୟ-ମିତସ୍-ତ୍ୱନ୍ୟାଂ, ପ୍ରକୃତିଂ ବିଦ୍ଧି ମେ ପରାମ୍ ।**
**ଜୀବଭୂତାଂ ମହାବାହୋ, ୟୟେଦଂ ଧାର୍ଯ୍ୟତେ ଜଗତ୍ ॥**

ଭୂମି, ଜଳ, ଅଗ୍ନି, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଂକାର—ଏପରି ଆଠପ୍ରକାରେ ବିଭକ୍ତ ପ୍ରକୃତି ମୋର ହିଁ ପ୍ରକୃତି । ଏହି ଆଠପ୍ରକାରେ ବିଭକ୍ତ ପ୍ରକୃତି ତ ମୋର ଅପରା ଅର୍ଥାତ୍ ଜଡ଼ପ୍ରକୃତି । ହେ ମହାବାହୁ ! ଏହାଠାରୁ ଭିନ୍ନ ଅନ୍ୟ ପ୍ରକୃତି, ଯାହା କି ସମସ୍ତ ଜଗତକୁ ଧରିରଖିଛି, ତାହା ମୋର ଜୀବରୂପା ପରା ଅର୍ଥାତ୍ ଚେତନପ୍ରକୃତି ବୋଲି ଜାଣ ॥ ୪-୫ ॥

**ଏତଦ୍-ୟୋନୀନି ଭୂତାନି, ସର୍ବାଣୀ-ତ୍ୟୁପ-ଧାରୟ ।**
**ଅହଂ କୃତ୍ସ୍ନସ୍ୟ ଜଗତଃ, ପ୍ରଭବଃ ପ୍ରଲୟସ୍-ତଥା ॥**

ହେ ଅର୍ଜୁନ ! ତୁମେ ଜାଣ ଯେ, ସକଳ ଭୂତ ଏହି ଦୁଇ ପ୍ରକୃତିରୁ ହିଁ ଜାତ ହୋଇଛନ୍ତି ଏବଂ ମୁଁ ସମଗ୍ର ଜଗତର ଉତ୍ପତ୍ତି ତଥା ପ୍ରଳୟର ହେତୁ; ଅର୍ଥାତ୍ ମୁଁ ସମ୍ପୂର୍ଣ୍ଣ ଜଗତର ମୂଳକାରଣ ॥ ୬ ॥

**ମତ୍ତଃ ପରତରଂ ନାନ୍ୟତ୍, କିଞ୍ଚି-ଦସ୍ତି ଧନଞ୍ଜୟ ।**
**ମୟି ସର୍ବମିଦଂ ପ୍ରୋତଂ, ସୂତ୍ରେ ମଣି-ଗଣା ଇବ ॥**

ହେ ଧନଞ୍ଜୟ ! ମୋଠାରୁ ଭିନ୍ନ ଅନ୍ୟ କୌଣସି ପରମକାରଣ ନାହିଁ। ସୂତାରେ ସୂତାର ମଣି (ମାଳିଦାନା) ଗୁଡ଼ିଏ ଗୁନ୍ଥି ହୋଇଥିବା ପରି ଏହି ସମସ୍ତ ଜଗତ ମୋ'ଠାରେ ଗୁନ୍ଥା ହୋଇ ରହିଛି, ଅର୍ଥାତ୍ ଏହି ସମସ୍ତ ଜଗତରେ ମୁଁ ଓତପ୍ରୋତ ହୋଇ ରହିଛି ॥ ୭ ॥

**ରସୋଽହମପ୍‌ସୁ କୌନ୍ତେୟ, ପ୍ରଭାସ୍ମି ଶଶି-ସୂର୍ଯ୍ୟୟୋଃ ।**
**ପ୍ରଣବଃ ସର୍ବ-ବେଦେଷୁ, ଶବ୍ଦଃ ଖେ ପୌରୁଷଂ ନୃଷୁ ॥**

ହେ ଅର୍ଜୁନ ! ମୁଁ ହେଉଛି ଜଳରେ ରସ, ଚନ୍ଦ୍ର ଓ ସୂର୍ଯ୍ୟରେ ଆଲୋକ, ସକଳ ବେଦରେ ଓଁକାର, ଆକାଶରେ ଶବ୍ଦ ଏବଂ ପୁରୁଷମାନଙ୍କ ଠାରେ ପୁରୁଷତ୍ୱ ॥ ୮ ॥

**ପୁଣ୍ୟୋ ଗନ୍ଧଃ ପୃଥିବ୍ୟାଂ ଚ, ତେଜଶ୍-ଚାସ୍ମି ବିଭାବସୌ ।**
**ଜୀବନଂ ସର୍ବ-ଭୂତେଷୁ, ତପଶ୍-ଚାସ୍ମି ତପସ୍ୱିଷୁ ॥**

ମୁଁ ପୃଥିବୀରେ ପବିତ୍ର ଗନ୍ଧ*, ଅଗ୍ନିର ତେଜ ତଥା ସକଳ ଜୀବଙ୍କ ଠାରେ ଜୀବନ ଓ ତପସ୍ୱୀମାନଙ୍କ ଠାରେ ତପ ଅଟେ ॥ ୯ ॥

**ବୀଜଂ ମାଂ ସର୍ବ-ଭୂତାନାଂ, ବିଦ୍ଧି ପାର୍ଥ ସନାତନମ୍ ।**
**ବୁଦ୍ଧିର୍-ବୁଦ୍ଧିମତା-ମସ୍ମି, ତେଜସ୍-ତେଜସ୍ୱିନା-ମହମ୍ ॥**

* ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧଦ୍ୱାରା ଏହି ପ୍ରସଙ୍ଗରେ ଏସବୁର କାରଣରୂପକ ତନ୍ମାତ୍ରକୁ ଗ୍ରହଣ କରାଯାଇଛି। ଏହି ବିଷୟ ସ୍ପଷ୍ଟ କରିଦେବା ପାଇଁ ଏସବୁ ସହିତ ପବିତ୍ର ଶବ୍ଦଟି ଯୋଗ କରାଯାଇଛି।

ହେ ଅର୍ଜୁନ ! ତୁମେ ମୋତେ ହିଁ ସକଳ ଭୂତଙ୍କର ସନାତନ ବୀଜ ବୋଲି ଜାଣ। ମୁଁ ହିଁ ବୁଦ୍ଧିମାନ୍‌ମାନଙ୍କର ବୁଦ୍ଧି ଓ ତେଜସ୍ୱୀମାନଙ୍କର ତେଜ ଅଟେ ॥ ୧୦ ॥

**ବଲଂ ବଲବତାଂ ଚାହଂ, କାମ-ରାଗ-ବିବର୍ଜିତମ୍ ।**
**ଧର୍ମା-ବିରୁଦ୍ଧୋ ଭୂତେଷୁ, କାମୋଽସ୍ମି ଭରତର୍ଷଭ ॥**

ହେ ଭରତଶ୍ରେଷ୍ଠ ! ମୁଁ ବଳବାନ୍‌ମାନଙ୍କର ଆସକ୍ତିରହିତ ଓ କାମନାରହିତ ବଳ ଅର୍ଥାତ୍ ସାମର୍ଥ୍ୟ ଏବଂ ସକଳ ପ୍ରାଣୀମାନଙ୍କ ମଧ୍ୟରେ ଧର୍ମର ଅବିରୁଦ୍ଧ ଅର୍ଥାତ୍ ଶାସ୍ତ୍ରର ଅନୁକୂଳ କାମ ॥ ୧୧ ॥

**ୟେ ଚୈବ ସାତ୍ତ୍ୱିକା ଭାବା, ରାଜସାସ୍-ତାମସାଶ୍-ଚ ୟେ ।**
**ମତ୍ତ ଏବେତି ତାନ୍ ବିଦ୍ଧି, ନ ତ୍ୱହଂ ତେଷୁ ତେ ମୟି ॥**

ଆହୁରି ମଧ୍ୟ ସତ୍ତ୍ୱଗୁଣରୁ ଜାତ ଯେଉଁସବୁ ଭାବ ରହିଛି ଏବଂ ରଜୋଗୁଣରୁ ତଥା ତମୋଗୁଣରୁ ଜାତ ଯେଉଁସବୁ ଭାବ ରହିଛି, ସେସବୁ ମୋ'ଠାରୁ ହିଁ ଉତ୍ପନ୍ନ ବୋଲି ଜାଣ; କିନ୍ତୁ* ପ୍ରକୃତରେ ମୁଁ ସେସବୁରେ ନାହିଁ, କି ସେସବୁ ମୋ'ଠାରେ ନାହାନ୍ତି ॥ ୧୨ ॥

**ତ୍ରିଭିର୍-ଗୁଣମୟୈର୍-ଭାବୈ,-ରେଭିଃ ସର୍ବ-ମିଦଂ ଜଗତ୍ ।**
**ମୋହିତଂ ନାଭି-ଜାନାତି, ମାମେଭ୍ୟଃ ପର-ମବ୍ୟୟମ୍ ॥**

ଗୁଣମାନଙ୍କର କାର୍ଯ୍ୟରୂପ ସାତ୍ତ୍ୱିକ, ରାଜସ ଓ ତାମସ—

* ୯ମ ଅଧ୍ୟାୟର ୪, ୫ ଶ୍ଲୋକ ଦେଖନ୍ତୁ ।

ଏହି ତିନିପ୍ରକାର ଭାବଦ୍ୱାରା* ଏହି ସାରା ସଂସାର ଅର୍ଥାତ୍ ପ୍ରାଣୀସମୁଦାୟ ମୋହିତ ହେଉଛି; ଏଣୁ ଏହି ତିନିଗୁଣରୁ ଅତୀତ ହୋଇ ରହିଥିବା ଅବିନାଶୀସ୍ୱରୂପ ମୋତେ ଚିହ୍ନୁ ନାହିଁ ॥ ୧୩ ॥

**ଦୈବୀ ହ୍ୟେଷା ଗୁଣମୟୀ, ମମ ମାୟା ଦୁରତ୍ୟୟା ।**
**ମାମେବ ୟେ ପ୍ରପଦ୍ୟନ୍ତେ, ମାୟା-ମେତାଂ ତରନ୍ତି ତେ ॥**

କାରଣ ମୋର ଏହି ମାୟା ଅଲୌକିକ ଅର୍ଥାତ୍ ଅତ୍ୟନ୍ତ ଅଦ୍ଭୁତ ଓ ତ୍ରିଗୁଣମୟୀ ହୋଇଥିବାରୁ ବଡ଼ ଦୁସ୍ତର । ପରନ୍ତୁ ଯେଉଁମାନେ କେବଳ ମୋତେ ହିଁ ନିରନ୍ତର ଭଜନ କରନ୍ତି, ସେମାନେ ଏହି ମାୟାକୁ ଉଲ୍ଲଙ୍ଘନ କରିଯାଆନ୍ତି ଅର୍ଥାତ୍ ସଂସାରରୁ ତରିଯାଆନ୍ତି ॥ ୧୪ ॥

**ନ ମାଂ ଦୁଷ୍କୃତିନୋ ମୂଢାଃ, ପ୍ରପଦ୍ୟନ୍ତେ ନରାଧମାଃ ।**
**ମାୟୟା-ପହୃତ-ଜ୍ଞାନା, ଆସୁରଂ ଭାବ-ମାଶ୍ରିତାଃ ॥**

ଯେଉଁମାନଙ୍କର ଜ୍ଞାନ ମାୟାଦ୍ୱାରା ଅପହୃତ ହୋଇଯାଇଛି, ସେପରି ଆସୁରସ୍ୱଭାବ ଧରିଥିବା ଲୋକମାନେ ତଥା ମନୁଷ୍ୟମାନଙ୍କ ମଧ୍ୟରେ ନୀଚ, ଦୂଷିତକର୍ମା ମୂଢ଼ମାନେ ମୋତେ ଭଜନ କରନ୍ତି ନାହିଁ ॥ ୧୫ ॥

**ଚତୁର୍ବିଧା ଭଜନ୍ତେ ମାଂ, ଜନାଃ ସୁକୃତିନୋଽର୍ଜୁନ ।**
**ଆର୍ତ୍ତୋ ଜିଜ୍ଞାସୁ-ରର୍ଥାର୍ଥୀ, ଜ୍ଞାନୀ ଚ ଭରତର୍ଷଭ ॥**

* ଅର୍ଥାତ୍ ରାଗଦ୍ୱେଷାଦି ବିକାର ତଥା ସମସ୍ତ ବିଷୟମାନଙ୍କ ଦ୍ୱାରା ।

ହେ ଭରତବଂଶୀଙ୍କ ମଧ୍ୟରେ ଶ୍ରେଷ୍ଠ ଅର୍ଜୁନ ! ଉତ୍ତମକର୍ମ କରୁଥିବା ଅର୍ଥାର୍ଥୀ*, ଆର୍ତ୍ତψ ଜିଜ୍ଞାସୁ✦ ଓ ଜ୍ଞାନୀ—ଏପରି ଚାରିପ୍ରକାର ଭକ୍ତଜନ ମୋତେ ଭଜନ କରନ୍ତି ॥ ୧୬ ॥

**ତେଷାଂ ଜ୍ଞାନୀ ନିତ୍ୟ-ଯୁକ୍ତ, ଏକ-ଭକ୍ତିର୍-ବିଶିଷ୍ୟତେ ।**
**ପ୍ରିୟୋ ହି ଜ୍ଞାନିନୋଽତ୍ୟର୍ଥ,-ମହଂ ସ ଚ ମମ ପ୍ରିୟଃ ॥**

ସେମାନଙ୍କ ମଧ୍ୟରେ ମୋ'ଠାରେ ନିତ୍ୟ ଏକୀଭାବରେ ସ୍ଥିତ ଏବଂ ଅନନ୍ୟ ପ୍ରେମଭକ୍ତି ରଖିଥିବା ଜ୍ଞାନୀଭକ୍ତ ଅତ୍ୟନ୍ତ ଉତ୍ତମ ଅଟନ୍ତି; କାରଣ ମୋତେ ତତ୍ତ୍ୱତଃ ଜାଣିଥିବା ଜ୍ଞାନୀଙ୍କର ମୁଁ ଅତ୍ୟନ୍ତ ପ୍ରିୟ ଏବଂ ସେହି ଜ୍ଞାନୀ ମୋର ଅତ୍ୟନ୍ତ ପ୍ରିୟ ॥ ୧୭ ॥

**ଉଦାରାଃ ସର୍ବ ଏବୈତେ, ଜ୍ଞାନୀ ତ୍ୱାତ୍ମୈବ ମେ ମତମ୍ ।**
**ଆସ୍ଥିତଃ ସ ହି ଯୁକ୍ତାତ୍ମା, ମାମେବା-ନୁତ୍ତମାଂ ଗତିମ୍ ॥**

ଏମାନେ ସମସ୍ତେ ହିଁ ଉଦାର ଅଟନ୍ତି; କିନ୍ତୁ ମୋ ମତରେ ଜ୍ଞାନୀ ତ ସାକ୍ଷାତ୍ ମୋର ହିଁ ସ୍ୱରୂପ ଅଟନ୍ତି; କାରଣ ସେହି ମଦ୍‌ଗତ ମନବୁଦ୍ଧିସମ୍ପନ୍ନ ଜ୍ଞାନୀଭକ୍ତ ଅତି ଉତ୍ତମ ଗତିସ୍ୱରୂପ ମୋ'ଠାରେ ହିଁ ଭଲରୂପେ ଅବସ୍ଥିତ ହୋଇଥାନ୍ତି ॥ ୧୮ ॥

**ବହୂନାଂ ଜନ୍ମନା-ମନ୍ତେ, ଜ୍ଞାନବାନ୍-ମାଂ ପ୍ରପଦ୍ୟତେ ।**
**ବାସୁଦେବଃ ସର୍ବ-ମିତି, ସ ମହାତ୍ମା ସୁ-ଦୁର୍ଲଭଃ ॥**

* ସାଂସାରିକ ବିଷୟପାଇଁ ଭଜନ କରୁଥିବା ଲୋକ ।
ψ ସଂକଟ ନିବାରଣପାଇଁ ଭଜନ କରୁଥିବା ଲୋକ ।
✦ ମୋତେ ଯଥାର୍ଥରୂପରେ ଜାଣିବାପାଇଁ ଭଜନ କରୁଥିବା ଲୋକ ।

ବହୁଜନ୍ମର ଶେଷ ଜନ୍ମରେ ତତ୍ତ୍ୱଜ୍ଞାନପ୍ରାପ୍ତ ପୁରୁଷ 'ସବୁକିଛି କେବଳ ବାସୁଦେବ ହିଁ* ଅଟେ'—ଏହିଭାବ ରଖି ମୋତେ ଭଜନ୍ତି। ସେପରି ମହାତ୍ମା ଅତ୍ୟନ୍ତ ଦୁର୍ଲଭ ॥ ୧୯ ॥

**କାମୈସ୍-ତୈସ୍-ତୈର୍-ହୃତ-ଜ୍ଞାନାଃ, ପ୍ରପଦ୍ୟନ୍ତେଽନ୍ୟ-ଦେବତାଃ ।**
**ତଂ ତଂ ନିୟମ-ମାସ୍ଥାୟ, ପ୍ରକୃତ୍ୟା ନିୟତାଃ ସ୍ୱୟା ॥**

ଭୋଗକାମନାଦ୍ୱାରା ଯେଉଁମାନଙ୍କର ଜ୍ଞାନ ଅପହୃତ ହୋଇଯାଇଛି, ସେମାନେ ନିଜ ନିଜର ସ୍ୱଭାବଦ୍ୱାରା ପ୍ରେରିତ ହୋଇ ସେହି ସେହି ନିୟମ ଧରି ଅନ୍ୟ ଦେବତାମାନଙ୍କୁ ଭଜନ୍ତି ଅର୍ଥାତ୍ ପୂଜା କରନ୍ତି ॥ ୨୦ ॥

**ଯୋ ଯୋ ୟାଂ ୟାଂ ତନୁଂ ଭକ୍ତଃ, ଶ୍ରଦ୍ଧୟାର୍ଚ୍ଚିତୁ-ମିଚ୍ଛତି ।**
**ତସ୍ୟ ତସ୍ୟା-ଚଲାଂ ଶ୍ରଦ୍ଧାଂ, ତାମେବ ବିଦଧା-ମ୍ୟହମ୍ ॥**

ଯେଉଁ ଯେଉଁ ସକାମ ଭକ୍ତ ଯେଉଁ ଯେଉଁ ଦେବତାଙ୍କ ସ୍ୱରୂପକୁ ଶ୍ରଦ୍ଧାରେ ପୂଜା କରିବାକୁ ଇଚ୍ଛା କରନ୍ତି, ସେହି ସେହି ଭକ୍ତଙ୍କ ଶ୍ରଦ୍ଧାକୁ ମୁଁ ସେହି ସେହି ଦେବତାଙ୍କ ଠାରେ ସ୍ଥିର କରେ ॥ ୨୧ ॥

**ସ ତୟା ଶ୍ରଦ୍ଧୟା ଯୁକ୍ତସ୍,-ତସ୍ୟାରାଧନ-ମୀହତେ ।**
**ଲଭତେ ଚ ତତଃ କାମାନ୍, ମୟୈବ ବିହିତାନ୍ ହି ତାନ୍ ॥**

ସେହି ଭକ୍ତପୁରୁଷ ସେହି ଶ୍ରଦ୍ଧାରେ ଯୁକ୍ତ ହୋଇ ସେହି

* ଅର୍ଥାତ୍ ବାସୁଦେବଙ୍କ ଭିନ୍ନ ଅନ୍ୟ କିଛି ନାହିଁ।

ଦେବତାଙ୍କୁ ଆରାଧନା କରନ୍ତି ଓ ମୋରି ଦ୍ୱାରା ବିଧାନ କରାଯାଇଥିବା ତାଙ୍କର ସେହି ଇଚ୍ଛିତ ଭୋଗମାନଙ୍କୁ ସେହି ଦେବତାଙ୍କ ଠାରୁ ନିଃସନ୍ଦେହ ଲାଭ କରନ୍ତି ॥ ୨୨ ॥

**ଅନ୍ତବତ୍ତୁ ଫଳଂ ତେଷାଂ, ତଦ୍-ଭବତ୍ୟଲ୍ପ-ମେଧସାମ୍ ।**
**ଦେବାନ୍-ଦେବ-ଯଜୋ ଯାନ୍ତି, ମଦ୍-ଭକ୍ତା ଯାନ୍ତି ମାମପି ॥**

ପରନ୍ତୁ ସେହି ଅଳ୍ପବୁଦ୍ଧିମାନଙ୍କର ସେହି ଫଳ ନାଶବାନ୍ ହୁଏ; ତଥା ସେହି ଦେବପୂଜକମାନେ ଦେବତାଙ୍କୁ ପାଆନ୍ତି; କିନ୍ତୁ ମୋର ଭକ୍ତମାନେ ମୋତେ ଯେକୌଣସିରୂପରେ ଭଜନ କଲେ ମଧ୍ୟ ଶେଷରେ ମୋତେ ହିଁ ପାଆନ୍ତି ॥ ୨୩ ॥

**ଅବ୍ୟକ୍ତଂ ବ୍ୟକ୍ତି-ମାପନ୍ନଂ, ମନ୍ୟନ୍ତେ ମାମବୁଦ୍ଧୟଃ ।**
**ପରଂ ଭାବ-ମଜାନନ୍ତୋ, ମମାବ୍ୟୟ-ମନୁତ୍ତମମ୍ ॥**

ବୁଦ୍ଧିହୀନ ମନୁଷ୍ୟମାନେ ମୋର ଅନୁତ୍ତମ ଅବିନାଶୀ ପରମ ଭାବକୁ ନ ଜାଣି, ମନ-ଇନ୍ଦ୍ରିୟର ଅତୀତ ମୋତେ— ଅର୍ଥାତ୍ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ସାଧାରଣ ମନୁଷ୍ୟ ପରି ଜନ୍ମ ହୋଇ ବ୍ୟକ୍ତିଭାବ ପ୍ରାପ୍ତ ହୋଇଛି ବୋଲି ମନେ କରନ୍ତି ॥ ୨୪ ॥

**ନାହଂ ପ୍ରକାଶଃ ସର୍ବସ୍ୟ, ଯୋଗ-ମାୟା-ସମାବୃତଃ ।**
**ମୂଢୋଽୟଂ ନାଭି-ଜାନାତି, ଲୋକୋ ମା-ମଜ-ମବ୍ୟୟମ୍ ॥**

ନିଜ ଯୋଗମାୟାରେ ଲୁଚିରହିଥିବାରୁ ମୁଁ ସମସ୍ତଙ୍କୁ ପ୍ରତ୍ୟକ୍ଷ ହୁଏ ନାହିଁ; ତେଣୁ ଏହି ଅଜ୍ଞାନୀ ଲୋକେ ମୋତେ ଅଜନ୍ମା

ଓ ଅବିନାଶୀ ପରମେଶ୍ୱର ବୋଲି ଜାଣନ୍ତି ନାହିଁ ଅର୍ଥାତ୍ ମୋତେ ଜନ୍ମମରଣଶୀଳ ବୋଲି ଭାବନ୍ତି ॥ ୨୫ ॥

**ବେଦାହଂ ସମତୀତାନି, ବର୍ତ୍ତମାନାନି ଚାର୍ଜ୍ଜୁନ ।**
**ଭବିଷ୍ୟାଣି ଚ ଭୂତାନି, ମାଂ ତୁ ବେଦ ନ କଶ୍ଚନ ॥**

ହେ ଅର୍ଜୁନ ! ଅତୀତରେ ଯେଉଁମାନେ ଥିଲେ, ବର୍ତ୍ତମାନ ଯେଉଁମାନେ ଅଛନ୍ତି ତଥା ଭବିଷ୍ୟତରେ ଯେଉଁମାନେ ଜାତ ହେବେ, ସେହି ସକଳ ଭୂତପ୍ରାଣୀଙ୍କୁ ମୁଁ ଜାଣେ; କିନ୍ତୁ ଶ୍ରଦ୍ଧାଭକ୍ତିହୀନ କୌଣସି ପୁରୁଷ ମୋତେ ଜାଣେ ନାହିଁ ॥ ୨୬ ॥

**ଇଚ୍ଛା-ଦ୍ୱେଷ-ସମୁତ୍‌ଥେନ, ଦ୍ୱନ୍ଦ୍ୱ-ମୋହେନ ଭାରତ ।**
**ସର୍ବ-ଭୂତାନି ସମ୍ମୋହଂ, ସର୍ଗେ ଯାନ୍ତି ପରନ୍-ତପ ॥**

ହେ ଭରତବଂଶୀ ଅର୍ଜୁନ ! ସଂସାରରେ ଇଚ୍ଛା ଓ ଦ୍ୱେଷରୁ ଉତ୍ପନ୍ନ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱରୂପକ ମୋହଯୋଗୁଁ ସମସ୍ତ ପ୍ରାଣୀ ଅତ୍ୟନ୍ତ ଅଜ୍ଞତା ପ୍ରାପ୍ତ ହେଉଛନ୍ତି ॥ ୨୭ ॥

**ଯେଷାଂ ତ୍ୱନ୍ତ-ଗତଂ ପାପଂ, ଜନାନାଂ ପୁଣ୍ୟ-କର୍ମଣାମ୍ ।**
**ତେ ଦ୍ୱନ୍ଦ୍ୱ-ମୋହ-ନିର୍ମୁକ୍ତା, ଭଜନ୍ତେ ମାଂ ଦୃଢ-ବ୍ରତାଃ ॥**

କିନ୍ତୁ ନିଷ୍କାମଭାବରେ ଶ୍ରେଷ୍ଠକର୍ମ କରୁଥିବା ଯେଉଁ ପୁରୁଷମାନଙ୍କର ପାପ ନଷ୍ଟ ହୋଇଗଲାଣି, ସେହି ରାଗ-ଦ୍ୱେଷଜନିତ ଦ୍ୱନ୍ଦ୍ୱରୂପକ ମୋହରୁ ମୁକ୍ତ ହୋଇଥିବା ଦୃଢ଼ନିଶ୍ଚୟୀ ଭକ୍ତମାନେ ମୋତେ ସକଳପ୍ରକାରେ ଭଜନ କରନ୍ତି ॥ ୨୮ ॥

**ଜରା-ମରଣ-ମୋକ୍ଷାୟ, ମାମାଶ୍ରିତ୍ୟ ଯତନ୍ତି ଯେ ।**
**ତେ ବ୍ରହ୍ମ ତଦ୍-ବିଦୁଃ କୃତ୍ସ୍ନ,-ମଧ୍ୟାତ୍ମଂ କର୍ମ ଚାଖିଲମ୍ ॥**

ଯେଉଁମାନେ ମୋର ଶରଣ ନେଇ ଜରା ଓ ମରଣରୁ ମୁକ୍ତି ପାଇବା ପାଇଁ ଯତ୍ନ କରନ୍ତି, ସେମାନେ ସେହି ବ୍ରହ୍ମକୁ, ସମ୍ପୂର୍ଣ୍ଣ ଅଧ୍ୟାତ୍ମକୁ ଓ ସମସ୍ତ କର୍ମକୁ ଜାଣନ୍ତି ॥ ୨୯ ॥

**ସାଧିଭୂତାଧିଦୈବଂ ମାଂ, ସାଧିଯଜ୍ଞଂ ଚ ଯେ ବିଦୁଃ ।**
**ପ୍ରୟାଣ-କାଲେଽପି ଚ ମାଂ, ତେ ବିଦୁର୍-ଯୁକ୍ତ-ଚେତସଃ ॥**

ଯେଉଁମାନେ ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ସହିତ ସମସ୍ତଙ୍କର ଆତ୍ମରୂପ ମୋତେ ଅନ୍ତକାଳରେ ହେଲେ ମଧ୍ୟ ଜାଣନ୍ତି* ସେହି ଯୁକ୍ତଚିତ୍ତ ମନୁଷ୍ୟମାନେ ମୋତେ ଜାଣନ୍ତି ଅର୍ଥାତ୍ ମୋତେ ପ୍ରାପ୍ତ ହୁଅନ୍ତି ॥ ୩୦ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ଜ୍ଞାନ-ବିଜ୍ଞାନ-ଯୋଗୋ ନାମ ସପ୍ତମୋଽଧ୍ୟାୟଃ ॥ ୭ ॥*



* ଯେପରି ବାଷ୍ପ, ମେଘ, କୁହୁଡି, ପାଣି ଓ ବରଫ—ସବୁ ଜଳସ୍ୱରୂପ, ସେହିପରି ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ସବୁକିଛି ବାସୁଦେବସ୍ୱରୂପ ବୋଲି ଯେ ଜାଣିପାରନ୍ତି ।

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ-ଅଷ୍ଟମୋଽଧ୍ୟାୟଃ

*ଅର୍ଜୁନ ଉବାଚ*

**କିଂ ତଦ୍-ବ୍ରହ୍ମ କିମଧ୍ୟାତ୍ମଂ, କିଂ କର୍ମ ପୁରୁଷୋତ୍ତମ ।**
**ଅଧିଭୂତଂ ଚ କିଂ ପ୍ରୋକ୍ତ,-ମଧି-ଦୈବଂ କିମୁଚ୍ୟତେ ॥**

ଅର୍ଜୁନ କହିଲେ—ହେ ପୁରୁଷୋତ୍ତମ ! ସେହି ବ୍ରହ୍ମ କ'ଣ? ଅଧ୍ୟାତ୍ମ କ'ଣ? କର୍ମ କ'ଣ? ଅଧିଭୂତ କାହାକୁ କୁହାଯାଇଛି ଏବଂ ଅଧିଦୈବ କାହାକୁ କହନ୍ତି? ॥ ୧ ॥

**ଅଧି-ଯଜ୍ଞଃ କଥଂ କୋଽତ୍ର, ଦେହେଽସ୍ମିନ୍-ମଧୁସୂଦନ ।**
**ପ୍ରୟାଣ-କାଲେ ଚ କଥଂ, ଜ୍ଞେୟୋଽସି ନିୟତାତ୍ମଭିଃ ॥**

ହେ ମଧୁସୂଦନ ! ଏଠାରେ ଅଧିଯଜ୍ଞ କିଏ ଓ ସେ ଏହି ଶରୀରରେ କିପରି ଅଛନ୍ତି ତଥା ଯୁକ୍ତଚିତ୍ତ ପୁରୁଷମାନଙ୍କ ଦ୍ୱାରା ମରଣକାଳରେ ଆପଣ କିପରି ଜାଣିହୁଅନ୍ତି? ॥ ୨ ॥

*ଶ୍ରୀଭଗବାନୁବାଚ*

**ଅକ୍ଷରଂ ବ୍ରହ୍ମ ପରମଂ, ସ୍ୱଭାବୋଽଧ୍ୟାତ୍ମ-ମୁଚ୍ୟତେ ।**
**ଭୂତ-ଭାବୋଦ୍ଭବ-କରୋ, ବିସର୍ଗଃ କର୍ମ-ସଂଜ୍ଞିତଃ ॥**

ଶ୍ରୀଭଗବାନ୍ କହିଲେ—ପରମ ଅକ୍ଷର ବ୍ରହ୍ମ ଅଟେ । ନିଜ ସ୍ୱରୂପ ଅର୍ଥାତ୍ ଜୀବାତ୍ମା ଅଧ୍ୟାତ୍ମ ନାମରେ କଥିତ ହୁଏ; ତଥା ପ୍ରାଣୀମାନଙ୍କର ଉତ୍ପତ୍ତି ଓ ଅଭ୍ୟୁଦୟ କରୁଥିବା ବିସର୍ଗ ଅର୍ଥାତ୍ ତ୍ୟାଗକୁ କର୍ମ କୁହାଯାଏ ॥ ୩ ॥

**ଅଧିଭୂତଂ କ୍ଷରୋ ଭାବଃ, ପୁରୁଷଶ୍-ଚାଧି-ଦୈବତମ୍ ।**
**ଅଧି-ଯଜ୍ଞୋଽହ-ମେବାତ୍ର, ଦେହେ ଦେହ-ଭୃତାଂ ବର ॥**

ଉତ୍ପତ୍ତି-ବିନାଶଶୀଳ ସମସ୍ତ ପଦାର୍ଥ ହେଉଛି ଅଧିଭୂତ । ହିରଣ୍ୟମୟ ପୁରୁଷ* ହିଁ ଅଧିଦୈବ । ହେ ଦେହଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅର୍ଜୁନ ! ଏହି ଶରୀରରେ ମୁଁ ବାସୁଦେବ ହିଁ ଅନ୍ତର୍ଯାମୀରୂପରେ ଅଧିଯଜ୍ଞ ଅଟେ ॥ ୪ ॥

**ଅନ୍ତ-କାଲେ ଚ ମାମେବ, ସ୍ମରନ୍-ମୁକ୍ତ୍ୱା କଲେବରମ୍ ।**
**ୟଃ ପ୍ରୟାତି ସ ମଦ୍-ଭାବଂ, ୟାତି ନାସ୍ତ୍ୟତ୍ର ସଂଶୟଃ ॥**

ଯେଉଁ ପୁରୁଷ ଅନ୍ତକାଳରେ ହେଲେ ବି ମୋତେ ହିଁ ସ୍ମରଣ କରି କରି ଦେହ ତ୍ୟାଗ କରନ୍ତି, ସେ ମୋର ସାକ୍ଷାତ୍ ସ୍ୱରୂପ ପ୍ରାପ୍ତ ହୁଅନ୍ତି; ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ॥ ୫ ॥

**ୟଂ ୟଂ ବାପି ସ୍ମରନ୍ ଭାବଂ, ତ୍ୟଜତ୍ୟନ୍ତେ କଲେବରମ୍ ।**
**ତଂ ତମେବୈତି କୌନ୍ତେୟ, ସଦା ତଦ୍-ଭାବ-ଭାବିତଃ ॥**

ହେ କୁନ୍ତୀପୁତ୍ର ଅର୍ଜୁନ ! ଏହି ମନୁଷ୍ୟ ଅନ୍ତକାଳରେ ଯେଉଁ ଯେଉଁ ଭାବ ସ୍ମରଣ କରି କରି ଶରୀର ତ୍ୟାଗ କରେ, ସେ

---

* ଯାହାଙ୍କୁ ଶାସ୍ତ୍ରରେ ସୂତ୍ରାତ୍ମା, ହିରଣ୍ୟଗର୍ଭ, ପ୍ରଜାପତି, ବ୍ରହ୍ମା ଇତ୍ୟାଦି ନାମରେ କୁହାଯାଇଛି ।

ତାହା ହିଁ ପ୍ରାପ୍ତ ହୁଏ; କାରଣ ସେ ସବୁବେଳେ ସେହି ଭାବରେ ଭାବିତ ହୋଇ ରହିଥାଏ ॥ ୬ ॥

**ତସ୍ମାତ୍ ସର୍ବେଷୁ କାଲେଷୁ, ମାମନୁସ୍ମର ଯୁଧ୍ୟ ଚ ।**
**ମୟ୍ୟର୍ପିତ-ମନୋ-ବୁଦ୍ଧିର୍,-ମାମେବୈଷ୍ୟସ୍ୟ-ସଂଶୟମ୍ ॥**

ଅତଏବ ହେ ଅର୍ଜୁନ ! ତୁମେ ସବୁ ସମୟରେ ନିରନ୍ତର ମୋତେ ସ୍ମରଣ କର ଓ ଯୁଦ୍ଧ ମଧ୍ୟ କର । ଏହିପ୍ରକାରେ ମୋଠାରେ ଅର୍ପଣ କରାଯାଇଥିବା ମନ-ବୁଦ୍ଧିରେ ଯୁକ୍ତ ହୋଇ ତୁମେ ନିଃସନ୍ଦେହ ମୋତେ ହିଁ ପ୍ରାପ୍ତ ହେବ ॥ ୭ ॥

**ଅଭ୍ୟାସ-ଯୋଗ-ଯୁକ୍ତେନ, ଚେତସା ନାନ୍ୟ-ଗାମିନା ।**
**ପରମଂ ପୁରୁଷଂ ଦିବ୍ୟଂ, ଯାତି ପାର୍ଥାନୁ-ଚିନ୍ତୟନ୍ ॥**

ହେ ପାର୍ଥ ! ପରମେଶ୍ୱରଙ୍କ ଧ୍ୟାନର ଅଭ୍ୟାସରୂପକ ଯୋଗରେ ଯୁକ୍ତ ହୋଇ ଅନ୍ୟ ଆଡ଼େ ଯାଉ ନ ଥିବା ଚିତ୍ତଦ୍ୱାରା ନିରନ୍ତର ଚିନ୍ତନ କରୁଥିବା ମନୁଷ୍ୟ ପରମପ୍ରକାଶରୂପ ଦିବ୍ୟ ପୁରୁଷଙ୍କୁ ଅର୍ଥାତ୍ ପରମେଶ୍ୱରଙ୍କୁ ହିଁ ପ୍ରାପ୍ତ ହୁଅନ୍ତି ॥ ୮ ॥

**କବିଂ ପୁରାଣ-ମନୁ-ଶାସିତାର-**
**ମଣୋ-ରଣୀୟାଂ-ସମନୁ-ସ୍ମରେଦ୍ ଯଃ ।**
**ସର୍ବସ୍ୟ ଧାତାର-ମଚିନ୍ତ୍ୟ-ରୂପ-**
**ମାଦିତ୍ୟ-ବର୍ଣ୍ଣଂ ତମସଃ ପରସ୍ତାତ୍ ॥**

ଯେଉଁ ପୁରୁଷ ସର୍ବଜ୍ଞ, ଅନାଦି, ସର୍ବନିୟନ୍ତା*, ସୂକ୍ଷ୍ମାତିସୂକ୍ଷ୍ମ,

* ଯେ ଅନ୍ତର୍ଯାମୀରୂପରେ ସମସ୍ତ ପ୍ରାଣୀଙ୍କୁ ସେମାନଙ୍କର ଶୁଭାଶୁଭ କର୍ମାନୁଯାୟୀ ଶାସନ କରନ୍ତି ।

ସମସ୍ତଙ୍କର ଧାରଣ-ପୋଷଣକାରୀ, ଅଚିନ୍ତ୍ୟସ୍ୱରୂପ, ସୂର୍ଯ୍ୟସଦୃଶ ନିତ୍ୟ, ଚେତନ, ପ୍ରକାଶରୂପ ଓ ଅବିଦ୍ୟାରୁ ସମ୍ପୂର୍ଣ୍ଣ ଅତୀତ ଶୁଦ୍ଧ ସଚ୍ଚିଦାନନ୍ଦଘନ ପରମେଶ୍ୱରଙ୍କୁ ସ୍ମରଣ କରନ୍ତି,....।। ୯ ।।

**ପ୍ରୟାଣ-କାଲେ ମନସା-ଚଲେନ**
**ଭକ୍ତ୍ୟା ଯୁକ୍ତୋ ଯୋଗ-ବଲେନ ଚୈବ ।**
**ଭ୍ରୁବୋର୍-ମଧ୍ୟେ ପ୍ରାଣ-ମାବେଶ୍ୟ ସମ୍ୟକ୍**
**ସ ତଂ ପରଂ ପୁରୁଷ-ମୁପୈତି ଦିବ୍ୟମ୍ ।।**

ସେହି ଭକ୍ତିଯୁକ୍ତ ପୁରୁଷ ଅନ୍ତକାଳରେ ମଧ୍ୟ ଯୋଗବଳରେ ଦୁଇ ଭ୍ରୂଲତାର ମଧ୍ୟବର୍ତ୍ତୀ ସ୍ଥାନରେ ପ୍ରାଣକୁ ଭଲରୂପେ ସ୍ଥାପନ କରି ଏବଂ ନିଶ୍ଚଳ ମନଦ୍ୱାରା ସ୍ମରଣ କରି କରି ସେହି ଦିବ୍ୟରୂପ ପରମ ପୁରୁଷ ପରମାତ୍ମାଙ୍କୁ ହିଁ ପ୍ରାପ୍ତ ହୁଅନ୍ତି ।। ୧୦ ।।

**ଯଦକ୍ଷରଂ ବେଦବିଦୋ ବଦନ୍ତି**
**ବିଶନ୍ତି ଯଦ୍-ଯତୟୋ ବୀତରାଗାଃ ।**
**ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି**
**ତତ୍ତେ ପଦଂ ସଙ୍ଗ୍ରହେଣ ପ୍ରବକ୍ଷ୍ୟେ ।।**

ଏବଂ ହେ ଅର୍ଜୁନ ! ବେଦଜ୍ଞ ବିଦ୍ୱାନ୍‌ମାନେ ଯେଉଁ ସଚ୍ଚିଦାନନ୍ଦଘନରୂପକ ପରମପଦକୁ ଅବିନାଶୀ ବୋଲି କହନ୍ତି, ଆସକ୍ତିଶୂନ୍ୟ ଯତ୍ନଶୀଳ ସନ୍ନ୍ୟାସୀ ମହାତ୍ମାମାନେ ଯାହାଙ୍କ ଠାରେ ପ୍ରବେଶ କରନ୍ତି ଏବଂ ଯେଉଁ ପରମପଦ ଚାହୁଁଥିବା ବ୍ରହ୍ମଚାରୀମାନେ ବ୍ରହ୍ମଚର୍ଯ୍ୟ ଆଚରଣ କରନ୍ତି, ସେହି ପରମପଦ ମୁଁ ତୁମକୁ ସଂକ୍ଷେପରେ କହିଦେବି ।। ୧୧ ।।

**ସର୍ବ-ଦ୍ୱାରାଣି ସଂଯମ୍ୟ, ମନୋ ହୃଦି ନିରୁଧ୍ୟ ଚ ।**
**ମୂର୍ଦ୍ଧ୍ନ୍ୟା-ଧାୟାତ୍ମନଃ ପ୍ରାଣ,-ମାସ୍ଥିତୋ ଯୋଗ-ଧାରଣାମ୍ ॥**
**ଓମିତ୍ୟେକା-କ୍ଷରଂ ବ୍ରହ୍ମ, ବ୍ୟାହରନ୍-ମାମନୁସ୍ମରନ୍ ।**
**ଯଃ ପ୍ରୟାତି ତ୍ୟଜନ୍ ଦେହଂ, ସ ଯାତି ପରମାଂ ଗତିମ୍ ॥**

ସକଳ ଇନ୍ଦ୍ରିୟର ଦ୍ୱାର ରୁଦ୍ଧ କରି ତଥା ମନକୁ ହୃଦୟରେ ସ୍ଥିର କରି, ପୁଣି ସେହି ବିଜିତ ମନଦ୍ୱାରା ପ୍ରାଣକୁ ମସ୍ତକରେ ସ୍ଥାପନ କରି, ପରମାତ୍ମସମ୍ବନ୍ଧୀ ଯୋଗଧାରଣାରେ ସ୍ଥିତ ହୋଇ, ଯେଉଁ ପୁରୁଷ 'ଓଁ—ଏହି ଏକାକ୍ଷରରୂପକ ବ୍ରହ୍ମକୁ ଉଚ୍ଚାରଣ କରି କରି ଏବଂ ତାହାର ଅର୍ଥସ୍ୱରୂପ ମୋତେ ଅର୍ଥାତ୍ ନିର୍ଗୁଣ ବ୍ରହ୍ମକୁ ଚିନ୍ତନ କରି କରି ଶରୀର ଛାଡ଼ି ପ୍ରୟାଣ କରନ୍ତି, ସେହି ପୁରୁଷ ପରମଗତି ପ୍ରାପ୍ତ ହୁଅନ୍ତି ॥ ୧୨-୧୩ ॥

**ଅନନ୍ୟ-ଚେତାଃ ସତତଂ, ଯୋ ମାଂ ସ୍ମରତି ନିତ୍ୟଶଃ ।**
**ତସ୍ୟାହଂ ସୁଲଭଃ ପାର୍ଥ, ନିତ୍ୟ-ଯୁକ୍ତସ୍ୟ ଯୋଗିନଃ ॥**

ହେ ଅର୍ଜୁନ ! ଯେଉଁ ପୁରୁଷ ମୋଠାରେ ଅନନ୍ୟଚିତ୍ତ ହୋଇ ସଦାସର୍ବଦା ନିରନ୍ତର ମୋତେ ଅର୍ଥାତ୍ ପୁରୁଷୋତ୍ତମଙ୍କୁ ସ୍ମରଣ କରନ୍ତି, ମୋଠାରେ ନିତ୍ୟନିରନ୍ତର ଯୁକ୍ତ ହୋଇଥିବା ସେହି ଯୋଗୀଙ୍କ ପାଇଁ ମୁଁ ସୁଲଭ ଅର୍ଥାତ୍ ମୁଁ ତାଙ୍କୁ ସହଜରେ ପ୍ରାପ୍ତ ହୋଇଯାଏ ॥ ୧୪ ॥

**ମାମୁପେତ୍ୟ ପୁନର୍ଜନ୍ମ, ଦୁଃଖାଲୟ-ମଶାଶ୍ୱତମ୍ ।**
**ନାପ୍ନୁବନ୍ତି ମହାତ୍ମାନଃ, ସଂସିଦ୍ଧିଂ ପରମାଂ ଗତାଃ ॥**

ପରମସିଦ୍ଧିପ୍ରାପ୍ତ ମହାତ୍ମାମାନେ ମୋତେ ପ୍ରାପ୍ତ ହୋଇ ଦୁଃଖର ଗୃହରୂପକ କ୍ଷଣଭଙ୍ଗୁର ପୁନର୍ଜନ୍ମ ପାଆନ୍ତି ନାହିଁ ॥ ୧୫ ॥

**ଆବ୍ରହ୍ମ-ଭୁବନାଲ୍-ଲୋକାଃ, ପୁନରା-ବର୍ତ୍ତିନୋଽର୍ଜୁନ ।**
**ମାମୁପେତ୍ୟ ତୁ କୌନ୍ତେୟ, ପୁନର୍ଜନ୍ମ ନ ବିଦ୍ୟତେ ॥**

ହେ ଅର୍ଜୁନ ! ବ୍ରହ୍ମଲୋକପର୍ଯ୍ୟନ୍ତ ସମସ୍ତ ଲୋକ ପୁନରାବର୍ତ୍ତୀ*; କିନ୍ତୁ ହେ କୁନ୍ତୀପୁତ୍ର ! ମୋତେ ପ୍ରାପ୍ତ ହେଲେ ପୁନର୍ଜନ୍ମ ହୁଏ ନାହିଁ; କାରଣ ମୁଁ କାଳାତୀତ ଏବଂ ସେସବୁ ବ୍ରହ୍ମାଦି ଲୋକ କାଳଦ୍ୱାରା ସୀମିତ ହୋଇଥିବାରୁ ଅନିତ୍ୟ ॥ ୧୬ ॥

**ସହସ୍ର-ଯୁଗ-ପର୍ଯ୍ୟନ୍ତ,-ମହର୍-ଯଦ୍-ବ୍ରହ୍ମଣୋ ବିଦୁଃ ।**
**ରାତ୍ରିଂ ଯୁଗ-ସହସ୍ରାନ୍ତାଂ, ତେଽହୋ-ରାତ୍ର-ବିଦୋ ଜନାଃ ॥**

ବ୍ରହ୍ମାଙ୍କର ଗୋଟିଏ ଦିନ ଏକସହସ୍ର ଚତୁର୍ଯୁଗୀ ଅବଧିବିଶିଷ୍ଟ ଏବଂ ଗୋଟିଏ ରାତ୍ରି ମଧ୍ୟ ଏକସହସ୍ର ଚତୁର୍ଯୁଗୀ ଅବଧିବିଶିଷ୍ଟ ବୋଲି ଯେଉଁ ପୁରୁଷମାନେ ତତ୍ତ୍ୱତଃ ଜାଣନ୍ତି☫, ସେହି ଯୋଗୀଜନମାନେ କାଳର ତତ୍ତ୍ୱ ଜାଣନ୍ତି ॥ ୧୭ ॥

**ଅବ୍ୟକ୍ତାଦ୍-ବ୍ୟକ୍ତୟଃ ସର୍ବାଃ, ପ୍ରଭବନ୍-ତ୍ୟହରାଗମେ ।**
**ରାତ୍ର୍ୟାଗମେ ପ୍ରଲୀୟନ୍ତେ, ତତ୍ରୈବା-ବ୍ୟକ୍ତ-ସଂଜ୍ଞକେ ॥**

---

* ଯେଉଁ ଲୋକକୁ ଗଲେ କିଛିକାଳ ପରେ ପୁଣି ଥରେ ସଂସାରରେ ଜନ୍ମହେବାକୁ ପଡ଼େ ।

☫ କାଳରୂପକ ଅବଧିବିଶିଷ୍ଟ ହୋଇଥିବାରୁ ବ୍ରହ୍ମଲୋକକୁ ବି ଅନିତ୍ୟ ବୋଲି ଜାଣନ୍ତି ।

ସକଳ ଚରାଚର ଜୀବମାନେ ବ୍ରହ୍ମାଙ୍କ ଦିନର ଆରମ୍ଭରେ ଅବ୍ୟକ୍ତରୁ ଅର୍ଥାତ୍ ବ୍ରହ୍ମାଙ୍କ ସୂକ୍ଷ୍ମଶରୀରରୁ ଉତ୍ପନ୍ନ ହୁଅନ୍ତି, ଏବଂ ବ୍ରହ୍ମାଙ୍କ ରାତ୍ରିର ଆରମ୍ଭରେ ବ୍ରହ୍ମାଙ୍କର ଅବ୍ୟକ୍ତ ନାମକ ସେହି ସୂକ୍ଷ୍ମଶରୀରରେ ହିଁ ଲୀନ ହୋଇଯାଆନ୍ତି ॥ ୧୮ ॥

**ଭୂତ-ଗ୍ରାମଃ ସ ଏବାୟଂ, ଭୂତ୍ୱା ଭୂତ୍ୱା ପ୍ରଲୀୟତେ ।**
**ରାତ୍ର୍ୟାଗମେଽବଶଃ ପାର୍ଥ, ପ୍ରଭବ-ତ୍ୟହରାଗମେ ॥**

ହେ ପାର୍ଥ ! ସେହି ଭୂତସମୁଦାୟ ବାରମ୍ବାର ଉତ୍ପନ୍ନ ହୋଇ ପ୍ରକୃତିର ପରବଶ ହେବାରୁ ରାତ୍ରିର ପ୍ରବେଶକାଳରେ ଲୀନ ହୋଇଯାଏ ଏବଂ ଦିନର ପ୍ରବେଶକାଳରେ ପୁନର୍ବାର ଉତ୍ପନ୍ନ ହୁଏ ॥ ୧୯ ॥

**ପରସ୍-ତସ୍ମାତ୍ତୁ ଭାବୋଽନ୍ୟୋ,-ଽବ୍ୟକ୍ତୋଽବ୍ୟକ୍ତାତ୍ ସନାତନଃ ।**
**ଯଃ ସ ସର୍ବେଷୁ ଭୂତେଷୁ, ନଶ୍ୟତ୍ସୁ ନ ବିନଶ୍ୟତି ॥**

ଉକ୍ତ ଅବ୍ୟକ୍ତଠାରୁ ମଧ୍ୟ ଯେଉଁ ଅତିଶ୍ରେଷ୍ଠ ଅର୍ଥାତ୍ ଯେଉଁ ବିଲକ୍ଷଣ ସନାତନ ଅବ୍ୟକ୍ତ ଭାବ ରହିଛି, ସେହି ପରମ ଦିବ୍ୟପୁରୁଷ, ସକଳ ଚରାଚର ପ୍ରାଣୀ ନଷ୍ଟ ହୋଇଗଲେ ମଧ୍ୟ ବିନାଶପ୍ରାପ୍ତ ହୁଅନ୍ତି ନାହିଁ ॥ ୨୦ ॥

**ଅବ୍ୟକ୍ତୋଽକ୍ଷର ଇତ୍ୟୁକ୍ତସ୍,-ତମାହୁଃ ପରମାଂ ଗତିମ୍ ।**
**ଯଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ, ତଦ୍ଧାମ ପରମଂ ମମ ॥**

ଯେଉଁ ଅବ୍ୟକ୍ତକୁ ଅକ୍ଷର ବୋଲି କୁହାଯାଇଛି, ସେହି ଅକ୍ଷର ନାମକ ଅବ୍ୟକ୍ତଭାବକୁ ପରମଗତି କହନ୍ତି ତଥା ଯେଉଁ

ସନାତନ ଅବ୍ୟକ୍ତଭାବ ପ୍ରାପ୍ତ ହେଲେ ମନୁଷ୍ୟମାନେ ଆଉ ଫେରି ଆସନ୍ତି ନାହିଁ, ତାହା ମୋର ପରମଧାମ ଅଟେ ॥ ୨୧ ॥

**ପୁରୁଷଃ ସ ପରଃ ପାର୍ଥ, ଭକ୍ତ୍ୟା ଲଭ୍ୟସ୍-ତ୍ୱନନ୍ୟୟା ।**
**ଯସ୍ୟାନ୍ତଃସ୍ଥାନି ଭୂତାନି, ଯେନ ସର୍ବମିଦଂ ତତମ୍ ॥**

ହେ ପାର୍ଥ ! ଯେଉଁ ପରମାତ୍ମାଙ୍କ ଅନ୍ତର୍ଗତ ହୋଇ ସକଳ ଭୂତ ଅଛନ୍ତି ଏବଂ ଯେଉଁ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଦ୍ୱାରା ଏହି ସମଗ୍ର ଜଗତ ପରିପୂର୍ଣ୍ଣ ହୋଇଛି, ସେହି ସନାତନ ଅବ୍ୟକ୍ତ ପରମ ପୁରୁଷ ଅନନ୍ୟ ଭକ୍ତିଦ୍ୱାରା ହିଁ ପ୍ରାପ୍ତ ହେବା ଯୋଗ୍ୟ ॥ ୨୨ ॥

**ଯତ୍ର କାଲେ ତ୍ୱନାବୃତ୍ତି,-ମାବୃତ୍ତିଂ ଚୈବ ଯୋଗିନଃ ।**
**ପ୍ରୟାତା ଯାନ୍ତି ତଂ କାଲଂ, ବକ୍ଷ୍ୟାମି ଭରତର୍ଷଭ ॥**

ହେ ଅର୍ଜୁନ ! ଯେଉଁ କାଳରେ ଶରୀର ଛାଡ଼ି ଯାଉଥିବା ଯୋଗୀମାନେ ପୁନର୍ଜନ୍ମ ହେଉ ନ ଥିବା ଗତି ପ୍ରାପ୍ତ ହୁଅନ୍ତି ଏବଂ ଯେଉଁ କାଳରେ ଶରୀର ଛାଡ଼ି ଯାଉଥିବା ଯୋଗୀମାନେ ପୁନର୍ଜନ୍ମ ହେଉଥିବା ଗତି ହିଁ ପ୍ରାପ୍ତ ହୁଅନ୍ତି, ମୁଁ ସେହି ଦୁଇ କାଳର ଅର୍ଥାତ୍ ଦୁଇ ମାର୍ଗର କଥା କହିବି ॥ ୨୩ ॥

**ଅଗ୍ନିର୍-ଜ୍ୟୋତିରହଃ ଶୁକ୍ଳଃ, ଷଣ୍-ମାସା ଉତ୍ତରାୟଣମ୍ ।**
**ତତ୍ର ପ୍ରୟାତା ଗଚ୍ଛନ୍ତି, ବ୍ରହ୍ମ ବ୍ରହ୍ମବିଦୋ ଜନାଃ ॥**

ଯେଉଁ ମାର୍ଗରେ ଜ୍ୟୋତିର୍ମୟ ଅଗ୍ନି—ଅଭିମାନୀ ଦେବତା, ଦିନର ଅଭିମାନୀ ଦେବତା, ଶୁକ୍ଳପକ୍ଷର ଅଭିମାନୀ ଦେବତା ଓ ଉତ୍ତରାୟଣର ଛଅମାସର ଅଭିମାନୀ ଦେବତା ଅଛନ୍ତି, ମୃତ୍ୟୁ

ପରେ ସେହି ମାର୍ଗରେ ଯାଇଥିବା ବ୍ରହ୍ମବେତ୍ତା ଯୋଗୀମାନେ ସେହି ଦେବତାମାନଙ୍କ ଦ୍ୱାରା କ୍ରମାନ୍ୱୟରେ ନିଆଯାଇ ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି ॥ ୨୪ ॥

**ଧୂମୋ ରାତ୍ରିସ୍-ତଥା କୃଷ୍ଣଃ, ଷଣ୍-ମାସା ଦକ୍ଷିଣାୟନମ୍ ।**
**ତତ୍ର ଚାନ୍ଦ୍ରମସଂ ଜ୍ୟୋତିର୍,-ଯୋଗୀ ପ୍ରାପ୍ୟ ନିବର୍ତ୍ତତେ ॥**

ଯେଉଁ ମାର୍ଗରେ ଧୂମାଭିମାନୀ ଦେବତା, ରାତ୍ରି-ଅଭିମାନୀ ଦେବତା, କୃଷ୍ଣପକ୍ଷର ଅଭିମାନୀ ଦେବତା ଏବଂ ଦକ୍ଷିଣାୟନ ଛଅ ମାସର ଅଭିମାନୀ ଦେବତା ଅଛନ୍ତି, ମୃତ୍ୟୁ ପରେ ସେହି ମାର୍ଗରେ ଯାଇଥିବା ସକାମ କର୍ମ କରିଥିବା ଯୋଗୀ ଉପରୋକ୍ତ ଦେବତାମାନଙ୍କ ଦ୍ୱାରା କ୍ରମଶଃ ଊର୍ଦ୍ଧ୍ୱଲୋକକୁ ନିଆଯାଇ, ଚନ୍ଦ୍ରମାଙ୍କ ଜ୍ୟୋତି ପ୍ରାପ୍ତ ହୋଇ, ସ୍ୱର୍ଗରେ ନିଜ ଶୁଭକର୍ମର ଫଳ ଭୋଗ କରିସାରି ଫେରି ଆସେ ॥ ୨୫ ॥

**ଶୁକ୍ଳ-କୃଷ୍ଣେ ଗତୀ ହ୍ୟେତେ, ଜଗତଃ ଶାଶ୍ୱତେ ମତେ ।**
**ଏକୟା ଯାତ୍ୟ-ନାବୃତ୍ତି,-ମନ୍ୟୟା-ବର୍ତ୍ତତେ ପୁନଃ ॥**

କାରଣ, ଜଗତରେ ଶୁକ୍ଳ ଓ କୃଷ୍ଣ—ଏହି ଦୁଇ ମାର୍ଗକୁ ଅର୍ଥାତ୍ ଦେବଯାନ ଓ ପିତୃଯାନ ମାର୍ଗକୁ ସନାତନ ବୋଲି ଗ୍ରହଣ କରାଯାଏ । ଏ ଦୁଇଟି ମଧ୍ୟରୁ ପ୍ରଥମଟି ଧରି ଗମନ କଲେ ଆଉ ପ୍ରତ୍ୟାବର୍ତ୍ତନ କରିବାକୁ ପଡ଼େ ନାହିଁ; ପରମଗତି ମିଳେ ଏବଂ ଅନ୍ୟଟି ଧରି ଗମନ କଲେ ପୁଣି ଫେରି ଆସିବାକୁ ହୁଏ ଅର୍ଥାତ୍ ଜନ୍ମ-ମୃତ୍ୟୁ ପ୍ରାପ୍ତ ହୁଏ ॥ ୨୬ ॥

**ନୈତେ ସୃତୀ ପାର୍ଥ ଜାନନ୍, ଯୋଗୀ ମୁହ୍ୟତି କଶ୍ଚନ ।**
**ତସ୍ମାତ୍ ସର୍ବେଷୁ କାଲେଷୁ, ଯୋଗ-ଯୁକ୍ତୋ ଭବାର୍ଜୁନ ॥**

ହେ ପାର୍ଥ ! ଏପରିଭାବରେ ଏହି ମାର୍ଗଦୁଇଟିକୁ ତତ୍ତ୍ୱତଃ ଜାଣିଗଲେ କୌଣସି ଯୋଗୀ ଆଉ ମୋହଗ୍ରସ୍ତ ହୁଅନ୍ତି ନାହିଁ। ତେଣୁ ହେ ଅର୍ଜୁନ ! ତୁମେ ସର୍ବଦା ସମବୁଦ୍ଧିରୂପକ ଯୋଗଦ୍ୱାରା ଯୁକ୍ତ ହୁଅ ଅର୍ଥାତ୍ ନିରନ୍ତର ମୋର ପ୍ରାପ୍ତିପାଇଁ ସାଧନାରତ ହୁଅ ॥ ୨୭ ॥

**ବେଦେଷୁ ଯଜ୍ଞେଷୁ ତପଃସୁ ଚୈବ**
**ଦାନେଷୁ ଯତ୍ ପୁଣ୍ୟ-ଫଲଂ ପ୍ରଦିଷ୍ଟମ୍ ।**
**ଅତ୍ୟେତି ତତ୍ ସର୍ବ-ମିଦଂ ବିଦିତ୍ୱା**
**ଯୋଗୀ ପରଂ ସ୍ଥାନ-ମୁପୈତି ଚାଦ୍ୟମ୍ ॥**

ଯୋଗୀ ପୁରୁଷ ଏହି ରହସ୍ୟ ତତ୍ତ୍ୱତଃ ଜାଣିଯାଇ ବେଦ ପଢ଼ିବାରେ ତଥା ଯଜ୍ଞ, ତପ ଓ ଦାନାଦି କର୍ମମାନଙ୍କରେ ଯେଉଁ ପୁଣ୍ୟଫଳ ମିଳେ ବୋଲି କୁହାଯାଇଛି, ସେସବୁକୁ ନିଃସନ୍ଦେହ ଉଲ୍ଲଂଘନ କରିଯାନ୍ତି ଏବଂ ସନାତନ ପରମପଦ ପ୍ରାପ୍ତ ହୁଅନ୍ତି ॥ ୨୮ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ଅକ୍ଷର-ବ୍ରହ୍ମ-ଯୋଗୋ ନାମ-ଅଷ୍ଟମୋଽଧ୍ୟାୟଃ ॥ ୮ ॥*



॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ନବମୋଽଧ୍ୟାୟଃ

*ଶ୍ରୀଭଗବାନୁବାଚ*

**ଇଦଂ ତୁ ତେ ଗୁହ୍ୟତମଂ, ପ୍ରବକ୍ଷ୍ୟା-ମ୍ୟନସୂୟବେ ।**
**ଜ୍ଞାନଂ ବିଜ୍ଞାନ-ସହିତଂ, ଯଜ୍-ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ ॥**

ଶ୍ରୀଭଗବାନ୍ କହିଲେ—ତୁମ ପରି ଦୋଷଦୃଷ୍ଟିଶୂନ୍ୟ ଭକ୍ତଙ୍କୁ ଏହି ପରମ ଗୋପନୀୟ ବିଜ୍ଞାନସହିତ ଜ୍ଞାନ ମୁଁ ପୁନର୍ବାର ଭଲଭାବରେ ବୁଝାଇ କହିଦେବି ଯେ, ତାହା ଜାଣି ତୁମେ ଦୁଃଖରୂପୀ ସଂସାରରୁ ମୁକ୍ତ ହୋଇଯିବ ॥ ୧ ॥

**ରାଜବିଦ୍ୟା ରାଜଗୁହ୍ୟଂ, ପବିତ୍ର-ମିଦ-ମୁତ୍ତମମ୍ ।**
**ପ୍ରତ୍ୟକ୍ଷା-ବଗମଂ ଧର୍ମ୍ୟଂ, ସୁସୁଖଂ କର୍ତ୍ତୁ-ମବ୍ୟୟମ୍ ॥**

ଏହି ବିଜ୍ଞାନସହିତ ଜ୍ଞାନ ହେଉଛି ସକଳ ବିଦ୍ୟାର ରାଜା, ସମସ୍ତ ଗୋପନୀୟ ରହସ୍ୟମାନଙ୍କର ରାଜା, ଅତ୍ୟନ୍ତ ପବିତ୍ର, ଅତି ଉତ୍ତମ, ପ୍ରତ୍ୟକ୍ଷଫଳଦାୟୀ ଓ ଧର୍ମଯୁକ୍ତ, ସାଧନା କରିବାରେ ଅତ୍ୟନ୍ତ ସୁଗମ ଓ ଅବିନାଶୀ ॥ ୨ ॥

**ଅଶ୍ରଦ୍-ଦଧାନାଃ ପୁରୁଷା, ଧର୍ମସ୍ୟାସ୍ୟ ପରନ୍-ତପ ।**
**ଅପ୍ରାପ୍ୟ ମାଂ ନିବର୍ତ୍ତନ୍ତେ, ମୃତ୍ୟୁ-ସଂସାର-ବର୍ତ୍ମନି ॥**

ହେ ପରନ୍ତପ ! ଉପରୋକ୍ତ ଧର୍ମରେ ଶ୍ରଦ୍ଧା ରଖୁ ନ ଥିବା

ପୁରୁଷମାନେ ମୋତେ ପ୍ରାପ୍ତ ନ ହୋଇ ମୃତ୍ୟୁରୂପକ ସଂସାର-ଚକ୍ରରେ ଘୂରିବୁଲନ୍ତି ॥ ୩ ॥

**ମୟା ତତ-ମିଦଂ ସର୍ବଂ, ଜଗଦ-ବ୍ୟକ୍ତ-ମୂର୍ତ୍ତିନା ।**
**ମତ୍‌ସ୍ଥାନି ସର୍ବ-ଭୂତାନି, ନ ଚାହଂ ତେଷ୍ୱ-ବସ୍ଥିତଃ ॥**

ମୋ ଦ୍ୱାରା, ଅର୍ଥାତ୍ ନିରାକାର ପରମାତ୍ମାଙ୍କ ଦ୍ୱାରା ଏହି ସମସ୍ତ ବିଶ୍ୱ ଜଳଦ୍ୱାରା ବରଫ ପରି ପରିପୂର୍ଣ୍ଣ ହୋଇ ରହିଛି ଏବଂ ସକଳଭୂତ ମୋ ଅନ୍ତର୍ଗତ ସଂକଳ୍ପର ଆଧାରରେ ଅବସ୍ଥିତ, କିନ୍ତୁ ପ୍ରକୃତରେ ମୁଁ ସେମାନଙ୍କ ମଧ୍ୟରେ ଅବସ୍ଥିତ ନୁହେଁ ॥ ୪ ॥

**ନ ଚ ମତ୍‌ସ୍ଥାନି ଭୂତାନି, ପଶ୍ୟ ମେ ଯୋଗ-ମୈଶ୍ୱରମ୍ ।**
**ଭୂତ-ଭୃନ୍-ନ ଚ ଭୂତସ୍ଥୋ, ମମାତ୍ମା ଭୂତ-ଭାବନଃ ॥**

ସେହି ସମସ୍ତ ଭୂତ ମୋ ଭିତରେ ଅବସ୍ଥିତ ନୁହନ୍ତି; କିନ୍ତୁ ମୋର ଈଶ୍ୱରୀୟ ଯୋଗଶକ୍ତିକୁ ଦେଖ ଯେ, ପ୍ରାଣୀମାନଙ୍କର ଧାରଣ-ପୋଷଣକାରୀ ଏବଂ ପ୍ରାଣୀମାନଙ୍କର ସୃଷ୍ଟିକର୍ତ୍ତା ହୋଇ ମଧ୍ୟ ମୋର ଆତ୍ମା ପ୍ରକୃତରେ ପ୍ରାଣୀମାନଙ୍କ ମଧ୍ୟରେ ଅବସ୍ଥିତ ନୁହେଁ ॥ ୫ ॥

**ଯଥାକାଶ-ସ୍ଥିତୋ ନିତ୍ୟଂ, ବାୟୁଃ ସର୍ବତ୍ରଗୋ ମହାନ୍ ।**
**ତଥା ସର୍ବାଣି ଭୂତାନି, ମତ୍‌ସ୍ଥାନୀ-ତ୍ୟୁପଧାରୟ ॥**

ଆକାଶରୁ ଉତ୍ପନ୍ନ ହୋଇଥିବା ଓ ସର୍ବତ୍ର ବିଚରଣ କରୁଥିବା ମହାନ୍ ବାୟୁ ଯେପରି ସର୍ବଦା ଆକାଶରେ ହିଁ ଅବସ୍ଥିତ ରହେ, ମୋର ସଂକଳ୍ପଦ୍ୱାରା ଉତ୍ପନ୍ନ ହୋଇଥିବା ସମସ୍ତ ଭୂତ ସେହିପରି ମୋ ମଧ୍ୟରେ ଅବସ୍ଥିତ ବୋଲି ଜାଣ ॥ ୬ ॥

**ସର୍ବ-ଭୂତାନି କୌନ୍ତେୟ, ପ୍ରକୃତିଂ ଯାନ୍ତି ମାମିକାମ୍ ।**
**କଳ୍ପ-କ୍ଷୟେ ପୁନସ୍-ତାନି, କଳ୍ପାଦୌ ବିସୃଜାମ୍ୟହମ୍ ॥**

ହେ ଅର୍ଜୁନ ! କଳ୍ପଶେଷରେ ସକଳ ଭୂତ ମୋ ପ୍ରକୃତିକୁ ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ମୋର ପ୍ରକୃତିରେ ଲୀନ ହୁଅନ୍ତି ଏବଂ କଳ୍ପର ଆରମ୍ଭରେ ସେମାନଙ୍କୁ ମୁଁ ପୁଣି ଥରେ ରଚନା କରେ ॥୭॥

**ପ୍ରକୃତିଂ ସ୍ୱା-ମବଷ୍ଟଭ୍ୟ, ବିସୃଜାମି ପୁନଃ ପୁନଃ ।**
**ଭୂତ-ଗ୍ରାମ-ମିମଂ କୃତ୍ସ୍ନ,-ମବଶଂ ପ୍ରକୃତେର୍-ବଶାତ୍ ॥**

ମୁଁ ମୋ ନିଜ ପ୍ରକୃତିକୁ ଗ୍ରହଣ କରି ସ୍ୱଭାବବଶତଃ ପରତନ୍ତ୍ର ହୋଇଥିବା ଏହି ସମସ୍ତ ଭୂତସମୁଦାୟକୁ ସେମାନଙ୍କ କର୍ମ ଅନୁସାରେ ବାରମ୍ବାର ସୃଷ୍ଟି କରେ ॥ ୮ ॥

**ନ ଚ ମାଂ ତାନି କର୍ମାଣି, ନିବଧ୍ନନ୍ତି ଧନଞ୍ଜୟ ।**
**ଉଦାସୀନ-ବଦାସୀନ,-ମସକ୍ତଂ ତେଷୁ କର୍ମସୁ ॥**

ହେ ଅର୍ଜୁନ ! ମୁଁ ସେସବୁ କର୍ମରେ ଅନାସକ୍ତ ଓ ଉଦାସୀନସଦୃଶ* ଅବସ୍ଥାନ କରୁଥିବାରୁ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ ସେସବୁ କର୍ମ ବାନ୍ଧନ୍ତି ନାହିଁ ॥ ୯ ॥

**ମୟାଧ୍ୟକ୍ଷେଣ ପ୍ରକୃତିଃ, ସୂୟତେ ସଚରାଚରମ୍ ।**
**ହେତୁନାନେନ କୌନ୍ତେୟ, ଜଗଦ୍-ବିପରିବର୍ତ୍ତତେ ॥**

ହେ ଅର୍ଜୁନ ! ଅଧ୍ୟକ୍ଷରୂପୀ ମୋର ଶକ୍ତି ଓ ସହାୟତାରେ ପ୍ରକୃତି ଚରାଚରସହିତ ସମସ୍ତ ଜଗତକୁ ସୃଷ୍ଟି କରେ ଏବଂ

* ଯେ କର୍ତ୍ତୃତ୍ୱ ଅଭିମାନରୁ ରହିତ ହୋଇ ସମସ୍ତ କର୍ମ କରନ୍ତି ।

ସେହିହେତୁ ହିଁ ସଂସାରଚକ୍ର ଘୂରିଗ୍ଲଲିଛି ॥ ୧୦ ॥

**ଅବଜାନନ୍ତି ମାଂ ମୂଢ଼ା, ମାନୁଷୀଂ ତନୁ-ମାଶ୍ରିତମ୍ ।**
**ପରଂ ଭାବ-ମଜାନନ୍ତୋ, ମମ ଭୂତ-ମହେଶ୍ୱରମ୍ ॥**

ମୋର ପରମଭାବ* ଜାଣି ନ ଥିବା ମୂଢ଼ ଲୋକମାନେ ମନୁଷ୍ୟଶରୀର ଧାରଣ କରିଥିବା ସକଳଭୂତଙ୍କ ମହାନ୍ ଈଶ୍ୱର-ସ୍ୱରୂପ ମୋତେ ତୁଚ୍ଛଦୃଷ୍ଟିରେ ଦେଖନ୍ତି ଅର୍ଥାତ୍ ନିଜର ଯୋଗମାୟା-ଦ୍ୱାରା ସଂସାରର ଉଦ୍ଧାରନିମନ୍ତେ ମନୁଷ୍ୟରୂପରେ ବିଚରଣ କରୁଥିବା ମୋତେ ସାଧାରଣ ମନୁଷ୍ୟ ବୋଲି ଭାବନ୍ତି ॥ ୧୧ ॥

**ମୋଘାଶା ମୋଘ-କର୍ମାଣୋ, ମୋଘଜ୍ଞାନା ବିଚେତସଃ ।**
**ରାକ୍ଷସୀ-ମାସୁରୀଂ ଚୈବ, ପ୍ରକୃତିଂ ମୋହିନୀଂ ଶ୍ରିତାଃ ॥**

ବ୍ୟର୍ଥ ଆଶା ରଖିଥିବା, ବ୍ୟର୍ଥ କର୍ମ କରୁଥିବା ଓ ବ୍ୟର୍ଥ ଜ୍ଞାନଯୁକ୍ତ ହୋଇଥିବା ସେହି ବିକ୍ଷିପ୍ତଚିତ୍ତ ଅଜ୍ଞାନୀମାନେ ରାକ୍ଷସୀ, ଆସୁରୀ♆ ଓ ମୋହିନୀ ପ୍ରକୃତି ହିଁ ଧାରଣ କରି ରହନ୍ତି ॥ ୧୨ ॥

**ମହାତ୍ମାନସ୍-ତୁ ମାଂ ପାର୍ଥ, ଦୈବୀଂ ପ୍ରକୃତି-ମାଶ୍ରିତାଃ ।**
**ଭଜନ୍-ତ୍ୟନନ୍ୟ-ମନସୋ, ଜ୍ଞାତ୍ୱା ଭୂତାଦି-ମବ୍ୟୟମ୍ ॥**

କିନ୍ତୁ ହେ କୁନ୍ତୀପୁତ୍ର ! ଦୈବୀପ୍ରକୃତିର✦ ଆଶ୍ରିତ ମହାତ୍ମାମାନେ ମୋତେ ସକଳ ଭୂତଙ୍କର ସନାତନ କାରଣ

---

* ସପ୍ତମ ଅଧ୍ୟାୟର ୨୪ ଶ୍ଲୋକ ଦେଖନ୍ତୁ ।

♆ ୧୬ ଅଧ୍ୟାୟର ୪ର୍ଥ ଓ ୭ମରୁ ୨୧ତମ ଶ୍ଲୋକରେ ବର୍ଣ୍ଣିତ ଆସୁରୀ ସମ୍ପଦ ଦେଖନ୍ତୁ ।

✦ ୧୬ଶ ଅଧ୍ୟାୟର ୧ମରୁ ୩ୟ ଶ୍ଲୋକ ଦେଖନ୍ତୁ !

ଓ ଅବିନାଶୀ ଅକ୍ଷରସ୍ୱରୂପ ଜାଣି ଅନନ୍ୟମନରେ ଯୁକ୍ତ ହୋଇ ନିରନ୍ତର ମୋର ଭଜନ କରନ୍ତି ॥ ୧୩ ॥

**ସତତଂ କୀର୍ତ୍ତୟନ୍ତୋ ମାଂ, ଯତନ୍ତଶ୍‌-ଚ ଦୃଢ-ବ୍ରତାଃ ।**
**ନମସ୍ୟନ୍ତଶ୍‌-ଚ ମାଂ ଭକ୍ତ୍ୟା, ନିତ୍ୟ-ଯୁକ୍ତା ଉପାସତେ ॥**

ସେହି ଦୃଢ଼ନିଶ୍ଚୟୀ ଭକ୍ତମାନେ ନିରନ୍ତର ମୋର ନାମ ଓ ଗୁଣ କୀର୍ତ୍ତନ କରି କରି, ମୋର ପ୍ରାପ୍ତିପାଇଁ ଯତ୍ନ କରି କରି ଏବଂ ମୋତେ ବାରମ୍ବାର ପ୍ରଣାମ କରି, ନିରନ୍ତର ମୋର ଧ୍ୟାନରେ ଯୁକ୍ତ ହୋଇ ଅନନ୍ୟ ପ୍ରେମରେ ମୋତେ ଉପାସନା କରନ୍ତି ॥ ୧୪ ॥

**ଜ୍ଞାନ-ଯଜ୍ଞେନ ଚାପ୍ୟନ୍ୟେ, ଯଜନ୍ତୋ ମାମୁପାସତେ ।**
**ଏକତ୍ୱେନ ପୃଥକ୍‌ତ୍ୱେନ, ବହୁଧା ବିଶ୍ୱତୋ-ମୁଖମ୍‌ ॥**

ଅନ୍ୟ କେତେକ ଜ୍ଞାନଯୋଗୀ ମୋତେ ନିର୍ଗୁଣ-ନିରାକାର ବ୍ରହ୍ମ ବୋଲି ଜାଣି ଜ୍ଞାନଯଜ୍ଞଦ୍ୱାରା ଅଭିନ୍ନଭାବରେ ପୂଜା କରି ଉପାସନା କରନ୍ତି ଏବଂ ଅନ୍ୟ କେତେକ ମନୁଷ୍ୟ ବହୁପ୍ରକାରରେ ସ୍ଥିତ ମୋତେ ଅର୍ଥାତ୍‌ ବିରାଟସ୍ୱରୂପ ପରମେଶ୍ୱରଙ୍କୁ ପୃଥକ୍‌-ଭାବରେ ଉପାସନା କରନ୍ତି ॥ ୧୫ ॥

**ଅହଂ କ୍ରତୁ-ରହଂ ଯଜ୍ଞଃ, ସ୍ୱଧାହ-ମହ-ମୌଷଧମ୍‌ ।**
**ମନ୍ତ୍ରୋଽହ-ମହ-ମେବାଜ୍ୟ,-ମହମଗ୍ନି-ରହଂ ହୁତମ୍‌ ॥**

ମୁଁ କ୍ରତୁ; ମୁଁ ଯଜ୍ଞ; ମୁଁ ସ୍ୱଧା; ମୁଁ ଔଷଧ; ମୁଁ ମନ୍ତ୍ର; ମୁଁ ଘୃତ; ମୁଁ ଅଗ୍ନି ଏବଂ ମୁଁ ହିଁ ହବନରୂପୀ କ୍ରିୟା ॥ ୧୬ ॥

**ପିତାହମସ୍ୟ ଜଗତୋ, ମାତା ଧାତା ପିତାମହଃ ।**
**ବେଦ୍ୟଂ ପବିତ୍ର-ମୋଙ୍କାର, ଋକ୍-ସାମ-ଯଜୁରେବ ଚ ॥**

ଏହି ସମଗ୍ର ଜଗତର ଧାତା ଅର୍ଥାତ୍ ଧାରଣକର୍ତ୍ତା ଓ କର୍ମଫଳଦାତା, ପିତା, ମାତା, ପିତାମହ, ଜାଣିବାର ଯୋଗ୍ୟ ବସ୍ତୁ, ପବିତ୍ର, ଓଁକାର ତଥା ଋଗ୍‌ବେଦ, ସାମବେଦ ଓ ଯଜୁର୍ବେଦ ମଧ୍ୟ ମୁଁ ହିଁ ଅଟେ ॥ ୧୭ ॥

**ଗତିର୍-ଭର୍ତ୍ତା ପ୍ରଭୁଃ ସାକ୍ଷୀ, ନିବାସଃ ଶରଣଂ ସୁହୃତ୍ ।**
**ପ୍ରଭବଃ ପ୍ରଳୟଃ ସ୍ଥାନଂ, ନିଧାନଂ ବୀଜ-ମବ୍ୟୟମ୍ ॥**

ପ୍ରାପ୍ତିହେବାଯୋଗ୍ୟ ପରମଧାମ, ସମସ୍ତଙ୍କର ଭରଣ-ପୋଷଣକାରୀ, ସମସ୍ତଙ୍କର ସ୍ୱାମୀ, ଶୁଭାଶୁଭ ଦ୍ରଷ୍ଟା, ସମସ୍ତଙ୍କର ବାସସ୍ଥାନ, ଶରଣ ନେବାର ଯୋଗ୍ୟ, ପ୍ରତ୍ୟୁପକାର ନ ଗ୍ରହିଁ ହିତକାରୀ, ସମସ୍ତଙ୍କର ଉତ୍ପତ୍ତି ଓ ପ୍ରଳୟର ହେତୁ, ସ୍ଥିତିର ଆଧାର, ନିଧାନ* ଓ ଅବିନାଶୀ କାରଣ ମଧ୍ୟ ମୁଁ ହିଁ ଅଟେ ॥ ୧୮ ॥

**ତପାମ୍ୟହ-ମହଂ ବର୍ଷଂ, ନିଗୃହ୍ଣା-ମ୍ୟୁତ୍-ସୃଜାମି ଚ ।**
**ଅମୃତଂ ଚୈବ ମୃତ୍ୟୁଶ୍-ଚ, ସଦସଚ୍ଚାହ-ମର୍ଜୁନ ॥**

ମୁଁ ହିଁ ସୂର୍ଯ୍ୟରୂପରେ ଉତ୍ତାପ ପ୍ରଦାନ କରେ, ମୁଁ ବର୍ଷାକୁ ଆକର୍ଷଣ କରେ ଏବଂ ବର୍ଷା କରେ । ହେ ଅର୍ଜୁନ ! ମୁଁ ହିଁ ଅମୃତ ଏବଂ ମୃତ୍ୟୁ ତଥା ସତ୍-ଅସତ୍ ମଧ୍ୟ ମୁଁ ହିଁ ଅଟେ ॥ ୧୯ ॥

* ପ୍ରଳୟକାଳରେ ଯେଉଁଥିରେ ସମସ୍ତଭୂତ ସୂକ୍ଷ୍ମରୂପେ ଲୟ ହୋଇଯାନ୍ତି, ତାହାକୁ ନିଧାନ କହନ୍ତି ।

**ତ୍ରୈବିଦ୍ୟା ମାଂ ସୋମପାଃ ପୂତ-ପାପା**
**ଯଜ୍ଞୈରିଷ୍ଟ୍ୱା ସ୍ୱର୍-ଗତିଂ ପ୍ରାର୍ଥୟନ୍ତେ ।**
**ତେ ପୁଣ୍ୟ-ମାସାଦ୍ୟ ସୁରେନ୍ଦ୍ର-ଲୋକ-**
**ମଶ୍ନନ୍ତି ଦିବ୍ୟାନ୍-ଦିବି ଦେବ-ଭୋଗାନ୍ ॥**

ତିନି ବେଦରେ ବିଧାନ କରାଯାଇଥିବା ସକାମକର୍ମକାରୀ, (ଯଜ୍ଞର) ସୋମରସ ପାନ କରୁଥିବା ନିଷ୍ପାପ ପୁରୁଷମାନେ ମୋତେ ଯଜ୍ଞମାନଙ୍କ ଦ୍ୱାରା* ପୂଜା କରି ସ୍ୱର୍ଗପ୍ରାପ୍ତି ଗ୍ରହାଁନ୍ତି । ସେମାନେ ନିଜ ପୁଣ୍ୟମାନଙ୍କର ଫଳସ୍ୱରୂପ ସ୍ୱର୍ଗଲୋକକୁ ପାଇ ସ୍ୱର୍ଗରେ ଦେବତାମାନଙ୍କର ଦିବ୍ୟ ଭୋଗମାନ ଉପଭୋଗ କରନ୍ତି ॥ ୨୦ ॥

**ତେ ତଂ ଭୁକ୍ତ୍ୱା ସ୍ୱର୍ଗ-ଲୋକଂ ବିଶାଲଂ**
**କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟ-ଲୋକଂ ବିଶନ୍ତି ।**
**ଏବଂ ତ୍ରୟୀ-ଧର୍ମ-ମନୁ-ପ୍ରପନ୍ନା-**
**ଗତାଗତଂ କାମ-କାମା ଲଭନ୍ତେ ॥**

ସେମାନେ ସେହି ବିଶାଳ ସ୍ୱର୍ଗଲୋକ ଭୋଗ କରି ପୁଣ୍ୟ କ୍ଷୀଣ ହୋଇଯିବା ପରେ ମୃତ୍ୟୁଲୋକକୁ ପ୍ରାପ୍ତ ହୁଅନ୍ତି । ଏହିପରି ସ୍ୱର୍ଗପ୍ରାପ୍ତିର ସାଧନରୂପକ ତିନି ବେଦରେ କୁହାଯାଇଥିବା ସକାମ କର୍ମର ଆଶ୍ରୟ ନେଇଥିବା ଏବଂ ନାନା ଭୋଗ କାମନା କରୁଥିବା ପୁରୁଷମାନେ ବାରମ୍ବାର ଗମନାଗମନ ପ୍ରାପ୍ତ ହୁଅନ୍ତି ଅର୍ଥାତ୍

* ସ୍ୱର୍ଗପ୍ରାପ୍ତିର ପ୍ରତିବନ୍ଧକରୂପକ ଦେବଋଣ-ପାପରୁ ମୁକ୍ତ ହେବା ନିମନ୍ତେ ମୋତେ ଯଜ୍ଞଦ୍ୱାରା ପୂଜା କରନ୍ତି ବୋଲି ବୁଝନ୍ତୁ ।

ପୁଣ୍ୟବଳରେ ସ୍ୱର୍ଗକୁ ଯାଆନ୍ତି ଏବଂ ପୁଣ୍ୟ କ୍ଷୀଣ ହୋଇଗଲେ ମୃତ୍ୟୁଲୋକକୁ ଫେରିଆସନ୍ତି ॥ ୨୧ ॥

**ଅନନ୍ୟାଶ୍‌-ଚିନ୍ତୟନ୍ତୋ ମାଂ, ୟେ ଜନାଃ ପର୍ଯ୍ୟୁପାସତେ ।**
**ତେଷାଂ ନିତ୍ୟାଭି-ୟୁକ୍ତାନାଂ, ୟୋଗ-କ୍ଷେମଂ ବହାମ୍ୟହମ୍‌ ॥**

ଯେଉଁ ଅନନ୍ୟପ୍ରେମୀ ଭକ୍ତଜନମାନେ ମୋତେ ଅର୍ଥାତ୍‌ ପରମେଶ୍ୱରଙ୍କୁ ନିରନ୍ତର ଚିନ୍ତନପୂର୍ବକ ନିଷ୍କାମଭାବରେ ଭଜନ କରନ୍ତି, ନିତ୍ୟନିରନ୍ତର ମୋର ଚିନ୍ତନ କରୁଥିବା ସେହି ପୁରୁଷ-ମାନଙ୍କର ଯୋଗକ୍ଷେମ ମୁଁ ସ୍ୱୟଂ* ବହନ କରେ ॥ ୨୨ ॥

**ୟେଽପ୍ୟନ୍ୟ-ଦେବତା ଭକ୍ତା, ୟଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।**
**ତେଽପି ମାମେବ କୌନ୍ତେୟ, ୟଜନ୍ତ୍ୟ-ବିଧି-ପୂର୍ବକମ୍‌ ॥**

ହେ ଅର୍ଜୁନ ! ଯେଉଁ ସକାମ ଭକ୍ତମାନେ ଶ୍ରଦ୍ଧାଯୁକ୍ତ ହୋଇ ଅନ୍ୟ ଦେବତାମାନଙ୍କୁ ପୂଜା କରନ୍ତି, ସେମାନେ ମଧ୍ୟ ମୋତେ ହିଁ ପୂଜା କରିଥାନ୍ତି; କିନ୍ତୁ ସେମାନଙ୍କର ସେହି ପୂଜା ଅବିଧିପୂର୍ବକ ଅର୍ଥାତ୍‌ ଅଜ୍ଞାନପୂର୍ବକ ହୋଇଥାଏ ॥ ୨୩ ॥

**ଅହଂ ହି ସର୍ବ-ୟଜ୍ଞାନାଂ, ଭୋକ୍ତା ଚ ପ୍ରଭୁ-ରେବ ଚ ।**
**ନ ତୁ ମାମଭି-ଜାନନ୍ତି, ତତ୍ତ୍ୱେନାତଶ୍‌-ଚ୍ୟବନ୍ତି ତେ ॥**

କାରଣ ସକଳ ଯଜ୍ଞର ଭୋକ୍ତା ଓ ସ୍ୱାମୀ ମଧ୍ୟ ମୁଁ ହିଁ ଅଟେ । କିନ୍ତୁ ସେମାନେ ମୋତେ ଅର୍ଥାତ୍‌ ପରମେଶ୍ୱରଙ୍କୁ ତତ୍ତ୍ୱତଃ

---

* ଭଗବତ୍‌ସ୍ୱରୂପ ପ୍ରାପ୍ତିକୁ ଯୋଗ ଓ ଭଗବତ୍‌ ପ୍ରାପ୍ତିପାଇଁ କରାଯାଉଥିବା ସାଧନାର ରକ୍ଷା କରିବାକୁ କ୍ଷେମ ବୋଲାଯାଏ ।

ଜାଣନ୍ତି ନାହିଁ; ତେଣୁ ସେମାନଙ୍କର ପତନ ହୁଏ ଅର୍ଥାତ୍ ସେମାନେ ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ॥ ୨୪ ॥

**ଯାନ୍ତି ଦେବ-ବ୍ରତା ଦେବାନ୍, ପିତୃନ୍-ଯାନ୍ତି ପିତୃ-ବ୍ରତାଃ ।**
**ଭୂତାନି ଯାନ୍ତି ଭୂତେଜ୍ୟା, ଯାନ୍ତି ମଦ୍‌ଯାଜିନୋଽପି ମାମ୍ ॥**

ଦେବତାମାନଙ୍କୁ ପୂଜା କରୁଥିବା ମନୁଷ୍ୟମାନେ ଦେବତାମାନଙ୍କୁ ପ୍ରାପ୍ତ ହୁଅନ୍ତି; ପିତୃମାନଙ୍କୁ ପୂଜା କରୁଥିବା ମନୁଷ୍ୟମାନେ ପିତୃମାନଙ୍କୁ ପ୍ରାପ୍ତ ହୁଅନ୍ତି; ଭୂତପ୍ରେତଙ୍କୁ ପୂଜା କରୁଥିବା ମନୁଷ୍ୟମାନେ ଭୂତପ୍ରେତଙ୍କୁ ପ୍ରାପ୍ତ ହୁଅନ୍ତି ଏବଂ ମୋତେ ପୂଜା କରୁଥିବା ଭକ୍ତମାନେ ମୋତେ ହିଁ ପ୍ରାପ୍ତ ହୁଅନ୍ତି । ତେଣୁ ମୋର ଭକ୍ତମାନଙ୍କର ପୁନର୍ଜନ୍ମ ହୁଏ ନାହିଁ* ॥ ୨୫ ॥

**ପତ୍ରଂ ପୁଷ୍ପଂ ଫଳଂ ତୋୟଂ, ଯୋ ମେ ଭକ୍ତ୍ୟା ପ୍ରୟଚ୍ଛତି ।**
**ତଦହଂ ଭକ୍ତ୍ୟୁପ-ହୃତ,-ମଶ୍ନାମି ପ୍ରୟତାତ୍ମନଃ ॥**

ଯେକେହି ଭକ୍ତ ମୋତେ ପ୍ରେମର ସହିତ ପତ୍ର, ପୁଷ୍ପ, ଫଳ, ଜଳ ଆଦି ଅର୍ପଣ କଲେ, ସେହି ଶୁଦ୍ଧବୁଦ୍ଧି ନିଷ୍କାମପ୍ରେମୀ ଭକ୍ତଙ୍କ ଦ୍ୱାରା ପ୍ରେମପୂର୍ବକ ଅର୍ପିତ ହୋଇଥିବା ସେହି ପତ୍ର-ପୁଷ୍ପାଦି ମୁଁ ସଗୁଣରୂପରେ ପ୍ରକଟ ହୋଇ ପ୍ରୀତିପୂର୍ବକ ଭୋଜନ କରେ ॥ ୨୬ ॥

**ଯତ୍-କରୋଷି ଯଦ-ଶ୍ନାସି, ଯଜ୍-ଜୁହୋଷି ଦଦାସି ଯତ୍ ।**
**ଯତ୍-ତପସ୍ୟସି କୌନ୍ତେୟ, ତତ୍-କୁରୁଷ୍ୱ ମଦର୍ପଣମ୍ ॥**

---

* ଅଷ୍ଟମ ଅଧ୍ୟାୟ ୧୬ତମ ଶ୍ଳୋକ ଦେଖନ୍ତୁ ।

ହେ ଅର୍ଜୁନ ! ତୁମେ ଯାହାକିଛି କର୍ମ କରୁଛ, ଯାହାକିଛି ଖାଉଛ, ଯାହାକିଛି ହବନ କରୁଛ, ଯାହାକିଛି ଦାନ କରୁଛ ଏବଂ ଯାହାକିଛି ତପ କରୁଛ, ସେସବୁ ମୋତେ ଅର୍ପଣ କର ॥ ୨୭ ॥

**ଶୁଭାଶୁଭ-ଫଳୈରେବଂ, ମୋକ୍ଷ୍ୟସେ କର୍ମ-ବନ୍ଧନୈଃ ।**
**ସଂନ୍ୟାସ-ଯୋଗ-ଯୁକ୍ତାତ୍ମା, ବିମୁକ୍ତୋ ମାମୁପୈଷ୍ୟସି ॥**

ଏପରିଭାବରେ, ଯେଉଁଥିରେ ସମସ୍ତ କର୍ମ ମୋତେ ଅର୍ପଣ କରାଯାଏ, ସେହି ସନ୍ନ୍ୟାସଯୋଗରେ ଯୁକ୍ତଚିତ୍ତ ହୋଇ ଅର୍ଥାତ୍ ଫଳାସକ୍ତି ତ୍ୟାଗପୂର୍ବକ ସମର୍ପଣବୁଦ୍ଧିରେ କର୍ତ୍ତବ୍ୟକର୍ମ କରି, ତୁମେ ଶୁଭାଶୁଭଫଳରୂପକ କର୍ମବନ୍ଧନରୁ ମୁକ୍ତ ହୋଇଯିବ ଏବଂ ସେଥିରୁ ମୁକ୍ତ ହୋଇ ମୋତେ ପ୍ରାପ୍ତ ହେବ ॥ ୨୮ ॥

**ସମୋଽହଂ ସର୍ବ-ଭୂତେଷୁ, ନ ମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ ।**
**ଯେ ଭଜନ୍ତି ତୁ ମାଂ ଭକ୍ତ୍ୟା, ମୟି ତେ ତେଷୁ ଚାପ୍ୟହମ୍ ॥**

ମୁଁ ସକଳ ଭୂତଙ୍କ ଠାରେ ସମଭାବରେ ବ୍ୟାପକ; ମୋର କେହି ଅପ୍ରିୟ ନୁହନ୍ତି, କି କେହି ପ୍ରିୟ ନୁହନ୍ତି; କିନ୍ତୁ ଯେଉଁ ଭକ୍ତମାନେ ମୋତେ ପ୍ରେମରେ ଭଜନ କରନ୍ତି, ସେମାନେ ମୋ ମଧ୍ୟରେ ଥାଆନ୍ତି ଓ ମୁଁ ସେମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ପ୍ରକଟ* ହୋଇଥାଏ ॥ ୨୯ ॥

---

* ଅଗ୍ନି ଯେପରି ସର୍ବତ୍ର ବ୍ୟାପ୍ତ ରହିଥିଲେ ବି ପ୍ରତ୍ୟକ୍ଷ ହୁଏ ନାହିଁ; ପ୍ରଜ୍ୱଳିତ ହେଲେ ହିଁ ପ୍ରତ୍ୟକ୍ଷ ହୁଏ, ପରମାତ୍ମା ସେହିପରି ସର୍ବତ୍ର ବ୍ୟାପ୍ତ ହୋଇଥିଲେ ବି ସମସ୍ତଙ୍କୁ ପ୍ରତ୍ୟକ୍ଷ ହୁଅନ୍ତି ନାହିଁ; ଭକ୍ତିର ସହିତ ଭଜନ କଲେ ପ୍ରକଟିତ ହୁଅନ୍ତି ।

**ଅପି ଚେତ୍-ସୁଦୁରାଗ୍ରୋ, ଭଜତେ ମାମନନ୍ୟ-ଭାକ୍ ।**
**ସାଧୁରେବ ସ ମନ୍ତବ୍ୟଃ, ସମ୍ୟଗ୍-ବ୍ୟବସିତୋ ହି ସଃ ॥**

ଯଦି କୌଣସି ଅତିଶୟ ଦୁରାଗ୍ରୀ ମଧ୍ୟ ଅନନ୍ୟଭାବରେ ମୋର ଭକ୍ତ ହୋଇ ମୋତେ ଭଜନ କରେ, ତେବେ ସେ ବି ସାଧୁ ବୋଲି ଗଣାଯିବ; କାରଣ ସେ ଯଥାର୍ଥ ନିଶ୍ଚୟ କରିଥାଏ ଯେ, ପରମେଶ୍ୱରଙ୍କ ଭଜନ ସମାନ ଅନ୍ୟ କିଛି ନାହିଁ ॥ ୩୦ ॥

**କ୍ଷିପ୍ରଂ ଭବତି ଧର୍ମାତ୍ମା, ଶଶ୍ୱଚ୍-ଛାନ୍ତିଂ ନିଗଚ୍ଛତି ।**
**କୌନ୍ତେୟ ପ୍ରତି-ଜାନୀହି, ନ ମେ ଭକ୍ତଃ ପ୍ରଣଶ୍ୟତି ॥**

ତେଣୁ ସେ ଶୀଘ୍ର ହିଁ ଧର୍ମାତ୍ମା ହୋଇଯାଏ ଏବଂ ଚିରନ୍ତନ ଶାନ୍ତି ପ୍ରାପ୍ତ ହୋଇଯାଏ । ହେ ଅର୍ଜୁନ ! ତୁମେ ଏହା ନିଶ୍ଚିତ ସତ୍ୟ ବୋଲି ଜାଣ ଯେ, ମୋର ଭକ୍ତଙ୍କର ବିନାଶ ହୁଏ ନାହିଁ ॥ ୩୧ ॥

**ମାଂ ହି ପାର୍ଥ ବ୍ୟପାଶ୍ରିତ୍ୟ, ୟେଽପି ସ୍ୟୁଃ ପାପ-ୟୋନୟଃ ।**
**ସ୍ତ୍ରିୟୋ ବୈଶ୍ୟାସ୍-ତଥା ଶୂଦ୍ରାସ୍,-ତେଽପି ୟାନ୍ତି ପରାଂ ଗତିମ୍ ॥**

କାରଣ, ହେ ଅର୍ଜୁନ ! ସ୍ତ୍ରୀ, ବୈଶ୍ୟ, ଶୂଦ୍ର ତଥା ନୀଚ ଜାତିର ଯେ କେହି ବି ହୁଅନ୍ତୁ ନା କାହିଁକି, ସେମାନେ ମଧ୍ୟ ମୋର ଶରଣାପନ୍ନ ହୋଇ ପରମଗତି ହିଁ ପ୍ରାପ୍ତ ହୁଅନ୍ତି ॥ ୩୨ ॥

**କିଂ ପୁନର୍-ବ୍ରାହ୍ମଣାଃ ପୁଣ୍ୟା, ଭକ୍ତା ରାଜର୍ଷୟସ୍-ତଥା ।**
**ଅନିତ୍ୟ-ମସୁଖଂ ଲୋକ,-ମିମଂ ପ୍ରାପ୍ୟ ଭଜସ୍ୱ ମାମ୍ ॥**

ତେଣୁ ପୁଣ୍ୟଶୀଳ ବ୍ରାହ୍ମଣ ତଥା ରାଜର୍ଷି ଭକ୍ତମାନେ ଯେ

ମୋର ଶରଣାପନ୍ନ ହେଲେ ପରମଗତି ପ୍ରାପ୍ତ ହୁଅନ୍ତି, ତାହା ଆଉ କ'ଣ କହିବା ! ଅତଏବ ତୁମେ ସୁଖରହିତ ଓ କ୍ଷଣଭଙ୍ଗୁର ଏହି ମନୁଷ୍ୟଶରୀର ପ୍ରାପ୍ତ ହୋଇ ନିରନ୍ତର ମୋର ହିଁ ଭଜନ କର ॥ ୩୩ ॥

**ମନ୍ମନା ଭବ ମଦ୍-ଭକ୍ତୋ, ମଦ୍ୟାଜୀ ମାଂ ନମସ୍କୁରୁ ।**
**ମାମେବୈଷ୍ୟସି ଯୁକ୍ତ୍ୱୈବ,-ମାତ୍ମାନଂ ମତ୍-ପରାୟଣଃ ॥**

ମୋଠାରେ ମନ ଲଗାଅ; ମୋର ଭକ୍ତ ହୁଅ; ମୋର ପୂଜନ କର; ମୋତେ ପ୍ରଣାମ କର । ଏପରିଭାବରେ ଆତ୍ମାକୁ ମୋଠାରେ ଲଗାଇ ମୋର ପରାୟଣ ହେଲେ ତୁମେ ମୋତେ ନିଶ୍ଚୟ ପ୍ରାପ୍ତ ହେବ ॥ ୩୪ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ରାଜବିଦ୍ୟା-ରାଜଗୁହ୍ୟ-ଯୋଗୋ ନାମ ନବମୋଽଧ୍ୟାୟଃ ॥ ୯ ॥*



॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ଦଶମୋଽଧ୍ୟାୟଃ

ଶ୍ରୀଭଗବାନୁବାଚ

**ଭୂୟ ଏବ ମହାବାହୋ, ଶୃଣୁ ମେ ପରମଂ ବଚଃ ।**
**ୟତ୍ତେଽହଂ ପ୍ରୀୟମାଣାୟ, ବକ୍ଷ୍ୟାମି ହିତ-କାମ୍ୟୟା ॥**

ଶ୍ରୀଭଗବାନ୍ କହିଲେ—ହେ ମହାବାହୋ ! ମୋର ପରମ ରହସ୍ୟ ଓ ପ୍ରଭାବଯୁକ୍ତ ବଚନ ପୁଣି ଥରେ ଶ୍ରବଣ କର । ତୁମେ ମୋ'ଠାରେ ଅତିଶୟ ପ୍ରେମ ରଖୁଛ; ତୁମର ହିତ କାମନା କରି ମୁଁ ଏହା କହିବି ॥ ୧ ॥

**ନ ମେ ବିଦୁଃ ସୁରଗଣାଃ, ପ୍ରଭବଂ ନ ମହର୍ଷୟଃ ।**
**ଅହମାଦିର୍-ହି ଦେବାନାଂ, ମହର୍ଷୀଣାଂ ଚ ସର୍ବଶଃ ॥**

ମୋର ଉତ୍ପତ୍ତି ଅର୍ଥାତ୍ ଲୀଳାରେ ପ୍ରକଟ ହେଉଥିବା ରହସ୍ୟ ଦେବତାମାନେ ଜାଣନ୍ତି ନାହିଁ, କି ମହର୍ଷିମାନେ ଜାଣନ୍ତି ନାହିଁ; କାରଣ ମୁଁ ହେଉଛି ସବୁଦୃଷ୍ଟିରୁ ଦେବତାମାନଙ୍କର ତଥା ମହର୍ଷିମାନଙ୍କର ଆଦିକାରଣ ॥ ୨ ॥

**ୟୋ ମାମଜ-ମନାଦିଂ ଚ, ବେତ୍ତି ଲୋକ-ମହେଶ୍ୱରମ୍ ।**
**ଅସଂମୂଢଃ ସ ମର୍ତ୍ତ୍ୟେଷୁ, ସର୍ବ-ପାପୈଃ ପ୍ରମୁଚ୍ୟତେ ॥**

ଯେ ମୋତେ ଅଜନ୍ମା ଅର୍ଥାତ୍ ପ୍ରକୃତରେ ଜନ୍ମରହିତ, ଅନାଦି* ଓ ଲୋକମହେଶ୍ୱର ବୋଲି ତତ୍ତ୍ୱତଃ ଜାଣନ୍ତି, ମନୁଷ୍ୟ-ମାନଙ୍କ ମଧ୍ୟରେ ଥିବା ସେହି ଜ୍ଞାନୀପୁରୁଷ ସକଳ ପାପରୁ ମୁକ୍ତ ହୋଇଯାଆନ୍ତି ॥ ୩ ॥

**ବୁଦ୍ଧିର୍-ଜ୍ଞାନ-ମସଂମୋହଃ, କ୍ଷମା ସତ୍ୟଂ ଦମଃ ଶମଃ ।**
**ସୁଖଂ ଦୁଃଖଂ ଭବୋଽଭାବୋ, ଭୟଂ ଚାଭୟ-ମେବ ଚ ॥**
**ଅହିଂସା ସମତା ତୁଷ୍ଟିସ୍-ତପୋ ଦାନଂ ଯଶୋଽଯଶଃ ।**
**ଭବନ୍ତି ଭାବା ଭୂତାନାଂ, ମତ୍ତ ଏବ ପୃଥଗ୍-ବିଧାଃ ॥**

ନିଶ୍ଚୟ କରିବା ଶକ୍ତି, ଯଥାର୍ଥ ଜ୍ଞାନ, ଅସମ୍ମୂଢ଼ତା, କ୍ଷମା, ସତ୍ୟ, ଇନ୍ଦ୍ରିୟସଂଯମ, ମନୋନିଗ୍ରହ ତଥା ସୁଖ-ଦୁଃଖ, ଉତ୍ପତ୍ତି-ପ୍ରଳୟ, ଓ ଭୟ-ଅଭୟ ଏବଂ ଅହିଂସା, ସମତା, ସନ୍ତୋଷ, ତପΨ, ଦାନ, କୀର୍ତ୍ତି ଓ ଅପକୀର୍ତ୍ତି—ପ୍ରାଣୀମାନଙ୍କର ଏହିପରି ଯେଉଁ ନାନାପ୍ରକାର ଭାବ ରହିଛି, ସେଗୁଡ଼ିକ ମୋ'ଠାରୁ ହିଁ ଉତ୍ପନ୍ନ ହୋଇଥାନ୍ତି ॥ ୪-୫ ॥

**ମହର୍ଷୟଃ ସପ୍ତ ପୂର୍ବେ, ଚତ୍ୱାରୋ ମନବସ୍-ତଥା ।**
**ମଦ୍-ଭାବା ମାନସା ଜାତା, ଯେଷାଂ ଲୋକ ଇମାଃ ପ୍ରଜାଃ ॥**

ସଂସାରର ଏହି ସମସ୍ତ ପ୍ରଜା ଯେଉଁମାନଙ୍କ ଠାରୁ ଉତ୍ପନ୍ନ ହୋଇଛନ୍ତି, ସେହି ସପ୍ତମହର୍ଷି ଓ ସେମାନଙ୍କ ପୂର୍ବରୁ ଜାତ ହୋଇଥିବା ସନକାଦି ଚାରିକୁମାର ତଥା ସ୍ୱାୟମ୍ଭୁବାଦି ଚଉଦମନୁ

* ଯେ ଆଦିରହିତ ଓ ସବୁକିଛିର କାରଣ, ସେ ଅନାଦି ।

Ψ ସ୍ୱଧର୍ମ ଆଚରଣଦ୍ୱାରା ଇନ୍ଦ୍ରିୟମାନଙ୍କୁ ସଂଯତ କରି ଶୁଦ୍ଧ କରିବାକୁ ତପ ବୋଲାଯାଏ ।

ମୋ ସଙ୍କଳ୍ପରୁ ଉତ୍ପନ୍ନ ହୋଇଛନ୍ତି। ଏ ସମସ୍ତେ ମୋଠାରେ ଶ୍ରଦ୍ଧାଭାବ ରଖନ୍ତି ॥ ୬ ॥

**ଏତାଂ ବିଭୂତିଂ ଯୋଗଂ ଚ, ମମ ଯୋ ବେତ୍ତି ତତ୍ତ୍ୱତଃ।**
**ସୋଽବିକମ୍ପେନ ଯୋଗେନ, ଯୁଜ୍ୟତେ ନାତ୍ର ସଂଶୟଃ ॥**

ଯେଉଁ ପୁରୁଷ ମୋର ଏହି ପରମ ଐଶ୍ୱର୍ଯ୍ୟରୂପୀ ବିଭୂତି ଓ ଯୋଗଶକ୍ତିକୁ ତତ୍ତ୍ୱତଃ* ଜାଣନ୍ତି, ସେ ନିଶ୍ଚଳ ଭକ୍ତିଯୋଗଦ୍ୱାରା ଯୁକ୍ତ ହୋଇଯାଆନ୍ତି; ଏଥିରେ କୌଣସି ସନ୍ଦେହ ନାହିଁ ॥ ୭ ॥

**ଅହଂ ସର୍ବସ୍ୟ ପ୍ରଭବୋ, ମତ୍ତଃ ସର୍ବଂ ପ୍ରବର୍ତ୍ତତେ।**
**ଇତି ମତ୍ୱା ଭଜନ୍ତେ ମାଂ, ବୁଧା ଭାବ-ସମନ୍ୱିତାଃ ॥**

ମୁଁ ବାସୁଦେବ ହିଁ ସମସ୍ତ ଜଗତର ଉତ୍ପତ୍ତିର କାରଣ ଓ ମୋ ଦ୍ୱାରା ହିଁ ସମସ୍ତ ଜଗତ ପ୍ରବୃତ୍ତ ହେଉଛି; ଏପରି ବୁଝି ଶ୍ରଦ୍ଧାଯୁକ୍ତ ଓ ଭକ୍ତିଯୁକ୍ତ ବୁଦ୍ଧିମାନ୍ ଭକ୍ତମାନେ ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ ହିଁ ନିରନ୍ତର ଭଜନ କରନ୍ତି ॥ ୮ ॥

**ମଚ୍ଚିତ୍ତା ମଦ୍-ଗତ-ପ୍ରାଣା, ବୋଧୟନ୍ତଃ ପରସ୍ପରମ୍।**
**କଥୟନ୍ତଶ୍-ଚ ମାଂ ନିତ୍ୟଂ, ତୁଷ୍ୟନ୍ତି ଚ ରମନ୍ତି ଚ ॥**

ନିରନ୍ତର ମୋ'ଠାରେ ମନ ଲଗାଇଥିବା ଓ ମୋଠାରେ ହିଁ ପ୍ରାଣ ଅର୍ପଣ କରିଦେଇଥିବା ଭକ୍ତମାନେ ମୋ'ଭକ୍ତି ସମ୍ବନ୍ଧରେ ଚର୍ଚ୍ଚା କରି, ମୋର ପ୍ରଭାବ ବିଷୟରେ ପରସ୍ପର ଆଲୋଚନା

---

* ଏହି ସମସ୍ତ ଦୃଶ୍ୟମାନ ଜଗତ ହେଉଛି ଭଗବାନଙ୍କର ମାୟା ଏବଂ ବାସୁଦେବ ଭଗବାନ୍ ହିଁ ସର୍ବତ୍ର ବ୍ୟାପି ରହିଛନ୍ତି। ଏହା ଜାଣିବା ହିଁ ଭଗବାନଙ୍କ ଯୋଗଶକ୍ତିକୁ ତତ୍ତ୍ୱତଃ ଜାଣିବା।

କରି, ଏକ ଆରେକକୁ ବୋଧ କରାଇ ତଥା ମୋର ଗୁଣ ଓ ପ୍ରଭାବ ସହିତ ମୋ ବିଷୟରେ କଥାଭାଷା କରି ହିଁ ନିରନ୍ତର ସନ୍ତୁଷ୍ଟ ହୁଅନ୍ତି ଓ ମୋଠାରେ (ବାସୁଦେବଙ୍କ ଠାରେ) ହିଁ ନିରନ୍ତର ରମଣ କରନ୍ତି ॥ ୯ ॥

**ତେଷାଂ ସତତ-ଯୁକ୍ତାନାଂ, ଭଜତାଂ ପ୍ରୀତି-ପୂର୍ବକମ୍ ।**
**ଦଦାମି ବୁଦ୍ଧି-ୟୋଗଂ ତଂ, ୟେନ ମାମୁପୟାନ୍ତି ତେ ॥**

ନିରନ୍ତର ମୋର ଧ୍ୟାନ ଆଦିରେ ଲାଗିରହୁଥିବା ତଥା ପ୍ରେମପୂର୍ବକ ଭଜନ କରୁଥିବା ସେହି ଭକ୍ତମାନଙ୍କୁ ମୁଁ ସେହି ତତ୍ତ୍ୱଜ୍ଞାନରୂପୀ ଯୋଗ ପ୍ରଦାନ କରେ, ଯାହାଦ୍ୱାରା ସେମାନେ ମୋତେ ହିଁ ପ୍ରାପ୍ତ ହୁଅନ୍ତି ॥ ୧୦ ॥

**ତେଷା-ମେବାନୁ-କମ୍ପାର୍ଥ,-ମହ-ମଜ୍ଞାନଜଂ ତମଃ ।**
**ନାଶୟା-ମ୍ୟାତ୍ମ-ଭାବସ୍ଥୋ, ଜ୍ଞାନ-ଦୀପେନ ଭାସ୍ୱତା ॥**

ହେ ଅର୍ଜୁନ ! ସେମାନଙ୍କ ଉପରେ ଅନୁଗ୍ରହ କରିବାକୁ ସେମାନଙ୍କ ଅନ୍ତଃକରଣରେ ଅବସ୍ଥିତ ହୋଇ ମୁଁ ନିଜେ ହିଁ ଆଲୋକମୟ ତତ୍ତ୍ୱଜ୍ଞାନରୂପୀ ଦୀପଦ୍ୱାରା ସେମାନଙ୍କର ଅଜ୍ଞାନଜନିତ ଅନ୍ଧକାରକୁ ନାଶ କରିଦିଏ ॥ ୧୧ ॥

*ଅର୍ଜୁନ ଉବାଚ*

**ପରଂ ବ୍ରହ୍ମ ପରଂ ଧାମ, ପବିତ୍ରଂ ପରମଂ ଭବାନ୍ ।**
**ପୁରୁଷଂ ଶାଶ୍ୱତଂ ଦିବ୍ୟ,-ମାଦି-ଦେବ-ମଜଂ ବିଭୁମ୍ ॥**

**ଆହୁସ୍-ତ୍ୱା-ମୃଷୟଃ ସର୍ବେ, ଦେବର୍ଷିର୍-ନାରଦସ୍-ତଥା ।**
**ଅସିତୋ ଦେବଲୋ ବ୍ୟାସଃ, ସ୍ୱୟଂ ଚୈବ ବ୍ରବୀଷି ମେ ॥**

**ଅର୍ଜୁନ କହିଲେ**—ଆପଣ ପରମ ବ୍ରହ୍ମ, ପରମ ଧାମ ଓ ପରମ ପବିତ୍ର ଅଟନ୍ତି; କାରଣ ଆପଣଙ୍କୁ ସକଳ ଋଷି ସନାତନ, ଦିବ୍ୟପୁରୁଷ ଏବଂ ଦେବତାମାନଙ୍କର ମଧ୍ୟ ଆଦିଦେବ, ଅଜନ୍ମା ଓ ସର୍ବବ୍ୟାପୀ ବୋଲି କହନ୍ତି । ଦେବର୍ଷି ନାରଦ ତଥା ଅସିତ ଓ ଦେବଳ ଋଷି ତଥା ମହର୍ଷି ବ୍ୟାସ ମଧ୍ୟ ସେହିପରି କହନ୍ତି ଓ ଆପଣ ନିଜେ ମଧ୍ୟ ମୋତେ ସେହି କଥା କହୁଛନ୍ତି ॥ ୧୨-୧୩ ॥

**ସର୍ବ-ମେତ-ଦୃତଂ ମନ୍ୟେ, ଯ୍ୱନ୍‌-ମାଂ ବଦସି କେଶବ ।**
**ନ ହି ତେ ଭଗବନ୍‌-ବ୍ୟକ୍ତିଂ, ବିଦୁର୍‌-ଦେବା ନ ଦାନବାଃ ॥**

ହେ କେଶବ ! ଆପଣ ମୋତେ ଯାହା କିଛି ବି କହୁଛନ୍ତି, ସେସବୁକୁ ମୁଁ ସତ୍ୟ ବୋଲି ମାନୁଛି । ହେ ଭଗବନ୍ ! ଆପଣଙ୍କର ଲୀଳାମୟ* ସ୍ୱରୂପକୁ ଦାନବମାନେ ଜାଣନ୍ତି ନାହିଁ; କି ଦେବତାମାନେ ଜାଣନ୍ତି ନାହିଁ (ଅର୍ଥାତ୍ କେହି ଜାଣନ୍ତି ନାହିଁ ।) ॥ ୧୪ ॥

**ସ୍ୱୟ-ମେବାତ୍ମ-ନାତ୍ମାନଂ, ବେତ୍ଥ ତ୍ୱଂ ପୁରୁଷୋତ୍ତମ ।**
**ଭୂତ-ଭାବନ ଭୂତେଶ, ଦେବ-ଦେବ ଜଗତ୍‌-ପତେ ॥**

ହେ ପ୍ରାଣୀମାନଙ୍କର ସୃଷ୍ଟିକର୍ତ୍ତା ! ହେ ପ୍ରାଣୀମାନଙ୍କର ଈଶ୍ୱର ! ହେ ଦେବାଧିଦେବ ! ହେ ଜଗନ୍ନାଥ ! ହେ ପୁରୁଷୋତ୍ତମ ! ଆପଣ ନିଜେ ହିଁ ନିଜଦ୍ୱାରା ନିଜକୁ ଜାଣନ୍ତି ॥ ୧୫ ॥

---

* ଗୀତା ତତ୍ତ୍ୱବିବେଚନୀଟୀକାର ଚତୁର୍ଥ ଅଧ୍ୟାୟର ଷଷ୍ଠ ଶ୍ଳୋକରେ ବିସ୍ତୃତ ଆଲୋଚନା ଦେଖନ୍ତୁ ।

**ବକ୍ତୁ-ମର୍ହସ୍ୟ-ଶେଷେଣ, ଦିବ୍ୟା ହ୍ୟାତ୍ମ-ବିଭୂତୟଃ ।**
**ୟାଭିର୍-ବିଭୂତିଭିର୍-ଲୋକା,-ନିମାଂସ୍ତ୍ୱଂ ବ୍ୟାପ୍ୟ ତିଷ୍ଠସି ॥**

ତେଣୁ ଯେଉଁ ବିଭୂତିଗୁଡ଼ିକଦ୍ୱାରା ଆପଣ ଏହିସବୁ ଲୋକକୁ ବ୍ୟାପି ରହିଛନ୍ତି; ଆପଣ ହିଁ ନିଜର ସେହି ଦିବ୍ୟବିଭୂତିଗୁଡ଼ିକୁ ସଂପୂର୍ଣ୍ଣରୂପେ କହିବାକୁ ସମର୍ଥ ଅଟନ୍ତି ॥ ୧୬ ॥

**କଥଂ ବିଦ୍ୟାମହଂ ୟୋଗିଂସ୍,-ତ୍ୱାଂ ସଦା ପରି-ଚିନ୍ତୟନ୍ ।**
**କେଷୁ କେଷୁ ଚ ଭାବେଷୁ, ଚିନ୍ତ୍ୟୋଽସି ଭଗବନ୍ ମୟା ॥**

ହେ ଯୋଗେଶ୍ୱର ! ନିରନ୍ତର କିପରି ଚିନ୍ତନ କରି କରି ମୁଁ ଆପଣଙ୍କୁ ଜାଣିପାରିବି ଏବଂ ହେ ଭଗବନ୍ ! ଆପଣ କେଉଁ କେଉଁ ଭାବରେ ମୋ ଦ୍ୱାରା ଚିନ୍ତନଯୋଗ୍ୟ ଅଟନ୍ତି? ॥ ୧୭ ॥

**ବିସ୍ତରେ-ଣାତ୍ମନୋ ୟୋଗଂ, ବିଭୂତିଂ ଚ ଜନାର୍ଦ୍ଦନ ।**
**ଭୂୟଃ କଥୟ ତୃପ୍ତିର୍-ହି, ଶୃଣ୍ୱତୋ ନାସ୍ତି ମେଽମୃତମ୍ ॥**

ହେ ଜନାର୍ଦ୍ଦନ ! ଆପଣଙ୍କ ଯୋଗଶକ୍ତି ଓ ବିଭୂତି ଆହୁରି ବିସ୍ତୃତଭାବରେ କହନ୍ତୁ; କାରଣ ଆପଣଙ୍କ ଅମୃତମୟ ବଚନ ଶୁଣି ଶୁଣି ବି ମୋର ତୃପ୍ତି ହେଉ ନାହିଁ; ଆହୁରି ଶୁଣିବାକୁ ଉତ୍କଣ୍ଠା ବଢୁଛି ॥ ୧୮ ॥

ଶ୍ରୀଭଗବାନୁବାଚ

**ହନ୍ତ ତେ କଥୟିଷ୍ୟାମି, ଦିବ୍ୟା ହ୍ୟାତ୍ମ-ବିଭୂତୟଃ ।**
**ପ୍ରାଧାନ୍ୟତଃ କୁରୁ-ଶ୍ରେଷ୍ଠ, ନାସ୍ତ୍ୟନ୍ତୋ ବିସ୍ତରସ୍ୟ ମେ ॥**

**ଶ୍ରୀଭଗବାନ୍ କହିଲେ**—ହେ କୁରୁଶ୍ରେଷ୍ଠ ! ମୋର ଯେଉଁସବୁ

ଦିବ୍ୟ ବିଭୂତି ରହିଛି, ସେଗୁଡ଼ିକ ତୁମକୁ ମୁଖ୍ୟଭାବରେ ବର୍ତ୍ତମାନ କହିବି; କାରଣ ମୋ’ ବିସ୍ତାରର ଅନ୍ତ ନାହିଁ ॥ ୧୯ ॥

**ଅହମାତ୍ମା ଗୁଡାକେଶ, ସର୍ବ-ଭୂତାଶୟ-ସ୍ଥିତଃ ।**
**ଅହମାଦିଶ୍-ଚ ମଧ୍ୟଂ ଚ, ଭୂତାନା-ମନ୍ତ ଏବ ଚ ॥**

ହେ ଅର୍ଜୁନ ! ମୁଁ ସକଳ ଜୀବଙ୍କ ହୃଦୟରେ ସ୍ଥିତ ସମସ୍ତଙ୍କର ଆତ୍ମା; ତଥା ସକଳ ଜୀବଙ୍କର ଆଦି, ମଧ୍ୟ ଓ ଅନ୍ତ ବି ମୁଁ ହିଁ ଅଟେ ॥ ୨୦ ॥

**ଆଦିତ୍ୟାନା-ମହଂ ବିଷ୍ଣୁର୍,-ଜ୍ୟୋତିଷାଂ ରବି-ରଂଶୁମାନ୍ ।**
**ମରୀଚିର୍-ମରୁତା-ମସ୍ମି, ନକ୍ଷତ୍ରାଣା-ମହଂ ଶଶୀ ॥**

ମୁଁ ଅଦିତିଙ୍କର ଦ୍ୱାଦଶପୁତ୍ରଙ୍କ ମଧ୍ୟରେ ବିଷ୍ଣୁ ଓ ଜ୍ୟୋତିମାନଙ୍କ ମଧ୍ୟରେ କିରଣପ୍ରଦାନକାରୀ ସୂର୍ଯ୍ୟ ତଥା ଅଣଚାଶ ବାୟୁଦେବତାଙ୍କର ତେଜ ଓ ନକ୍ଷତ୍ରମାନଙ୍କର ଅଧିପତି ଚନ୍ଦ୍ରମା ଅଟେ ॥ ୨୧ ॥

**ବେଦାନାଂ ସାମବେଦୋଽସ୍ମି, ଦେବାନା-ମସ୍ମି ବାସବଃ ।**
**ଇନ୍ଦ୍ରିୟାଣାଂ ମନଶ୍-ଚାସ୍ମି, ଭୂତାନା-ମସ୍ମି ଚେତନା ॥**

ମୁଁ ବେଦମାନଙ୍କ ମଧ୍ୟରେ ସାମବେଦ, ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ର, ଇନ୍ଦ୍ରିୟମାନଙ୍କ ମଧ୍ୟରେ ମନ ଓ ପ୍ରାଣୀମାନଙ୍କର ଚେତନା ଅର୍ଥାତ୍ ଜୀବନୀ ଶକ୍ତି ଅଟେ ॥ ୨୨ ॥

**ରୁଦ୍ରାଣାଂ ଶଙ୍କରଶ୍-ଚାସ୍ମି, ବିତ୍ତେଶୋ ଯକ୍ଷ-ରକ୍ଷସାମ୍ ।**
**ବସୂନାଂ ପାବକଶ୍-ଚାସ୍ମି, ମେରୁଃ ଶିଖରିଣା-ମହମ୍ ॥**

ମୁଁ ଏକାଦଶ ରୁଦ୍ରଙ୍କ ମଧ୍ୟରେ ଶଙ୍କର ଓ ଯକ୍ଷ ତଥା ରାକ୍ଷସମାନଙ୍କ ମଧ୍ୟରେ ଧନପତି କୁବେର ଅଟେ । ମୁଁ ଅଷ୍ଟବସୁଙ୍କ ମଧ୍ୟରେ ଅଗ୍ନି ଓ ପର୍ବତମାନଙ୍କ ମଧ୍ୟରେ ସୁମେରୁ ପର୍ବତ ଅଟେ ॥ ୨୩ ॥

**ପୁରୋଧସାଂ ଚ ମୁଖ୍ୟଂ ମାଂ, ବିଦ୍ଧି ପାର୍ଥ ବୃହସ୍ପତିମ୍ ।**
**ସେନାନୀନା-ମହଂ ସ୍କନ୍ଦଃ, ସରସା-ମସ୍ମି ସାଗରଃ ॥**

ହେ ପାର୍ଥ ! ମୋତେ ପୁରୋହିତମାନଙ୍କର ମୁଖ୍ୟ ବୃହସ୍ପତି ବୋଲି ଜାଣ । ମୁଁ ସେନାପତିମାନଙ୍କ ମଧ୍ୟରେ ସ୍କନ୍ଦ ଓ ଜଳାଶୟମାନଙ୍କ ମଧ୍ୟରେ ସାଗର ଅଟେ ॥ ୨୪ ॥

**ମହର୍ଷୀଣାଂ ଭୃଗୁ-ରହଂ, ଗିରା-ମସ୍ମ୍ୟେକ-ମକ୍ଷରମ୍ ।**
**ଯଜ୍ଞାନାଂ ଜପ-ଯଜ୍ଞୋଽସ୍ମି, ସ୍ଥାବରାଣାଂ ହିମାଳୟଃ ॥**

ମୁଁ ମହର୍ଷିମାନଙ୍କ ମଧ୍ୟରେ ଭୃଗୁ ଓ ଶବ୍ଦମାନଙ୍କ ମଧ୍ୟରେ ଏକାକ୍ଷର ଓଁ ଅଟେ । ମୁଁ ସକଳପ୍ରକାର ଯଜ୍ଞମାନଙ୍କ ମଧ୍ୟରେ ଜପଯଜ୍ଞ ଓ ସ୍ଥାବରମାନଙ୍କ ମଧ୍ୟରେ ହିମାଳୟ ପର୍ବତ ଅଟେ ॥ ୨୫ ॥

**ଅଶ୍ୱତ୍ଥଃ ସର୍ବ-ବୃକ୍ଷାଣାଂ, ଦେବର୍ଷୀଣାଂ ଚ ନାରଦଃ ।**
**ଗନ୍ଧର୍ବାଣାଂ ଚିତ୍ରରଥଃ, ସିଦ୍ଧାନାଂ କପିଲୋ ମୁନିଃ ॥**

ମୁଁ ସକଳ ବୃକ୍ଷଙ୍କ ମଧ୍ୟରେ ଅଶ୍ୱତ୍ଥ ବୃକ୍ଷ, ଦେବର୍ଷିମାନଙ୍କ ମଧ୍ୟରେ ନାରଦ ମୁନି, ଗନ୍ଧର୍ବମାନଙ୍କ ମଧ୍ୟରେ ଚିତ୍ରରଥ ଓ ସିଦ୍ଧମାନଙ୍କ ମଧ୍ୟରେ କପିଳ ମୁନି ଅଟେ ॥ ୨୬ ॥

**ଉଚ୍ଚୈଃଶ୍ରବସ-ମଶ୍ୱାନାଂ, ବିଦ୍ଧି ମାମମୃତୋଦ୍-ଭବମ୍ ।**
**ଐରାବତଂ ଗଜେନ୍ଦ୍ରାଣାଂ, ନରାଣାଂ ଚ ନରାଧିପମ୍ ॥**

ମୋତେ ଅଶ୍ୱମାନଙ୍କ ମଧ୍ୟରେ ଅମୃତସହିତ ଉତ୍ପନ୍ନ ହୋଇଥିବା ଉଚ୍ଚୈଃଶ୍ରବା, ଶ୍ରେଷ୍ଠ ହସ୍ତୀମାନଙ୍କ ମଧ୍ୟରେ ଐରାବତ ଓ ମନୁଷ୍ୟମାନଙ୍କ ମଧ୍ୟରେ ରାଜା ବୋଲି ଜାଣ ॥ ୨୭ ॥

**ଆୟୁଧାନା-ମହଂ ବଜ୍ରଂ, ଧେନୂନା-ମସ୍ମି କାମଧୁକ୍ ।**
**ପ୍ରଜନଶ୍-ଚାସ୍ମି କନ୍ଦର୍ପଃ, ସର୍ପାଣା-ମସ୍ମି ବାସୁକିଃ ॥**

ମୁଁ ଶସ୍ତ୍ରମାନଙ୍କ ମଧ୍ୟରେ ବଜ୍ର ଓ ଧେନୁ(ଗାଈ)ମାନଙ୍କ ମଧ୍ୟରେ କାମଧେନୁ ଅଟେ । ମୁଁ ଶାସ୍ତ୍ରୋକ୍ତ ରୀତିରେ ସନ୍ତାନ-ଉତ୍ପତ୍ତିର ହେତୁ କାମଦେବ ଓ ସର୍ପମାନଙ୍କ ମଧ୍ୟରେ ସର୍ପରାଜ ବାସୁକି ଅଟେ ॥ ୨୮ ॥

**ଅନନ୍ତଶ୍-ଚାସ୍ମି ନାଗାନାଂ, ବରୁଣୋ ଯାଦସା-ମହମ୍ ।**
**ପିତୃଣା-ମର୍ଯ୍ୟମା ଚାସ୍ମି, ଯମଃ ସଂଯମତା-ମହମ୍ ॥**

ମୁଁ ନାଗମାନଙ୍କ* ମଧ୍ୟରେ ଶେଷନାଗ, ଜଳଚରମାନଙ୍କ ମଧ୍ୟରେ ସେମାନଙ୍କର ଅଧିପତି ବରୁଣଦେବତା ଏବଂ ପିତୃମାନଙ୍କ ମଧ୍ୟରେ ଅର୍ଯ୍ୟମା ନାମକ ପିତୃ ତଥା ଶାସକମାନଙ୍କ ମଧ୍ୟରେ ଯମରାଜ ଅଟେ ॥ ୨୯ ॥

**ପ୍ରହ୍ଲାଦଶ୍-ଚାସ୍ମି ଦୈତ୍ୟାନାଂ, କାଲଃ କଲୟତା-ମହମ୍ ।**
**ମୃଗାଣାଂ ଚ ମୃଗେନ୍ଦ୍ରୋଽହଂ, ବୈନତେୟଶ୍-ଚ ପକ୍ଷିଣାମ୍ ॥**

* ନାଗ ଓ ସର୍ପ—ଏପରି ଦୁଇଟି ଜାତିର ସାପ ଅଛନ୍ତି ।

ମୁଁ ଦୈତ୍ୟମାନଙ୍କ ମଧ୍ୟରେ ପ୍ରହ୍ଲାଦ ଓ ଗଣନାକାରୀମାନଙ୍କ ମଧ୍ୟରେ କାଳ* ତଥା ପଶୁମାନଙ୍କ ମଧ୍ୟରେ ମୃଗରାଜ ସିଂହ ଓ ପକ୍ଷୀମାନଙ୍କ ମଧ୍ୟରେ ଗରୁଡ଼ ଅଟେ ॥ ୩୦ ॥

**ପବନଃ ପବତା-ମସ୍ମି, ରାମଃ ଶସ୍ତ୍ରଭୃତା-ମହମ୍ ।**
**ଝଷାଣାଂ ମକରଶ୍-ଚ୍ସ୍ମି, ସ୍ରୋତସା-ମସ୍ମି ଜାହ୍ନବୀ ॥**

ମୁଁ ପବିତ୍ରକାରୀମାନଙ୍କ ମଧ୍ୟରେ ବାୟୁ ଓ ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ଶ୍ରୀରାମ ତଥା ମତ୍ସ୍ୟମାନଙ୍କ ମଧ୍ୟରେ ମଗର ଓ ନଦୀମାନଙ୍କ ମଧ୍ୟରେ ଗଙ୍ଗା ଅଟେ ॥ ୩୧ ॥

**ସର୍ଗାଣା-ମାଦି-ରନ୍ତଶ୍-ଚ, ମଧ୍ୟଂ ଚୈବାହ-ମର୍ଜୁନ ।**
**ଅଧ୍ୟାତ୍ମ-ବିଦ୍ୟା ବିଦ୍ୟାନାଂ, ବାଦଃ ପ୍ରବଦତା-ମହମ୍ ॥**

ହେ ଅର୍ଜୁନ ! ସୃଷ୍ଟିମାନଙ୍କର ଆଦି ଓ ଅନ୍ତ ତଥା ମଧ୍ୟ ବି ମୁଁ ହିଁ ଅଟେ । ମୁଁ ବିଦ୍ୟାମାନଙ୍କ ମଧ୍ୟରେ ଅଧ୍ୟାତ୍ମବିଦ୍ୟା ଅର୍ଥାତ୍ ବ୍ରହ୍ମବିଦ୍ୟା ଏବଂ ଶାସ୍ତ୍ରାର୍ଥପାଇଁ ପରସ୍ପର ବାଦ କରୁଥିବା ଲୋକଙ୍କ ମଧ୍ୟରେ ତତ୍ତ୍ୱନିର୍ଣ୍ଣୟପାଇଁ କରାଯାଉଥିବା ବାଦ ମଧ୍ୟ ମୁଁ ଅଟେ ॥ ୩୨ ॥

**ଅକ୍ଷରାଣା-ମକାରୋଽସ୍ମି, ଦ୍ୱନ୍ଦ୍ୱଃ ସାମାସିକସ୍ୟ ଚ ।**
**ଅହମେବା-କ୍ଷୟଃ କାଲୋ, ଧାତାହଂ ବିଶ୍ୱତୋ-ମୁଖଃ ॥**

ମୁଁ ଅକ୍ଷରମାନଙ୍କ ମଧ୍ୟରେ 'ଅ'କାର ଓ ସମାସମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱନାମକ ସମାସ ଅଟେ । ମୁଁ ଅକ୍ଷୟ କାଳ ଅର୍ଥାତ୍

* କ୍ଷଣ, ଘଡ଼ି, ଦିନ, ପକ୍ଷ, ମାସ ଇତ୍ୟାଦିରେ ଯେଉଁ ସମୟ ଥାଏ, ମୁଁ ହେଉଛି ସେହି ସମୟ ବା କାଳ ।

କାଳର ମଧ୍ୟ ମହାକାଳ ଅଟେ। ସକଳଦିଗରେ ମୁଖ ଥିବା (ବିରାଟସ୍ୱରୂପ) ସମସ୍ତଙ୍କର ଧାରଣପୋଷଣକାରୀ ମଧ୍ୟ ମୁଁ ହିଁ ଅଟେ ॥ ୩୩ ॥

**ମୃତ୍ୟୁଃ ସର୍ବ-ହରଶ୍-ଚାହ,-ମୁଦ୍‌ଭବଶ୍-ଚ ଭବିଷ୍ୟତାମ୍।**
**କୀର୍ତ୍ତିଃ ଶ୍ରୀର୍-ବାକ୍-ଚ ନାରୀଣାଂ, ସ୍ମୃତିର୍-ମେଧା ଧୃତିଃ କ୍ଷମା ॥**

ମୁଁ ସମସ୍ତଙ୍କୁ ବିନାଶ କରୁଥିବା ମୃତ୍ୟୁ ଏବଂ ଉତ୍ପନ୍ନ ହେବାକୁ ଯାଉଥିବା ସମସ୍ତଙ୍କ ଉତ୍ପତ୍ତିର ହେତୁ ତଥା ନାରୀମାନଙ୍କ ମଧ୍ୟରେ କୀର୍ତ୍ତି*, ଶ୍ରୀ, ବାକ୍, ସ୍ମୃତି, ମେଧା, ଧୃତି ଓ କ୍ଷମା ଅଟେ ॥ ୩୪ ॥

**ବୃହତ୍-ସାମ ତଥା ସାମ୍ନାଂ, ଗାୟତ୍ରୀ ଛନ୍ଦସା-ମହମ୍।**
**ମାସାନାଂ ମାର୍ଗଶୀର୍ଷୋଽହ,-ମୃତୂନାଂ କୁସୁମାକରଃ ॥**

ତଥା ମୁଁ ହେଉଛି ଗାୟନଯୋଗ୍ୟ ଶ୍ରୁତିମାନଙ୍କ ମଧ୍ୟରେ ବୃହତ୍‌ସାମ ଓ ଛନ୍ଦମାନଙ୍କ ମଧ୍ୟରେ ଗାୟତ୍ରୀ ଛନ୍ଦ ଏବଂ ମାସମାନଙ୍କ ମଧ୍ୟରେ ମାର୍ଗଶିର ଓ ଋତୁମାନଙ୍କ ମଧ୍ୟରେ ବସନ୍ତ ଅଟେ ॥ ୩୫ ॥

**ଦ୍ୟୂତଂ ଛଳୟତା-ମସ୍ମି, ତେଜସ୍-ତେଜସ୍ୱିନା-ମହମ୍।**
**ଜୟୋଽସ୍ମି ବ୍ୟବସାୟୋଽସ୍ମି, ସତ୍ତ୍ୱଂ ସତ୍ତ୍ୱ-ବତା-ମହମ୍ ॥**

ମୁଁ ଛଳନାକାରୀମାନଙ୍କ ମଧ୍ୟରେ ଜୁଆ ଓ ପ୍ରଭାବଶାଳୀ ପୁରୁଷମାନଙ୍କର ପ୍ରଭାବ ଅଟେ। ମୁଁ ବିଜେତାମାନଙ୍କର ବିଜୟ,

* ପ୍ରଜାପତି ଦକ୍ଷଙ୍କର କୀର୍ତ୍ତି ପ୍ରଭୃତି ସାତ କନ୍ୟା ଧର୍ମ ପ୍ରଭୃତି ଦେବତାଙ୍କର ସ୍ତ୍ରୀ ଥିଲେ; ସ୍ତ୍ରୀବାଚକ ନାମବିଶିଷ୍ଟ ଗୁଣ ମଧ୍ୟ ପ୍ରସିଦ୍ଧ; ତେଣୁ ଉଭୟ ଦୃଷ୍ଟିରୁ ଭଗବାନଙ୍କର ବିଭୂତି।

ନିଶ୍ଚୟକାରୀମାନଙ୍କର ନିଶ୍ଚୟ ଏବଂ ସାତ୍ତ୍ୱିକପୁରୁଷମାନଙ୍କର ସାତ୍ତ୍ୱିକ ଭାବ ଅଟେ ॥ ୩୬ ॥

**ବୃଷ୍ଣୀନାଂ ବାସୁଦେବୋଽସ୍ମି, ପାଣ୍ଡବାନାଂ ଧନଞ୍ଜୟଃ ।**
**ମୁନୀନା-ମପ୍ୟହଂ ବ୍ୟାସଃ, କବୀନା-ମୁଶନା କବିଃ ॥**

ମୁଁ ବୃଷ୍ଣିବଂଶୀମାନଙ୍କ* ମଧ୍ୟରେ ବାସୁଦେବ ଅର୍ଥାତ୍ ମୁଁ ସ୍ୱୟଂ ତୁମ ସଖା, ପାଣ୍ଡବମାନଙ୍କ ମଧ୍ୟରେ ଧନଞ୍ଜୟ ଅର୍ଥାତ୍ ତୁମେ, ମୁନିମାନଙ୍କ ମଧ୍ୟରେ ବେଦବ୍ୟାସ ଓ କବିମାନଙ୍କ ମଧ୍ୟରେ ବୁଦ୍ଧିମାନ୍ ଶୁକ୍ରାଗ୍ରର୍ଯ୍ୟ ମଧ୍ୟ ମୁଁ ହିଁ ଅଟେ ॥ ୩୭ ॥

**ଦଣ୍ଡୋ ଦମୟତା-ମସ୍ମି, ନୀତି-ରସ୍ମି ଜିଗୀଷତାମ୍ ।**
**ମୌନଂ ଚୈବାସ୍ମି ଗୁହ୍ୟାନାଂ, ଜ୍ଞାନଂ ଜ୍ଞାନ-ବତା-ମହମ୍ ॥**

ମୁଁ ଦମନକାରୀମାନଙ୍କର ଦଣ୍ଡ ଅର୍ଥାତ୍ ଦମନଶକ୍ତି; ମୁଁ ବିଜୟକାମୀମାନଙ୍କର ନୀତି ଅଟେ; ମୁଁ ଗୋପନଯୋଗ୍ୟ ଭାବ-ମାନଙ୍କର ରକ୍ଷକ ମୌନ ଏବଂ ଜ୍ଞାନୀମାନଙ୍କର ତତ୍ତ୍ୱଜ୍ଞାନ ମଧ୍ୟ ମୁଁ ହିଁ ଅଟେ ॥ ୩୮ ॥

**ଯଚ୍ଚାପି ସର୍ବ-ଭୂତାନାଂ, ବୀଜଂ ତଦହ-ମର୍ଜୁନ ।**
**ନ ତଦସ୍ତି ବିନା ଯତ୍-ସ୍ୟାତ୍,-ମୟା ଭୂତଂ ଚରାଚରମ୍ ॥**

ଏବଂ ହେ ଅର୍ଜୁନ ! ଯାହା ସକଳ ଜୀବଙ୍କର ବୀଜ ବା ଉତ୍ପତ୍ତିର କାରଣ, ତାହା ବି ମୁଁ ହିଁ ଅଟେ; କାରଣ ଚର ବା ଅଚର ଏପରି କୌଣସି ବି ପ୍ରାଣୀ ନାହିଁ, ଯେ କି ମୋ ବିନା ଥାଇପାରେ ॥ ୩୯ ॥

---

* ବୃଷ୍ଣିବଂଶ ହେଉଛି ଯାଦବମାନଙ୍କ ଅନ୍ତର୍ଗତ ଏକ ବଂଶ ।

**ନାନ୍ତୋଽସ୍ତି ମମ ଦିବ୍ୟାନାଂ, ବିଭୂତୀନାଂ ପରନ୍-ତପ ।**
**ଏଷ ତୂଦ୍ଦେଶତଃ ପ୍ରୋକ୍ତୋ, ବିଭୂତେର୍-ବିସ୍ତରୋ ମୟା ॥**

ହେ ପରନ୍ତପ ! ମୋର ଦିବ୍ୟ ବିଭୂତିମାନଙ୍କର ଅନ୍ତ ନାହିଁ। ମୁଁ ମୋ ନିଜ ବିଭୂତିର ବିସ୍ତାର ତୁମକୁ ଅତି ସଂକ୍ଷେପରେ କହିଲି ॥ ୪୦ ॥

**ୟଦ୍-ୟଦ୍-ବିଭୂତିମତ୍-ସତ୍ତ୍ୱଂ, ଶ୍ରୀମଦୂର୍ଜିତ-ମେବ ବା ।**
**ତତ୍ତଦେବା-ବଗଚ୍ଛ ତ୍ୱଂ, ମମ ତେଜୋଂଽଶ-ସମ୍ଭବମ୍ ॥**

ଯେଉଁସବୁ ବିଭୂତିଯୁକ୍ତ ଅର୍ଥାତ୍ ଐଶ୍ୱର୍ଯ୍ୟଯୁକ୍ତ, କାନ୍ତିଯୁକ୍ତ ଓ ଶକ୍ତିଯୁକ୍ତ ବସ୍ତୁ ଅଛି, ସେସବୁକୁ ତୁମେ ମୋ ତେଜର ଆଂଶିକ ଅଭିବ୍ୟକ୍ତି ବୋଲି ହିଁ ଜାଣ ॥ ୪୧ ॥

**ଅଥବା ବହୁନୈତେନ, କିଂ ଜ୍ଞାତେନ ତବାର୍ଜୁନ ।**
**ବିଷ୍ଟଭ୍ୟାହ-ମିଦଂ କୃତ୍ସ୍ନ,-ମେକାଂଶେନ ସ୍ଥିତୋ ଜଗତ୍ ॥**

ଅଥବା ହେ ଅର୍ଜୁନ ! ଏତେ ବହୁତ ଜାଣିବାରେ ତୁମର କି ପ୍ରୟୋଜନ? ଜାଣ ଯେ, ମୁଁ ଏହି ସମ୍ପୂର୍ଣ୍ଣ ଜଗତକୁ ନିଜ ଯୋଗଶକ୍ତିର ଏକ ଅଂଶମାତ୍ରଦ୍ୱାରା ଧାରଣ କରି ରହିଛି ॥ ୪୨ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ୟୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ବିଭୂତି-ୟୋଗୋ ନାମ ଦଶମୋଽଧ୍ୟାୟଃ ॥ ୧୦ ॥*



॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ-ଏକାଦଶୋଽଧ୍ୟାୟଃ

*ଅର୍ଜୁନ ଉବାଚ*

**ମଦନୁଗ୍ରହାୟ ପରମଂ, ଗୁହ୍ୟ-ମଧ୍ୟାତ୍ମ-ସଂଜ୍ଞିତମ୍ ।**
**ୟତ୍ତ୍-ୱୟୋକ୍ତଂ ବଚସ୍-ତେନ, ମୋହୋଽୟଂ ବିଗତୋ ମମ ॥**

ଅର୍ଜୁନ କହିଲେ—ମୋ ପ୍ରତି ଅନୁଗ୍ରହ କରି ଆପଣ ଯେଉଁ ପରମ ଗୋପନୀୟ ଅଧ୍ୟାତ୍ମବିଷୟକ ବଚନ କହିଲେ ଅର୍ଥାତ୍ ଉପଦେଶ ଦେଲେ, ତଦ୍ଦ୍ୱାରା ମୋର ଏହି ଅଜ୍ଞାନ ନଷ୍ଟ ହୋଇଗଲା ॥ ୧ ॥

**ଭବାପ୍ୟୟୌ ହି ଭୂତାନାଂ, ଶ୍ରୁତୌ ବିସ୍ତରଶୋ ମୟା ।**
**ତ୍ୱତ୍ତଃ କମଲ-ପତ୍ରାକ୍ଷ, ମାହାତ୍ମ୍ୟ-ମପି ଚାବ୍ୟୟମ୍ ॥**

କାରଣ, ହେ କମଳନୟନ ! ମୁଁ ଆପଣଙ୍କ ଠାରୁ ପ୍ରାଣୀମାନଙ୍କର ଉତ୍ପତ୍ତି ଓ ପ୍ରଳୟ ବିଷୟ ବିସ୍ତୃତଭାବରେ ଶୁଣିଲି ତଥା ଆପଣଙ୍କର ଅବିନାଶୀ ମହିମା ମଧ୍ୟ ଶୁଣିଲି ॥ ୨ ॥

**ଏବମେତଦ୍-ୟଥାତ୍ଥ ତ୍ୱ,-ମାତ୍ମାନଂ ପରମେଶ୍ୱର ।**
**ଦ୍ରଷ୍ଟୁ-ମିଚ୍ଛାମି ତେ ରୂପ,-ମୈଶ୍ୱରଂ ପୁରୁଷୋତ୍ତମ ॥**

ହେ ପରମେଶ୍ୱର ! ଆପଣ ନିଜକୁ ଯେପରି କହୁଛନ୍ତି, ତାହା ଠିକ୍ ସେହିପରି । ତଥାପି ହେ ପୁରୁଷୋତ୍ତମ ! ଆପଣଙ୍କର

ଜ୍ଞାନ, ଐଶ୍ୱର୍ଯ୍ୟ, ଶକ୍ତି, ବଳ, ବୀର୍ଯ୍ୟ ଓ ତେଜଯୁକ୍ତ ଐଶ୍ୱର୍ଯ୍ୟରୂପକୁ ମୁଁ ପ୍ରତ୍ୟକ୍ଷ ଦେଖିବାକୁ ଚାହୁଁଛି ॥ ୩ ॥

**ମନ୍ୟସେ ଯଦି ତଚ୍ଛକ୍ୟଂ, ମୟା ଦ୍ରଷ୍ଟୁ-ମିତି ପ୍ରଭୋ ।**
**ଯୋଗେଶ୍ୱର ତତୋ ମେ ତ୍ୱଂ, ଦର୍ଶୟାତ୍ମାନ-ମବ୍ୟୟମ୍ ॥**

ହେ ପ୍ରଭୁ* ! ଯଦି ମୋ ଦ୍ୱାରା ଆପଣଙ୍କର ସେହି ରୂପ ଦେଖିହେବା ସମ୍ଭବ ବୋଲି ଆପଣ ମନେ କରୁଛନ୍ତି, ତେବେ ହେ ଯୋଗେଶ୍ୱର ! ଆପଣ ନିଜର ସେହି ଅବିନାଶୀ ସ୍ୱରୂପ ମୋତେ ଦର୍ଶନ କରାନ୍ତୁ ॥ ୪ ॥

*ଶ୍ରୀଭଗବାନୁବାଚ*

**ପଶ୍ୟ ମେ ପାର୍ଥ ରୂପାଣି, ଶତଶୋଽଥ ସହସ୍ରଶଃ ।**
**ନାନା-ବିଧାନି ଦିବ୍ୟାନି, ନାନା-ବର୍ଣ୍ଣାକୃତୀନି ଚ ॥**

ଶ୍ରୀଭଗବାନ୍ କହିଲେ—ହେ ପାର୍ଥ ! ବର୍ତ୍ତମାନ ତୁମେ ମୋର ନାନା ବର୍ଣ୍ଣର, ନାନା ଆକୃତିର ତଥା ନାନା ପ୍ରକାରର ଶତ ଶତ, ସହସ୍ର ସହସ୍ର ଅଲୌକିକ ରୂପ ଦେଖ ॥ ୫ ॥

**ପଶ୍ୟାଦିତ୍ୟାନ୍-ବସୂନ୍-ରୁଦ୍ରା,-ନଶ୍ୱିନୌ ମରୁତସ୍-ତଥା ।**
**ବହୂନ୍ୟଦୃଷ୍ଟ-ପୂର୍ବାଣି, ପଶ୍ୟାଶ୍ଚର୍ଯ୍ୟାଣି ଭାରତ ॥**

ହେ ଭରତବଂଶୀ ଅର୍ଜୁନ ! ମୋଠାରେ ଆଦିତ୍ୟମାନଙ୍କୁ ଅର୍ଥାତ୍ ଅଦିତିଙ୍କ ଦ୍ୱାଦଶ ପୁତ୍ରଙ୍କୁ, ଅଷ୍ଟବସୁଙ୍କୁ, ଏକାଦଶ ରୁଦ୍ରଙ୍କୁ,

* ଉତ୍ପତ୍ତି, ସ୍ଥିତି, ପ୍ରଳୟ ଓ ଅନ୍ତର୍ଯାମୀରୂପେ ଶାସନକର୍ତ୍ତା ହୋଇଥିବାରୁ ଭଗବାନଙ୍କୁ 'ପ୍ରଭୁ' ବୋଲାଯାଏ ।

ଅଶ୍ୱିନୀକୁମାରଦ୍ୱୟଙ୍କୁ ଏବଂ ଅଣଗ୍ଚଶ ମରୁତଙ୍କୁ ଦେଖ, ତଥା ପୂର୍ବରୁ ଦେଖି ନ ଥିବା ବହୁ ଆଶ୍ଚର୍ଯ୍ୟମୟ ରୂପ ମଧ୍ୟ ଦେଖ ॥ ୬ ॥

**ଇହୈକସ୍ଥଂ ଜଗତ୍-କୃତ୍ସ୍ନଂ, ପଶ୍ୟାଦ୍ୟ ସଚରାଚରମ୍ ।**
**ମମ ଦେହେ ଗୁଡ଼ାକେଶ,* ୟଚ୍ଚାନ୍ୟଦ୍-ଦ୍ରଷ୍ଟୁ-ମିଚ୍ଛସି ॥**

ହେ ଅର୍ଜୁନ ! ଏଥର ମୋର ଏହି ଶରୀରର ଗୋଟିଏ ଅଂଶରେ ଅବସ୍ଥିତ ଚରାଚର ସମଗ୍ର ଜଗତକୁ ଦେଖ, ତଥା ଆଉ ଯାହାକିଛି ଦେଖିବାକୁ ଇଚ୍ଛା କରୁଛ, ତାହା ବି ଦେଖ ॥ ୭ ॥

**ନ ତୁ ମାଂ ଶକ୍ୟସେ ଦ୍ରଷ୍ଟୁ-ମନେନୈବ ସ୍ୱ-ଚକ୍ଷୁଷା ।**
**ଦିବ୍ୟଂ ଦଦାମି ତେ ଚକ୍ଷୁଃ, ପଶ୍ୟ ମେ ୟୋଗ-ମୈଶ୍ୱରମ୍ ॥**

ପରନ୍ତୁ ମୋତେ ତୁମେ ନିଜର ଏହି ପ୍ରାକୃତ ନେତ୍ରଦ୍ୱାରା ଦେଖିବାକୁ ନିଃସନ୍ଦେହ ସମର୍ଥ ହେବ ନାହିଁ । ତେଣୁ ମୁଁ ତୁମକୁ ଦିବ୍ୟ ଅର୍ଥାତ୍ ଅଲୌକିକ ଚକ୍ଷୁ ପ୍ରଦାନ କରୁଛି; ତଦ୍ଦ୍ୱାରା ତୁମେ ମୋର ଈଶ୍ୱରୀୟ ଯୋଗଶକ୍ତି ଦେଖ ॥ ୮ ॥

*ସଞ୍ଜୟ ଉବାଚ*

**ଏବମୁକ୍ତ୍ୱା ତତୋ ରାଜନ୍, ମହାୟୋଗେଶ୍ୱରୋ ହରିଃ ।**
**ଦର୍ଶୟାମାସ ପାର୍ଥାୟ, ପରମଂ ରୂପ-ମୈଶ୍ୱରମ୍ ॥**

ସଞ୍ଜୟ କହିଲେ—ହେ ରାଜନ୍ ! ମହାଯୋଗେଶ୍ୱର ଓ ସକଳ ପାପନାଶକାରୀ ଭଗବାନ ଏପରି କହିବା ପରେ ଅର୍ଜୁନଙ୍କୁ ନିଜର ପରମ ଐଶ୍ୱର୍ଯ୍ୟଯୁକ୍ତ ଦିବ୍ୟସ୍ୱରୂପ ଦେଖାଇଲେ ॥ ୯ ॥

* ଗୁଡ଼ାକା ଅର୍ଥ ନିଦ୍ରା; ଯେ ନିଦ୍ରାକୁ ଜୟ କରିଛନ୍ତି, ତାଙ୍କୁ ଗୁଡ଼ାକେଶ କହନ୍ତି; ଅର୍ଜୁନଙ୍କର ଏହି ଶକ୍ତି ଥିଲା ।

**ଅନେକ-ବକ୍ତ୍ର-ନୟନ,-ମନେକାଦ୍‌ଭୁତ-ଦର୍ଶନମ୍ ।**
**ଅନେକ-ଦିବ୍ୟାଭରଣଂ, ଦିବ୍ୟାନେକୋ-ଦ୍ୟତାୟୁଧମ୍ ॥**
**ଦିବ୍ୟ-ମାଲ୍ୟାମ୍ବର-ଧରଂ, ଦିବ୍ୟ-ଗନ୍ଧାନୁ-ଲେପନମ୍ ।**
**ସର୍ବାଶ୍ଚର୍ଯ୍ୟ-ମୟଂ ଦେବ,-ମନନ୍ତଂ ବିଶ୍ୱତୋ-ମୁଖମ୍ ॥**

ଅନେକ ମୁଖ ଓ ନେତ୍ରଯୁକ୍ତ, ଅନେକ ଅଦ୍ଭୁତ-ଦୃଶ୍ୟମୟ, ବହୁ ଦିବ୍ୟଭୂଷଣରେ ବିଭୂଷିତ ଏବଂ ହସ୍ତରେ ବହୁ ଦିବ୍ୟ ଶସ୍ତ୍ର ଧରି ପ୍ରସ୍ତୁତ ଥିବା, ଦିବ୍ୟମାଳା ଓ ବସ୍ତ୍ର-ପରିହିତ ଏବଂ ସର୍ବାଙ୍ଗ ଦିବ୍ୟଗନ୍ଧଦ୍ୱାରା ଅନୁଲେପିତ, ସର୍ବପ୍ରକାର ଆଶ୍ଚର୍ଯ୍ୟଯୁକ୍ତ, ଅସୀମ ଓ ସକଳ ଦିଗରେ ମୁଖ ଥିବା ବିରାଟସ୍ୱରୂପ ପରମଦେବ ପରମେଶ୍ୱରଙ୍କୁ ଅର୍ଜୁନ ଦର୍ଶନ କଲେ ॥ ୧୦-୧୧ ॥

**ଦିବି ସୂର୍ଯ୍ୟ-ସହସ୍ରସ୍ୟ, ଭବେଦ୍-ଯୁଗ-ପଦୁତ୍‌ଥିତା ।**
**ଯଦି ଭାଃ ସଦୃଶୀ ସା ସ୍ୟାଦ୍,-ଭାସସ୍-ତସ୍ୟ ମହାତ୍ମନଃ ॥**

ଆକାଶରେ ଏକସଙ୍ଗେ ସହସ୍ରେ ସୂର୍ଯ୍ୟ ଉଦିତ ହେଲେ ଯେଉଁ ଜ୍ୟୋତି ଉତ୍ପନ୍ନ ହେବ, ତାହା ସେହି ବିଶ୍ୱରୂପ ପରମାତ୍ମାଙ୍କର ଜ୍ୟୋତିସଦୃଶ କଦାଚିତ୍ ହୋଇପାରିବ ଅର୍ଥାତ୍ ହୋଇପାରିବ ନାହିଁ ॥ ୧୨ ॥

**ତତ୍ରୈକସ୍ଥଂ ଜଗତ୍-କୃତ୍ସ୍ନଂ, ପ୍ରବିଭକ୍ତ-ମନେକଧା ।**
**ଅପଶ୍ୟଦ୍-ଦେବ-ଦେବସ୍ୟ, ଶରୀରେ ପାଣ୍ଡବସ୍-ତଦା ॥**

ପାଣ୍ଡୁପୁତ୍ର ଅର୍ଜୁନ ସେହି ସମୟରେ ଅନେକପ୍ରକାରେ ଯଥାଯଥ ବିଭକ୍ତ ହୋଇ ପୃଥକ୍ ପୃଥକ୍ ରହିଥିବା ସମ୍ପୂର୍ଣ୍ଣ ଜଗତକୁ

ଦେବାଧିଦେବ ଶ୍ରୀକୃଷ୍ଣ ଭଗବାନଙ୍କର ସେହି ଶରୀରରେ ଗୋଟିଏ ସ୍ଥାନରେ ଥିବାର ଦେଖିଲେ ॥ ୧୩ ॥

**ତତଃ ସ ବିସ୍ମୟାବିଷ୍ଟୋ, ହୃଷ୍ଟ-ରୋମା ଧନଞ୍ଜୟଃ ।**
**ପ୍ରଣମ୍ୟ ଶିରସା ଦେବଂ, କୃତାଞ୍ଜଲି-ରଭାଷତ ॥**

ତା'ପରେ ଆଶ୍ଚର୍ଯ୍ୟଚକିତ ଓ ପୁଲକିତଶରୀର ସେହି ଅର୍ଜୁନ ତେଜୋମୟ ବିଶ୍ୱରୂପ ପରମାତ୍ମାଙ୍କୁ ଶ୍ରଦ୍ଧାଭକ୍ତିସହିତ ନତମସ୍ତକ ହୋଇ, ପ୍ରଣାମ କରି, କର ଯୋଡ଼ି କହିଲେ ॥ ୧୪ ॥

*ଅର୍ଜୁନ ଉବାଚ*

**ପଶ୍ୟାମି ଦେବାଂସ୍-ତବ ଦେବ ଦେହେ**
**ସର୍ବାଂସ୍-ତଥା ଭୂତ-ବିଶେଷ-ସଙ୍ଘାନ୍ ।**
**ବ୍ରହ୍ମାଣ-ମୀଶଂ କମଲାସନସ୍ଥ-**
**ମୃଷୀଂଶ୍ଚ ସର୍ବା-ନୁରଗାଂଶ୍ଚ ଦିବ୍ୟାନ୍ ॥**

ଅର୍ଜୁନ କହିଲେ—ହେ ଦେବ ! ଆପଣଙ୍କ ଶରୀରରେ ମୁଁ ସମସ୍ତ ଦେବତାଙ୍କୁ, ଚରାଚର ଭୂତସମୁଦାୟଙ୍କୁ, କମଳ ଆସନରେ ବିରାଜିତ ବ୍ରହ୍ମାଙ୍କୁ, ମହାଦେବଙ୍କୁ ଓ ସମସ୍ତ ଋଷିମାନଙ୍କୁ ତଥା ଦିବ୍ୟ ସର୍ପମାନଙ୍କୁ ଦେଖୁଛି ॥ ୧୫ ॥

**ଅନେକ-ବାହୂଦର-ବକ୍ତ୍ର-ନେତ୍ରଂ**
**ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତ-ରୂପମ୍ ।**
**ନାନ୍ତଂ ନ ମଧ୍ୟଂ ନ ପୁନସ୍-ତବାଦିଂ**
**ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱ-ରୂପ ॥**

ହେ ବିଶ୍ୱେଶ୍ୱର ! ମୁଁ ଆପଣଙ୍କୁ ଅନେକ ଭୁଜ, ଅନେକ ଉଦର, ଅନେକ ମୁଖ ଓ ଅନେକ ନେତ୍ରଯୁକ୍ତ ତଥା ସକଳ ଦିଗରେ ବ୍ୟାପ୍ତ ଅନନ୍ତରୂପବିଶିଷ୍ଟ ଦେଖୁଛି । ହେ ବିଶ୍ୱରୂପ ! ମୁଁ ଆପଣଙ୍କର ନା ଅନ୍ତ, ନା ଆଦି ଓ ନା ମଧ୍ୟ—କିଛି ବି ଦେଖିପାରୁ ନାହିଁ ॥ ୧୬ ॥

**କିରୀଟିନଂ ଗଦିନଂ ଚକ୍ରିଣଂ ଚ**
**ତେଜୋ-ରାଶିଂ ସର୍ବତୋ ଦୀପ୍ତି-ମନ୍ତମ୍ ।**
**ପଶ୍ୟାମି ତ୍ୱାଂ ଦୁର୍-ନିରୀକ୍ଷ୍ୟଂ ସମନ୍ତାଦ୍-**
**ଦୀପ୍ତା-ନଲାର୍କ-ଦ୍ୟୁତିମପ୍ରମେୟମ୍ ॥**

ହେ ବିଷ୍ଣୁ ! ଆପଣଙ୍କୁ ମୁଁ ମୁକୁଟଯୁକ୍ତ, ଗଦାଯୁକ୍ତ ଓ ଚକ୍ରଯୁକ୍ତ ତଥା ସବୁଦିଗରୁ ପ୍ରକାଶମାନତେଜପୁଞ୍ଜ, ପ୍ରଜ୍ୱଳିତ ଅଗ୍ନି ଓ ସୂର୍ଯ୍ୟସଦୃଶ ଜ୍ୟୋତିଯୁକ୍ତ, ଗ୍ରହିଁଦେଖିବା ଅତ୍ୟନ୍ତ କଷ୍ଟକର ଓ ସବୁଦିଗରୁ ଅପ୍ରମେୟସ୍ୱରୂପ ଦେଖୁଛି ॥ ୧୭ ॥

**ତ୍ୱମକ୍ଷରଂ ପରମଂ ବେଦିତବ୍ୟଂ**
**ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।**
**ତ୍ୱମବ୍ୟୟଃ ଶାଶ୍ୱତ-ଧର୍ମ-ଗୋପ୍ତା**
**ସନାତନସ୍-ତ୍ୱଂ ପୁରୁଷୋ ମତୋ ମେ ॥**

ମୋ ମତରେ ଆପଣ ହିଁ ଜାଣିବାଯୋଗ୍ୟ ପରମ ଅକ୍ଷର ଅର୍ଥାତ୍ ପରବ୍ରହ୍ମ ପରମାତ୍ମା; ଆପଣ ହିଁ ଏହି ଜଗତର ପରମ ଆଶ୍ରୟ; ଆପଣ ହିଁ ଅନାଦି ଧର୍ମର ରକ୍ଷକ ଓ ଆପଣ ହିଁ ଅବିନାଶୀ ସନାତନ ପୁରୁଷ ॥ ୧୮ ॥

**ଅନାଦି-ମଧ୍ୟାନ୍ତ-ମନନ୍ତ-ବୀର୍ଯ୍ୟ-**
**ମନନ୍ତ-ବାହୁଂ ଶଶି-ସୂର୍ଯ୍ୟ-ନେତ୍ରମ୍ ।**
**ପଶ୍ୟାମି ତ୍ୱାଂ ଦୀପ୍ତ-ହୁତାଶ-ବକ୍ତ୍ରଂ**
**ସ୍ୱ-ତେଜସା ବିଶ୍ୱ-ମିଦଂ ତପନ୍ତମ୍ ॥**

ଆପଣଙ୍କୁ ମୁଁ ଆଦି, ମଧ୍ୟ ଓ ଅନ୍ତରହିତ, ଅନନ୍ତ ସାମର୍ଥ୍ୟ-ଯୁକ୍ତ, ଅନନ୍ତଭୁଜଧାରୀ, ଚନ୍ଦ୍ର-ସୂର୍ଯ୍ୟରୂପକ ନେତ୍ରଧାରୀ, ପ୍ରଜ୍ୱଳିତ ଅଗ୍ନିରୂପକମୁଖବିଶିଷ୍ଟ ଓ ନିଜ ତେଜରେ ଏହି ଜଗତକୁ ସନ୍ତପ୍ତ କରୁଥିବା ଦେଖୁଛି ॥ ୧୯ ॥

**ଦ୍ୟାବା-ପୃଥିବ୍ୟୋ-ରିଦ-ମନ୍ତରଂ ହି**
**ବ୍ୟାପ୍ତଂ ତ୍ୱୟୈକେନ ଦିଶଶ୍-ଚ ସର୍ବାଃ ।**
**ଦୃଷ୍ଟ୍ୱାଦ୍‌ଭୁତଂ ରୂପ-ମୁଗ୍ରଂ ତବେଦଂ**
**ଲୋକ-ତ୍ରୟଂ ପ୍ରବ୍ୟଥିତଂ ମହାତ୍ମନ୍ ॥**

ହେ ମହାତ୍ମନ୍ ! ସ୍ୱର୍ଗ ଓ ପୃଥିବୀ ମଧ୍ୟରେ ଥିବା ଏହି ସମ୍ପୂର୍ଣ୍ଣ ଆକାଶ ତଥା ସମସ୍ତ ଦିଗ ଏକମାତ୍ର ଆପଣଙ୍କ ଦ୍ୱାରା ହିଁ ପରିପୂର୍ଣ୍ଣ ହୋଇଛି ତଥା ଆପଣଙ୍କର ଏହି ଅଲୌକିକ ଓ ଭୟଙ୍କର ରୂପ ଦେଖି ତ୍ରିଲୋକ ଅତ୍ୟନ୍ତ ଭୟରେ ଥରହର ହେଉଛି ॥ ୨୦ ॥

**ଅମୀ ହି ତ୍ୱାଂ ସୁର-ସଙ୍ଘା ବିଶନ୍ତି**
**କେଚିଦ୍-ଭୀତାଃ ପ୍ରାଞ୍ଜଲୟୋ ଗୃଣନ୍ତି ।**
**ସ୍ୱସ୍ତୀ-ତ୍ୟୁକ୍ତ୍ୱା ମହର୍ଷି-ସିଦ୍ଧ-ସଙ୍ଘାଃ**
**ସ୍ତୁବନ୍ତି ତ୍ୱାଂ ସ୍ତୁତିଭିଃ ପୁଷ୍କଲାଭିଃ ॥**

(ଦେଖନ୍ତୁ ଯେ) ସେହି ଦେବସମୁଦାୟ ହିଁ ଆପଣଙ୍କ ମଧ୍ୟରେ ପ୍ରବେଶ କରୁଛନ୍ତି ଓ କେତେକ କରପତ୍ର ଯୋଡ଼ି ଆପଣଙ୍କ ନାମ ଓ ଗୁଣ ଉଚ୍ଚାରଣ କରୁଛନ୍ତି ତଥା ମହର୍ଷି ଓ ସିଦ୍ଧସମୂହ 'କଲ୍ୟାଣ ହେଉ' କହି ଉତ୍ତମ ଉତ୍ତମ ସ୍ତୋତ୍ରମାନଙ୍କ ଦ୍ୱାରା ଆପଣଙ୍କୁ ସ୍ତୁତି କରୁଛନ୍ତି ॥ ୨୧ ॥

**ରୁଦ୍ରାଦିତ୍ୟା ବସବୋ ଯେ ଚ ସାଧ୍ୟା**
**ବିଶ୍ୱେଽଶ୍ୱିନୌ ମରୁତଶ୍-ଚୋଷ୍ମପାଶ୍-ଚ ।**
**ଗନ୍ଧର୍ବ-ଯକ୍ଷା-ସୁର-ସିଦ୍ଧ-ସଙ୍ଘା**
**ବୀକ୍ଷନ୍ତେ ତ୍ୱାଂ ବିସ୍ମିତାଶ୍-ଚୈବ ସର୍ବେ ॥**

ଯେଉଁ ଏକାଦଶ ରୁଦ୍ର ଓ ଦ୍ୱାଦଶ ଆଦିତ୍ୟ ତଥା ଅଷ୍ଟ ବସୁ, ସାଧ୍ୟଗଣ, ବିଶ୍ୱେଦେବମାନେ, ଅଶ୍ୱିନୀକୁମାରଦ୍ୱୟ ତଥା ଅଣଚାଶ ମରୁତ୍‌ଗଣ ଓ ପିତୃସମୁଦାୟ ତଥା ଗନ୍ଧର୍ବ, ଯକ୍ଷ, ରାକ୍ଷସ ଓ ସିଦ୍ଧମାନଙ୍କ ସମୁଦାୟ ଅଛନ୍ତି, ସେ ସମସ୍ତେ ବିସ୍ମିତ ହୋଇ ଆପଣଙ୍କୁ ଚାହୁଁଛନ୍ତି ॥ ୨୨ ॥

**ରୂପଂ ମହତ୍ତେ ବହୁ-ବକ୍ତ୍ର-ନେତ୍ରଂ**
**ମହାବାହୋ ବହୁ-ବାହୂରୁ-ପାଦମ୍ ।**
**ବହୂଦରଂ ବହୁ-ଦଂଷ୍ଟ୍ରା-କରାଳଂ**
**ଦୃଷ୍ଟ୍ୱା ଲୋକାଃ ପ୍ରବ୍ୟଥିତାସ୍-ତଥାହମ୍ ॥**

ହେ ମହାବାହୁ ! ଆପଣଙ୍କର ବହୁ ମୁଖ ଓ ନେତ୍ରବିଶିଷ୍ଟ, ବହୁ ହସ୍ତ, ଉରୁ (ଜଙ୍ଘ) ଓ ପାଦବିଶିଷ୍ଟ, ବହୁ ଉଦରଯୁକ୍ତ ତଥା ବହୁ କରାଳ (ଭୟଙ୍କର) ତୀକ୍ଷ୍ଣ ଦନ୍ତଯୁକ୍ତ ଅତ୍ୟନ୍ତ ଭୀଷଣ ରୂପ

ଦେଖି ସବୁ ଲୋକ ବ୍ୟଥିତ ହେଉଛନ୍ତି ତଥା ମୁଁ ବି ବ୍ୟାକୁଳ ହେଉଛି ॥ ୨୩ ॥

**ନଭଃ-ସ୍ପୃଶଂ ଦୀପ୍ତ-ମନେକ-ବର୍ଣ୍ଣଂ**
**ବ୍ୟାତ୍ତାନନଂ ଦୀପ୍ତ-ବିଶାଲ୍-ନେତ୍ରମ୍ ।**
**ଦୃଷ୍ଟ୍ୱା ହି ତ୍ୱାଂ ପ୍ରବ୍ୟଥିତାନ୍ତ-ରାତ୍ମା**
**ଧୃତିଂ ନ ବିନ୍ଦାମି ଶମଂ ଚ ବିଷ୍ଣୋ ॥**

କାରଣ, ହେ ବିଷ୍ଣୋ ! ଆକାଶକୁ ସ୍ପର୍ଶ କରୁଥିବା, ଦେଦୀପ୍ୟମାନ, ଅନେକବର୍ଣ୍ଣବିଶିଷ୍ଟ, ବିସ୍ତାରିତ ମୁଖଯୁକ୍ତ ଓ ପ୍ରଜ୍ୱଳିତ ବିଶାଳ ନେତ୍ରଯୁକ୍ତ ଆପଣଙ୍କ ରୂପକୁ ଦେଖି, ମୋର ଅନ୍ତଃକରଣ ଭୟଭୀତ ହେଉଛି ଏବଂ ମୁଁ ଧୈର୍ଯ୍ୟ ଓ ଶାନ୍ତି ପାଉ ନାହିଁ ॥ ୨୪ ॥

**ଦଂଷ୍ଟ୍ରା-କରାଲ୍ାନି ଚ ତେ ମୁଖାନି**
**ଦୃଷ୍ଟ୍ୱୈବ କାଲ୍ାନଲ୍-ସନ୍ନିଭାନି ।**
**ଦିଶୋ ନ ଜାନେ ନ ଲଭେ ଚ ଶର୍ମ**
**ପ୍ରସୀଦ ଦେବେଶ ଜଗନ୍ନିବାସ ॥**

ବିକଟ ଦନ୍ତପାଟିହେତୁ ଭୟଙ୍କର ଦିଶୁଥିବା ଓ ପ୍ରଳୟକାଳର ଅଗ୍ନିପରି ପ୍ରଜ୍ୱଳିତ ହେଉଥିବା ଆପଣଙ୍କ ମୁଖଗୁଡ଼ିକୁ ଦେଖି ମୁଁ ଦିଗମାନଙ୍କୁ ଜାଣିପାରୁ ନାହିଁ ଏବଂ ମାନସିକ ଶାନ୍ତି ବି ପାଉ ନାହିଁ। ତେଣୁ ହେ ଦେବେଶ ! ହେ ଜଗନ୍ନିବାସ ! ଆପଣ ପ୍ରସନ୍ନ ହୁଅନ୍ତୁ ॥ ୨୫ ॥

ଅମୀ ଚ ତ୍ୱାଂ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ
ସର୍ବେ ସହୈବା-ବନିପାଲ୍-ସଂଘୈଃ ।
ଭୀଷ୍ମୋ ଦ୍ରୋଣଃ ସୂତ-ପୁତ୍ରସ୍-ତଥାସୌ
ସହାସ୍ମଦୀୟୈ-ରପି ଯୋଧ-ମୁଖ୍ୟୈଃ ॥
ବକ୍ତ୍ରାଣି ତେ ତ୍ୱରମାଣା ବିଶନ୍ତି
ଦଂଷ୍ଟ୍ରା-କରାଲାନି ଭୟାନକାନି ।
କେଚିଦ୍-ବିଲଗ୍ନା ଦଶନାନ୍ତରେଷୁ
ସଂଦୃଶ୍ୟନ୍ତେ ଚୂର୍ଣ୍ଣିତୈ-ରୁତ୍ତମାଙ୍ଗୈଃ ॥

ସେହି ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ରାଜାମାନଙ୍କ ସମୁଦାୟଙ୍କ ସହିତ ଆପଣଙ୍କ ଭିତରକୁ ପ୍ରବେଶ କରୁଛନ୍ତି ଏବଂ ଭୀଷ୍ମପିତାମହ, ଦ୍ରୋଣାଚାର୍ଯ୍ୟ ତଥା ସେହି ସୂତପୁତ୍ର କର୍ଣ୍ଣଙ୍କ ସହିତ ଆମ ପକ୍ଷର ପ୍ରଧାନ ପ୍ରଧାନ ଯୋଦ୍ଧାମାନ ମଧ୍ୟ ପ୍ରବଳ ବେଗରେ ଧାଇଁ ଧାଇଁ ଆସି ଆପଣଙ୍କର ତୀକ୍ଷ୍ଣଦନ୍ତପାଟିଯୁକ୍ତ ବିକରାଳ ଓ ଭୟଙ୍କର ମୁଖମାନଙ୍କରେ ପ୍ରବେଶ କରୁଛନ୍ତି ଏବଂ କେହି କେହି ଚୂର୍ଣ୍ଣବିଚୂର୍ଣ୍ଣ ମସ୍ତକସହିତ ଆପଣଙ୍କ ଦାନ୍ତସନ୍ଧିମାନଙ୍କରେ ଲାଗିରହିଥିବାର ଦେଖାଯାଉଛନ୍ତି ॥ ୨୬-୨୭ ॥

ଯଥା ନଦୀନାଂ ବହବୋଽମ୍ବୁ-ବେଗାଃ
ସମୁଦ୍ର-ମେବାଭି-ମୁଖା ଦ୍ରବନ୍ତି ।
ତଥା ତବାମୀ ନର-ଲୋକ-ବୀରା
ବିଶନ୍ତି ବକ୍ତ୍ରାଣ୍ୟଭି-ବିଜ୍ୱଲନ୍ତି ॥

ନଦୀମାନଙ୍କ ଜଳରାଶିର ବହୁ ପ୍ରବାହ ଯେପରି ସ୍ୱଭାବତଃ

ସମୁଦ୍ର ଅଭିମୁଖରେ ହିଁ ଧାବମାନ ହୋଇ ସମୁଦ୍ରରେ ପ୍ରବେଶ କରନ୍ତି, ନରଲୋକର ସେହିସବୁ ବୀରମାନେ ମଧ୍ୟ ଠିକ୍ ସେହିପରି ଆପଣଙ୍କ ପ୍ରଜ୍ୱଳିତ ମୁଖମାନଙ୍କରେ ପ୍ରବେଶ କରୁଛନ୍ତି ॥ ୨୮ ॥

**ଯଥା ପ୍ରଦୀପ୍ତଂ ଜ୍ୱଳନଂ ପତଙ୍ଗା**
**ବିଶନ୍ତି ନାଶାୟ ସମୃଦ୍ଧ-ବେଗାଃ ।**
**ତଥୈବ ନାଶାୟ ବିଶନ୍ତି ଲୋକାସ୍-**
**ତବାପି ବକ୍ତ୍ରାଣି ସମୃଦ୍ଧ-ବେଗାଃ ॥**

ପତଙ୍ଗମାନେ ଯେପରି ମୋହବଶ ହୋଇ ନଷ୍ଟ ହେବାପାଇଁ ଅତ୍ୟନ୍ତ ବେଗରେ ଉଡ଼ି ଉଡ଼ି ଆସି ପ୍ରଜ୍ୱଳିତ ଅଗ୍ନିରେ ପ୍ରବେଶ କରନ୍ତି, ଲୋକମାନେ ମଧ୍ୟ ସେହିପରି ନିଜର ବିନାଶପାଇଁ ଅତ୍ୟନ୍ତ ବେଗରେ ଧାଇଁ ଧାଇଁ ଆସି ଆପଣଙ୍କ ମୁଖମାନଙ୍କରେ ପ୍ରବେଶ କରୁଛନ୍ତି ॥ ୨୯ ॥

**ଲେଲିହ୍ୟସେ ଗ୍ରସମାନଃ ସମନ୍ତାଲ୍-**
**ଲୋକାନ୍-ସମଗ୍ରାନ୍ ବଦନୈର୍-ଜ୍ୱଲଦ୍ଭିଃ ।**
**ତେଜୋଭି-ରାପୂର୍ଯ୍ୟ ଜଗତ୍-ସମଗ୍ରଂ**
**ଭାସସ୍-ତବୋଗ୍ରାଃ ପ୍ରତପନ୍ତି ବିଷ୍ଣୋ ॥**

ଆପଣ ସେସବୁ ଲୋକଙ୍କୁ ପ୍ରଜ୍ୱଳିତ ମୁଖମାନଙ୍କ ଦ୍ୱାରା କାଳସଦୃଶ କବଳିତ କରି ସବୁ ଦିଗରୁ ବାରମ୍ବାର ଲେହନ କରୁଛନ୍ତି । ହେ ବିଷ୍ଣୋ ! ଆପଣଙ୍କର ଉଗ୍ର ଆଲୋକ ସମଗ୍ର ଜଗତକୁ ତେଜଦ୍ୱାରା ପରିପୂର୍ଣ୍ଣ କରି ଉତ୍ତପ୍ତ କରୁଛି ॥ ୩୦ ॥

**ଆଖ୍ୟାହି ମେ କୋ ଭବାନୁଗ୍ର-ରୂପୋ**
**ନମୋଽସ୍ତୁ ତେ ଦେବ-ବର ପ୍ରସୀଦ ।**
**ବିଜ୍ଞାତୁ-ମିଚ୍ଛାମି ଭବନ୍ତମାଦ୍ୟଂ**
**ନ ହି ପ୍ରଜାନାମି ତବ ପ୍ରବୃତ୍ତିମ୍ ॥**

ହେ ଭଗବନ୍ ! ଉଗ୍ରରୂପଧାରୀ ଆପଣ କିଏ, କୃପା କରି ମୋତେ କହନ୍ତୁ । ହେ ଦେବଶ୍ରେଷ୍ଠ ! ଆପଣଙ୍କୁ ନମସ୍କାର । ଆପଣ ପ୍ରସନ୍ନ ହୁଅନ୍ତୁ । ଆଦିପୁରୁଷ ଆପଣଙ୍କୁ ମୁଁ ବିଶେଷରୂପେ ଜାଣିବାକୁ ଚାହୁଁଛି; କାରଣ ମୁଁ ଆପଣଙ୍କ ପ୍ରବୃତ୍ତିକୁ ଜାଣିପାରୁ ନାହିଁ ॥ ୩୧ ॥

*ଶ୍ରୀଭଗବାନୁବାଚ*

**କାଲୋଽସ୍ମି ଲୋକ-କ୍ଷୟକୃତ୍-ପ୍ରବୃଦ୍ଧୋ**
**ଲୋକାନ୍ ସମାହର୍ତ୍ତୁ-ମିହ ପ୍ରବୃତ୍ତଃ ।**
**ଋତେଽପି ତ୍ୱାଂ ନ ଭବିଷ୍ୟନ୍ତି ସର୍ବେ**
**ୟେଽବସ୍ଥିତାଃ ପ୍ରତ୍ୟନୀକେଷୁ ୟୋଧାଃ ॥**

**ଶ୍ରୀଭଗବାନ୍ କହିଲେ**—ମୁଁ ହେଉଛି ଲୋକମାନଙ୍କର ବିନାଶକାରୀ ପ୍ରବୃଦ୍ଧ ମହାକାଳ । ଏହି ସମୟରେ ଲୋକମାନଙ୍କୁ ବିନାଶ କରିବାପାଇଁ ମୁଁ ପ୍ରବୃତ୍ତ ହୋଇଛି । ଏଣୁ ତୁମ ଶତ୍ରୁପକ୍ଷର ସେନାରେ ଯେଉଁ ଯୋଦ୍ଧାମାନେ ଅଛନ୍ତି, ସେ ସମସ୍ତେ, ତୁମେ ଯୁଦ୍ଧ ନ କଲେ ମଧ୍ୟ, ରହିବେ ନାହିଁ ଅର୍ଥାତ୍ ସେ ସମସ୍ତଙ୍କର ବିନାଶ ହୋଇଯିବ ॥ ୩୨ ॥

**ତସ୍ମାତ୍ତ୍ୱ-ମୁତ୍ତିଷ୍ଠ ଯଶୋ ଲଭସ୍ୱ**
**ଜିତ୍ୱା ଶତ୍ରୂନ୍ ଭୁଙ୍‌କ୍ଷ୍ୱ ରାଜ୍ୟଂ ସମୃଦ୍ଧମ୍ ।**
**ମୟୈବୈତେ ନିହତାଃ ପୂର୍ବମେବ**
**ନିମିତ୍ତ-ମାତ୍ରଂ ଭବ ସବ୍ୟସାଚିନ୍ ॥**

ଅତଏବ ତୁମେ ଉଠ । ଯଶ ଲାଭ କର ଓ ଶତ୍ରୁମାନଙ୍କୁ ଜୟ କରି ଧନଧାନ୍ୟରେ ସମ୍ପନ୍ନ ରାଜ୍ୟ ଭୋଗ କର । ଏହି ଶୂରବୀରମାନେ ଆଗରୁ ହିଁ ମୋ ଦ୍ୱାରା ନିହତ ହୋଇସାରିଛନ୍ତି; ହେ ସବ୍ୟସାଚୀ*! ତୁମେ କେବଳ ନିମିତ୍ତମାତ୍ର ହୋଇଯାଅ ॥ ୩୩ ॥

**ଦ୍ରୋଣଂ ଚ ଭୀଷ୍ମଂ ଚ ଜୟଦ୍ରଥଂ ଚ**
**କର୍ଣ୍ଣଂ ତଥାନ୍ୟା-ନପି ଯୋଧବୀରାନ୍ ।**
**ମୟା ହତାଂସ୍-ତ୍ୱଂ ଜହି ମା ବ୍ୟଥିଷ୍ଠା**
**ଯୁଧ୍ୟସ୍ୱ ଜେତାସି ରଣେ ସପତ୍ନାନ୍ ॥**

ଦ୍ରୋଣାଚାର୍ଯ୍ୟ ଓ ଭୀଷ୍ମପିତାମହ ତଥା ଜୟଦ୍ରଥ ଓ କର୍ଣ୍ଣ ତଥା ମୋ ଦ୍ୱାରା ନିହତ ହୋଇଥିବା ଅନ୍ୟାନ୍ୟ ଶୂରବୀର ଯୋଦ୍ଧାଙ୍କୁ ମଧ୍ୟ ତୁମେ ମାର । ଭୟ କର ନାହିଁ । ନିଃସନ୍ଦେହ ତୁମେ ଯୁଦ୍ଧରେ ଶତ୍ରୁମାନଙ୍କୁ ଜିଣିବ । ଅତଏବ ତୁମେ ଯୁଦ୍ଧ କର ॥ ୩୪ ॥

*ସଞ୍ଜୟ ଉବାଚ*

**ଏତଚ୍ଛ୍ରୁତ୍ୱା ବଚନଂ କେଶବସ୍ୟ**
**କୃତାଞ୍ଜଲିର୍-ବେପମାନଃ କିରୀଟୀ ।**

* ଯେ ବାମହାତରେ ବାଣ ଚଳାଇପାରନ୍ତି, ସେ ସବ୍ୟସାଚୀ । ଅର୍ଜୁନ ଏଥିରେ ଦକ୍ଷ ଥିଲେ ।

**ନମସ୍-କୃତ୍ୱା ଭୂୟ ଏବାହ କୃଷ୍ଣଂ**
**ସଗଦ୍‌ଗଦଂ ଭୀତଭୀତଃ ପ୍ରଣମ୍ୟ ॥**

ସଞ୍ଜୟ କହିଲେ—ଭଗବାନ୍ କେଶବଙ୍କର ଏହି କଥା ଶୁଣି ଅର୍ଜୁନ ଯୋଡ଼ହସ୍ତ ହୋଇ ଥରି ଥରି, ନମସ୍କାର କରି, ଅତ୍ୟନ୍ତ ଭୟଭୀତ ହୋଇ, ପ୍ରଣାମ କରି ଗଦ୍‌ଗଦ କଣ୍ଠରେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ପୁଣି ଥରେ କହିଲେ ଅର୍ଥାତ୍ ସ୍ତୁତି କରିବାକୁ ଲାଗିଲେ—॥ ୩୫ ॥

*ଅର୍ଜୁନ ଉବାଚ*

**ସ୍ଥାନେ ହୃଷୀକେଶ ତବ ପ୍ରକୀର୍ତ୍ୟା**
**ଜଗତ୍-ପ୍ରହୃଷ୍ୟ-ତ୍ୟନୁରଜ୍ୟତେ ଚ ।**
**ରକ୍ଷାଂସି ଭୀତାନି ଦିଶୋ ଦ୍ରବନ୍ତି**
**ସର୍ବେ ନମସ୍ୟନ୍ତି ଚ ସିଦ୍ଧ-ସଙ୍ଘାଃ ॥**

ଅର୍ଜୁନ କହିଲେ—ହେ ଅନ୍ତର୍ଯାମୀ ! ଏହା ଉଚିତ ଯେ, ଆପଣଙ୍କ ନାମ, ଗୁଣ ଓ ପ୍ରଭାବ କୀର୍ତ୍ତନଦ୍ୱାରା ଜଗତ ଅତ୍ୟନ୍ତ ଆନନ୍ଦିତ ହେଉଛି ଏବଂ ଆପଣଙ୍କ ପ୍ରତି ଅନୁରକ୍ତ ମଧ୍ୟ ହେଉଛି ତଥା ଭୟଭୀତ ରାକ୍ଷସମାନେ ବିଭିନ୍ନ ଦିଗକୁ ଧାଇଁ ପଳାଇଯାଉଛନ୍ତି ଏବଂ ସମସ୍ତ ସିଦ୍ଧସମୁଦାୟ ନମସ୍କାର କରୁଛନ୍ତି ॥ ୩୬ ॥

**କସ୍ମାଚ୍ଚ ତେ ନ ନମେରନ୍-ମହାତ୍ମନ୍**
**ଗରୀୟସେ ବ୍ରହ୍ମଣୋଽପ୍ୟାଦି-କର୍ତ୍ରେ ।**
**ଅନନ୍ତ ଦେବେଶ ଜଗନ୍ନିବାସ**
**ତ୍ୱମକ୍ଷରଂ ସଦସତ୍-ତତ୍-ପରଂ ଯତ୍ ॥**

ହେ ମହାତ୍ମନ୍ ! ଆପଣ ବ୍ରହ୍ମାଙ୍କର ମଧ୍ୟ ଆଦିକର୍ତ୍ତା ଓ ସମସ୍ତଙ୍କ ଠାରୁ ଶ୍ରେଷ୍ଠ; ଆପଣଙ୍କୁ ଏମାନେ ନମସ୍କାର ନ କରିବେ କାହିଁକି? କାରଣ, ହେ ଅନନ୍ତ ! ହେ ଦେବେଶ ! ହେ ଜଗନ୍ନିବାସ ! ସତ୍, ଅସତ୍ ଓ ତା'ଠାରୁ ବି ଊର୍ଦ୍ଧ୍ୱସ୍ଥିତ ଯେଉଁ ଅକ୍ଷର ଅର୍ଥାତ୍ ସଚ୍ଚିଦାନନ୍ଦଘନ ବ୍ରହ୍ମ ଅଛନ୍ତି, ସେ ମଧ୍ୟ ଆପଣ ହିଁ ଅଟନ୍ତି ।। ୩୭ ।।

**ତ୍ୱମାଦି-ଦେବଃ ପୁରୁଷଃ ପୁରାଣସ୍-**
**ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।**
**ବେତ୍ତାସି ବେଦ୍ୟଂ ଚ ପରଂ ଚ ଧାମ**
**ତ୍ୱୟା ତତଂ ବିଶ୍ୱ-ମନନ୍ତ-ରୂପ ।।**

ଆପଣ ଆଦିଦେବ ଓ ସନାତନ ପୁରୁଷ । ଆପଣ ଏହି ଜଗତର ପରମ ଆଶ୍ରୟ, ଜ୍ଞାତା, ଜ୍ଞେୟ ତଥା ପରମଧାମ । ହେ ଅନନ୍ତରୂପ ! ଆପଣଙ୍କ ଦ୍ୱାରା ଏହି ସମସ୍ତ ଜଗତ ବ୍ୟାପ୍ତ ଅର୍ଥାତ୍ ପରିପୂର୍ଣ୍ଣ ହୋଇଛି ।। ୩୮ ।।

**ବାୟୁର୍-ଯମୋଽଗ୍ନିର୍-ବରୁଣଃ ଶଶାଙ୍କଃ**
**ପ୍ରଜାପତିସ୍-ତ୍ୱଂ ପ୍ରପିତାମହଶ୍-ଚ ।**
**ନମୋ ନମସ୍ତେଽସ୍ତୁ ସହସ୍ର-କୃତ୍ୱଃ**
**ପୁନଶ୍ଚ ଭୂୟୋଽପି ନମୋ ନମସ୍ତେ ।।**

ଆପଣ ବାୟୁ, ଯମ, ଅଗ୍ନି, ବରୁଣ, ଚନ୍ଦ୍ରମା, ପ୍ରଜାମାନଙ୍କର ପତି ବ୍ରହ୍ମା ଓ ବ୍ରହ୍ମାଙ୍କର ପିତା ମଧ୍ୟ ଅଟନ୍ତି । ଆପଣଙ୍କୁ ସହସ୍ରବାର ନମସ୍କାର ! ପୁନର୍ବାର ନମସ୍କାର ! ବାରମ୍ବାର

ନମସ୍କାର !! ଆହୁରି ପୁଣି ଥରେ ନମସ୍କାର !!! ॥ ୩୯ ॥

**ନମଃ ପୁରସ୍ତା-ଦଥ ପୃଷ୍ଠତସ୍-ତେ**
**ନମୋଽସ୍ତୁ ତେ ସର୍ବତ ଏବ ସର୍ବ ।**
**ଅନନ୍ତ-ବୀର୍ଯ୍ୟାମିତ-ବିକ୍ରମସ୍-ତ୍ୱଂ**
**ସର୍ବଂ ସମାପ୍ନୋଷି ତତୋଽସି ସର୍ବଃ ॥**

ହେ ଅନନ୍ତ ସାମର୍ଥ୍ୟବାନ୍ ! ଆପଣଙ୍କୁ ସମ୍ମୁଖରୁ ଓ ପଶ୍ଚାତ୍-ଦେଶରୁ ମଧ୍ୟ ମୋର ନମସ୍କାର ! ହେ ସର୍ବାତ୍ମନ୍ ! ଆପଣଙ୍କୁ ସବୁଦିଗରୁ ନମସ୍କାର; କାରଣ ଆପଣ ଅନନ୍ତପରାକ୍ରମଶାଳୀ ଓ ସକଳ ସଂସାରକୁ ବ୍ୟାପି ରହିଛନ୍ତି । ତେଣୁ ଆପଣ ହିଁ ସର୍ବରୂପ ଅଟନ୍ତି ॥ ୪୦ ॥

**ସଖେତି ମତ୍ୱା ପ୍ରସଭଂ ଯଦୁକ୍ତଂ**
**ହେ କୃଷ୍ଣ ହେ ଯାଦବ ହେ ସଖେତି ।**
**ଅଜାନତା ମହିମାନଂ ତବେଦଂ**
**ମୟା ପ୍ରମାଦାତ୍ ପ୍ରଣୟେନ ବାପି ॥**
**ଯଚ୍ଚାବ-ହାସାର୍ଥ-ମସତ୍-କୃତୋଽସି**
**ବିହାର-ଶଯ୍ୟାସନ-ଭୋଜନେଷୁ ।**
**ଏକୋଽଥବାପ୍ୟ-ଚ୍ୟୁତ ତତ୍-ସମକ୍ଷଂ**
**ତତ୍-କ୍ଷାମୟେ ତ୍ୱା-ମହ-ମପ୍ରମେୟମ୍ ॥**

ଆପଣଙ୍କର ଏପରି ଅଚିନ୍ତ୍ୟ ପ୍ରଭାବ ଜାଣି ନ ଥିବାରୁ, ଆପଣ ମୋର ସଖା ବୋଲି ଭାବି ପ୍ରେମବଶତଃ ଅଥବା ଭୁଲବଶତଃ ମଧ୍ୟ ମୁଁ ଆପଣଙ୍କୁ 'ହେ କୃଷ୍ଣ !', 'ହେ ଯାଦବ !',

'ହେ ସଖା !' ବୋଲି ବିନା ବୁଝିବିଚାରି ଯାହା କିଛି ହଠାତ୍ କହିଦେଇଛି ଏବଂ ହେ ଅଚ୍ୟୁତ ! ବିହାର, ଶଯ୍ୟା, ଆସନ ଓ ଭୋଜନାଦିବେଳେ ଆପଣ ମୋ ଦ୍ୱାରା ପରିହାସହେତୁ ଏକାକୀ ବା ସଖାମାନଙ୍କ ସମ୍ମୁଖରେ ଯାହା ଅପମାନିତ ହୋଇଛନ୍ତି, ସେହି ଅପରାଧପାଇଁ ଅପ୍ରମେୟସ୍ୱରୂପ ଅର୍ଥାତ୍ ଅଚିନ୍ତ୍ୟ ପ୍ରଭାବଶାଳୀ ଆପଣଙ୍କୁ ମୁଁ କ୍ଷମା ପ୍ରାର୍ଥନା କରୁଛି ॥ ୪୧-୪୨ ॥

**ପିତାସି ଲୋକସ୍ୟ ଚରାଚରସ୍ୟ**
**ତ୍ୱମସ୍ୟ ପୂଜ୍ୟଶ୍ଚ ଗୁରୁର୍-ଗରୀୟାନ୍ ।**
**ନ ତ୍ୱତ୍-ସମୋଽସ୍ତ୍ୟ-ଭ୍ୟଧିକଃ କୁତୋଽନ୍ୟୋ**
**ଲୋକତ୍ରୟେଽପ୍ୟ-ପ୍ରତିମ-ପ୍ରଭାବ ॥**

ଆପଣ ଏହି ଚରାଚର ଜଗତର ପିତା ଓ ସର୍ବଶ୍ରେଷ୍ଠ ଗୁରୁ ତଥା ପରମ ପୂଜନୀୟ ପୁରୁଷ ଅଟନ୍ତି । ହେ ଅନୁପମପ୍ରଭାବଶାଳୀ! ତ୍ରିଲୋକରେ ଆପଣଙ୍କ ସମାନ ହୋଇ ଅନ୍ୟ କେହି ନାହାନ୍ତି; ଅଧିକ ବା ହେବେ କିପରି? ॥ ୪୩ ॥

**ତସ୍ମାତ୍ ପ୍ରଣମ୍ୟ ପ୍ରଣିଧାୟ କାୟଂ**
**ପ୍ରସାଦୟେ ତ୍ୱା-ମହମୀଶ-ମୀଡ୍ୟମ୍ ।**
**ପିତେବ ପୁତ୍ରସ୍ୟ ସଖେବ ସଖ୍ୟୁଃ**
**ପ୍ରିୟଃ ପ୍ରିୟାୟାର୍-ହସି ଦେବ ସୋଢୁମ୍ ॥**

ଅତଏବ ହେ ପ୍ରଭୁ ! ମୁଁ ନିଜ ଶରୀରକୁ ଭଲଭାବରେ ଆପଣଙ୍କ ଚରଣରେ ନିବେଦିତ କରି, ସାଷ୍ଟାଙ୍ଗ ପ୍ରଣାମ କରି,

ସର୍ବେଶ୍ୱର ଓ ସ୍ତୁତିଯୋଗ୍ୟ ଆପଣଙ୍କୁ ପ୍ରସନ୍ନ ହେବାପାଇଁ ପ୍ରାର୍ଥନା କରୁଛି । ହେ ଦେବ ! ପିତା ଯେପରି ପୁତ୍ରର, ସଖା ଯେପରି ସଖାର ଓ ପତି ଯେପରି ପ୍ରିୟତମା ପତ୍ନୀର ଅପରାଧ ସହ୍ୟ କରନ୍ତି, ଆପଣ ମଧ୍ୟ ସେହିପରି ମୋର ଅପରାଧ ସହ୍ୟ କରିବାକୁ ଯୋଗ୍ୟ ଅଟନ୍ତି ।। ୪୪ ।।

**ଅଦୃଷ୍ଟ-ପୂର୍ବଂ ହୃଷିତୋଽସ୍ମି ଦୃଷ୍ଟ୍ୱା**
**ଭୟେନ ଚ ପ୍ରବ୍ୟଥିତଂ ମନୋ ମେ ।**
**ତଦେବ ମେ ଦର୍ଶୟ ଦେବ-ରୂପଂ**
**ପ୍ରସୀଦ ଦେବେଶ ଜଗନ୍ନିବାସ ।।**

ଆପଣଙ୍କର ଏହି ଅଦୃଷ୍ଟପୂର୍ବ ଆଶ୍ଚର୍ଯ୍ୟମୟ ରୂପ ଦେଖି ମୁଁ ହର୍ଷିତ ହେଉଛି ଓ ମୋର ମନ ଭୟରେ ଅତ୍ୟନ୍ତ ବ୍ୟାକୁଳ ମଧ୍ୟ ହେଉଛି । ଏଣୁ ଆପଣ ନିଜର ସେହି ଚତୁର୍ଭୁଜ ବିଷ୍ଣୁରୂପ ହିଁ ମୋତେ ଦେଖାନ୍ତୁ ! ହେ ଦେବେଶ ! ହେ ଜଗନ୍ନିବାସ ! ପ୍ରସନ୍ନ ହୁଅନ୍ତୁ ।। ୪୫ ।।

**କିରୀଟିନଂ ଗଦିନଂ ଚକ୍ର-ହସ୍ତ-**
**ମିଚ୍ଛାମି ତ୍ୱାଂ ଦ୍ରଷ୍ଟୁ-ମହଂ ତଥୈବ ।**
**ତେନୈବ ରୂପେଣ ଚତୁର୍ଭୁଜେନ**
**ସହସ୍ର-ବାହୋ ଭବ ବିଶ୍ୱ-ମୂର୍ତ୍ତେ ।।**

ମୁଁ ଆପଣଙ୍କୁ ସେହିପରି ମୁକୁଟ ଧାରଣ କରିଥିବା ଗଦାଧର ଓ ଚକ୍ରଧର-ରୂପରେ ଦେଖିବାକୁ ଚାହେଁ । ଏଣୁ ହେ ବିଶ୍ୱରୂପ !

ହେ ସହସ୍ରବାହୁ ! ଆପଣ ସେହି ଚତୁର୍ଭୁଜରୂପରେ ପ୍ରକଟ ହୁଅନ୍ତୁ ॥ ୪୬ ॥

ଶ୍ରୀଭଗବାନୁବାଚ

**ମୟା ପ୍ରସନ୍ନେନ ତବାର୍ଜୁନେଦଂ**
**ରୂପଂ ପରଂ ଦର୍ଶିତ-ମାତ୍ମ-ଯୋଗାତ୍ ।**
**ତେଜୋମୟଂ ବିଶ୍ୱ-ମନନ୍ତ-ମାଦ୍ୟଂ**
**ୟନ୍ମେ ତ୍ୱଦନ୍ୟେନ ନ ଦୃଷ୍ଟ-ପୂର୍ବମ୍ ॥**

ଶ୍ରୀଭଗବାନ୍ କହିଲେ—ହେ ଅର୍ଜୁନ ! ଅନୁଗ୍ରହପୂର୍ବକ ମୁଁ ନିଜର ଯୋଗଶକ୍ତି ପ୍ରଭାବରେ ମୋର ଏହି ପରମ ତେଜୋମୟ, ସମସ୍ତଙ୍କର ଆଦି ଓ ଅନନ୍ତ ବିରାଟ ରୂପ ତୁମକୁ ଦେଖାଇଲି; ତୁମ ବ୍ୟତୀତ ଅନ୍ୟ କେହି ପୂର୍ବରୁ କେବେ ମୋର ଏହି ରୂପ ଦେଖି ନ ଥିଲେ ॥ ୪୭ ॥

**ନ ବେଦ-ୟଜ୍ଞାଧ୍ୟୟନୈର୍-ନ ଦାନୈର୍-**
**ନ ଚ କ୍ରିୟାଭିର୍-ନ ତପୋଭି-ରୁଗ୍ରୈଃ ।**
**ଏବଂ-ରୂପଃ ଶକ୍ୟ ଅହଂ ନୃ-ଲୋକେ**
**ଦ୍ରଷ୍ଟୁଂ ତ୍ୱଦନ୍ୟେନ କୁରୁ-ପ୍ରବୀର ॥**

ହେ ଅର୍ଜୁନ ! ମନୁଷ୍ୟଲୋକରେ ଏହିପରି ବିଶ୍ୱରୂପରେ ମୁଁ ନା ବେଦମାନଙ୍କର ଓ ଯଜ୍ଞମାନଙ୍କର ଅଧ୍ୟୟନଦ୍ୱାରା, ନା ଦାନମାନଙ୍କ ଦ୍ୱାରା, ନା କ୍ରିୟାମାନଙ୍କ ଦ୍ୱାରା, କିମ୍ବା ଉଗ୍ରତପମାନଙ୍କ ଦ୍ୱାରା ତୁମ ଛଡ଼ା ଅନ୍ୟ କାହାକୁ ଦେଖାଯାଇପାରିବି ॥ ୪୮ ॥

**ମା ତେ ବ୍ୟଥା ମା ଚ ବିମୂଢ଼-ଭାବୋ**
**ଦୃଷ୍ଟ୍ୱା ରୂପଂ ଘୋର-ମୀଦୃଙ୍-ମମେଦମ୍ ।**
**ବ୍ୟପେତ-ଭୀଃ ପ୍ରୀତ-ମନାଃ ପୁନସ୍-ତ୍ୱଂ**
**ତଦେବ ମେ ରୂପ-ମିଦଂ ପ୍ରପଶ୍ୟ ॥**

ମୋର ଏହିପରି ବିକରାଳ ରୂପ ଦେଖି ତୁମେ ବ୍ୟାକୁଳ ହେବା ଉଚିତ ନୁହେଁ ଓ ମୂଢ଼ଭାବ ଧରିବା ମଧ୍ୟ ଉଚିତ ନୁହେଁ। ତୁମେ ନିର୍ଭୀକ ଓ ପ୍ରସନ୍ନଚିତ୍ତ ହୋଇ ମୋର ସେହି ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ଚତୁର୍ଭୁଜରୂପ ପୁନର୍ବାର ଦେଖ ॥ ୪୯ ॥

*ସଞ୍ଜୟ ଉବାଚ*

**ଇତ୍ୟର୍ଜୁନଂ ବାସୁଦେବସ୍-ତଥୋକ୍ତ୍ୱା**
**ସ୍ୱକଂ ରୂପଂ ଦର୍ଶୟାମାସ ଭୂୟଃ ।**
**ଆଶ୍ୱାସ-ୟାମାସ ଚ ଭୀତମେନଂ**
**ଭୂତ୍ୱା ପୁନଃ ସୌମ୍ୟ-ବପୁର୍-ମହାତ୍ମା ॥**

**ସଞ୍ଜୟ କହିଲେ**—ବାସୁଦେବ ଭଗବାନ୍ ଅର୍ଜୁନଙ୍କୁ ଏପରି କହି ପୁନର୍ବାର ନିଜର ସେହି ଚତୁର୍ଭୁଜ ରୂପ ଦେଖାଇଲେ ଓ ତଦନନ୍ତର ମହାତ୍ମା ଶ୍ରୀକୃଷ୍ଣ ସୌମ୍ୟମୂର୍ତ୍ତି ହୋଇ ଭୟଭୀତ ହୋଇଥିବା ଅର୍ଜୁନଙ୍କୁ ଆଶ୍ୱାସନା ଦେଲେ ॥ ୫୦ ॥

*ଅର୍ଜୁନ ଉବାଚ*

**ଦୃଷ୍ଟ୍ୱେଦଂ ମାନୁଷଂ ରୂପଂ, ତବ ସୌମ୍ୟଂ ଜନାର୍ଦନ ।**
**ଇଦାନୀ-ମସ୍ମି ସଂବୃତ୍ତଃ, ସଚେତାଃ ପ୍ରକୃତିଂ ଗତଃ ॥**

**ଅର୍ଜୁନ କହିଲେ**—ହେ ଜନାର୍ଦ୍ଦନ ! ଆପଣଙ୍କର ଏହି ଅତି ଶାନ୍ତ ମନୁଷ୍ୟରୂପ ଦେଖି ବର୍ତ୍ତମାନ ମୁଁ ସ୍ଥିରଚିତ୍ତ ହୋଇଗଲି ଏବଂ ନିଜର ସ୍ୱାଭାବିକ ସ୍ଥିତି ପ୍ରାପ୍ତ ହୋଇଗଲି ॥ ୫୧ ॥

ଶ୍ରୀଭଗବାନୁବାଚ

**ସୁଦୁର୍-ଦର୍ଶ-ମିଦଂ ରୂପଂ, ଦୃଷ୍ଟବାନସି ଯନ୍ମମ ।**
**ଦେବା ଅପ୍ୟସ୍ୟ ରୂପସ୍ୟ, ନିତ୍ୟଂ ଦର୍ଶନ-କାଂକ୍ଷିଣଃ ॥**

**ଶ୍ରୀଭଗବାନ୍ କହିଲେ**—ମୋର ଯେଉଁ ଚତୁର୍ଭୁଜରୂପ ତୁମେ ଦେଖିଲ, ତାହାର ଦର୍ଶନ ପାଇବା ବଡ଼ କଠିନ । ଦେବତାମାନେ ମଧ୍ୟ ସଦା ଏହି ରୂପର ଦର୍ଶନାକାଙ୍‌କ୍ଷୀ ହୋଇଥାନ୍ତି ॥ ୫୨ ॥

**ନାହଂ ବେଦୈର୍-ନ ତପସା, ନ ଦାନେନ ନ ଚେଜ୍ୟୟା ।**
**ଶକ୍ୟ ଏବଂ-ବିଧୋ ଦ୍ରଷ୍ଟୁଂ, ଦୃଷ୍ଟବାନସି ମାଂ ଯଥା ॥**

ତୁମେ ମୋତେ ଯେଉଁପରି ଦେଖିବାକୁ ପାଇଲ, ମୋର ସେହିପରି ଚତୁର୍ଭୁଜରୂପ ନା ବେଦମାନଙ୍କ ଦ୍ୱାରା, ନା ତପଦ୍ୱାରା, ନା ଦାନଦ୍ୱାରା ଏବଂ ନା ଯଜ୍ଞଦ୍ୱାରା ଦେଖାଯାଇପାରିବ ॥ ୫୩ ॥

**ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟ, ଅହମେବଂ-ବିଧୋଽର୍ଜୁନ ।**
**ଜ୍ଞାତୁଂ ଦ୍ରଷ୍ଟୁଂ ଚ ତତ୍ତ୍ୱେନ, ପ୍ରବେଷ୍ଟୁଂ ଚ ପରନ୍-ତପ ॥**

କିନ୍ତୁ ହେ ପରନ୍ତପ ଅର୍ଜୁନ ! ମୁଁ ଏହିପରି ଚତୁର୍ଭୁଜରୂପରେ ପ୍ରତ୍ୟକ୍ଷୀଭୂତ ହୋଇପାରିବା ତଥା ତତ୍ତ୍ୱତଃ ଜାଣିହୋଇପାରିବା ଓ ପ୍ରବେଶ ପ୍ରାପ୍ତ ହୋଇପାରିବା ଅର୍ଥାତ୍ ଏକୀଭାବରେ ପ୍ରାପ୍ତ ହୋଇପାରିବା ଅନନ୍ୟ ଭକ୍ତିଦ୍ୱାରା ହିଁ ସମ୍ଭବ ॥ ୫୪ ॥

**ମତ୍-କର୍ମକୃତ୍-ମତ୍-ପରମୋ, ମଦ୍-ଭକ୍ତଃ ସଙ୍ଗ-ବର୍ଜିତଃ ।**
**ନିର୍ବୈରଃ ସର୍ବ-ଭୂତେଷୁ, ଯଃ ସ ମାମେତି ପାଣ୍ଡବ ॥**

ହେ ଅର୍ଜୁନ! ଯେଉଁ ପୁରୁଷ କେବଳ ମୋ ପାଇଁ ସକଳ କର୍ତ୍ତବ୍ୟକର୍ମ କରନ୍ତି, ଯେ ମୋର ପରାୟଣ, ଯେ ମୋର ଭକ୍ତ, ଆସକ୍ତିରହିତ ଓ ସକଳ ପ୍ରାଣୀଙ୍କ ଠାରେ ବୈରଭାବଶୂନ୍ୟ*, ସେହି ଅନନ୍ୟଭକ୍ତିଯୁକ୍ତ ପୁରୁଷ ମୋତେ ହିଁ ପ୍ରାପ୍ତ ହୁଅନ୍ତି ॥ ୫୫ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ବିଶ୍ୱ-ରୂପ-ଦର୍ଶନ-ଯୋଗୋ ନାମ-ଏକାଦଶୋଽଧ୍ୟାୟଃ ॥ ୧୧ ॥*



* ସର୍ବତ୍ର ଭଗବଦ୍‌ବୁଦ୍ଧି ହୋଇଯିବାରୁ ଏହି ପୁରୁଷ ଅତ୍ୟନ୍ତ ଅପରାଧୀ ପ୍ରତି ମଧ୍ୟ ବୈରଭାବ ରଖନ୍ତି ନାହିଁ; ଅନ୍ୟ କଥା କଣ କହିବା ।

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ଦ୍ୱାଦଶୋଽଧ୍ୟାୟଃ

*ଅର୍ଜୁନ ଉବାଚ*

**ଏବଂ ସତତ-ଯୁକ୍ତା ଯେ, ଭକ୍ତାସ୍-ତ୍ୱାଂ ପର୍ଯ୍ୟୁପାସତେ ।**
**ଯେ ଚାପ୍ୟକ୍ଷର-ମବ୍ୟକ୍ତଂ, ତେଷାଂ କେ ଯୋଗ-ବିତ୍ତମାଃ ॥**

ଅର୍ଜୁନ ପଚାରିଲେ—ଯେଉଁ ଅନନ୍ୟପ୍ରେମୀ ଭକ୍ତମାନେ ପୂର୍ବୋକ୍ତପ୍ରକାରେ ନିରନ୍ତର ଆପଣଙ୍କ ଭଜନ-ଧ୍ୟାନରେ ଲାଗିରହି ଆପଣଙ୍କୁ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ ଭଜନ କରନ୍ତି ଏବଂ ଅନ୍ୟ ଯେଉଁମାନେ କେବଳ ଅବିନାଶୀ ସଚ୍ଚିଦାନନ୍ଦଘନ-ନିରାକାର ବ୍ରହ୍ମଙ୍କୁ ହିଁ ଶ୍ରେଷ୍ଠଭାବରେ ଭଜନ କରନ୍ତି, ସେହି ଦୁଇପ୍ରକାର ଉପାସକଙ୍କ ମଧ୍ୟରେ ଅଧିକ ଉତ୍ତମ ଯୋଗବେତ୍ତା କେଉଁମାନେ? ॥ ୧ ॥

*ଶ୍ରୀଭଗବାନୁବାଚ*

**ମୟ୍ୟାବେଶ୍ୟ ମନୋ ଯେ ମାଂ, ନିତ୍ୟ-ଯୁକ୍ତା ଉପାସତେ ।**
**ଶ୍ରଦ୍ଧୟା ପରୟୋପେତାସ୍,-ତେ ମେ ଯୁକ୍ତ-ତମା ମତାଃ ॥**

ଶ୍ରୀଭଗବାନ୍ କହିଲେ—ମୋ'ଠାରେ ମନ ଏକାଗ୍ର କରି ନିରନ୍ତର ମୋର ଭଜନ-ଧ୍ୟାନରେ ଲାଗି ରହିଥିବା ଯେଉଁ

ଭକ୍ତମାନେ ପରମ ଶ୍ରଦ୍ଧାର ସହିତ ମୋତେ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ ଉପାସନା କରନ୍ତି, ମୋ ମତରେ, ସେମାନେ ଯୋଗୀମାନଙ୍କ ମଧ୍ୟରେ ଅତି ଉତ୍ତମ ଯୋଗୀ ଅଟନ୍ତି ॥ ୨ ॥

**ଯେ ତ୍ୱକ୍ଷର-ମନିର୍ଦ୍ଦେଶ୍ୟ,-ମବ୍ୟକ୍ତଂ ପର୍ଯ୍ୟୁପାସତେ ।**
**ସର୍ବତ୍ର-ଗମ-ଚିନ୍ତ୍ୟଂ ଚ, କୂଟସ୍ଥ-ମଚଲଂ ଧ୍ରୁବମ୍ ॥**
**ସଂନିୟମ୍ୟେନ୍ଦ୍ରିୟ-ଗ୍ରାମଂ, ସର୍ବତ୍ର ସମ-ବୁଦ୍ଧୟଃ ।**
**ତେ ପ୍ରାପ୍ନୁବନ୍ତି ମାମେବ, ସର୍ବ-ଭୂତ-ହିତେ ରତାଃ ॥**

ପରନ୍ତୁ ଯେଉଁ ପୁରୁଷମାନେ ଇନ୍ଦ୍ରିୟସମୁଦାୟକୁ ଭଲରୂପେ ବଶ କରି ମନ-ବୁଦ୍ଧିର ଅତୀତ, ସର୍ବବ୍ୟାପୀ, ଅନିର୍ବଚନୀୟସ୍ୱରୂପ ଓ ସଦା ଏକରସ ହୋଇ ରହୁଥିବା ନିତ୍ୟ, ଅଚଳ, ନିରାକାର, ଅବିନାଶୀ ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ ନିରନ୍ତର ଏକୀଭାବରେ ଧ୍ୟାନ-ରତ ହୋଇ ଭଜନ୍ତି, ସମସ୍ତ ପ୍ରାଣୀଙ୍କ ହିତରେ ରତ ଓ ସମସ୍ତଙ୍କ ଠାରେ ସମାନ ଭାବ ରଖୁଥିବା ସେହି ଯୋଗୀମାନେ ମୋତେ ହିଁ ପ୍ରାପ୍ତ ହୁଅନ୍ତି ॥ ୩-୪ ॥

**କ୍ଳେଶୋଽଧିକ-ତରସ୍-ତେଷା,-ମବ୍ୟକ୍ତା-ସକ୍ତ-ଚେତସାମ୍ ।**
**ଅବ୍ୟକ୍ତା ହି ଗତିର୍ଦୁଃଖଂ, ଦେହବଦ୍‌ଭି-ରବାପ୍ୟତେ ॥**

ସେହି ସଚ୍ଚିଦାନନ୍ଦଘନ ନିରାକାର ବ୍ରହ୍ମରେ ଆସକ୍ତଚିତ୍ତ ପୁରୁଷମାନଙ୍କର ସାଧନା ବିଶେଷ ପରିଶ୍ରମସାଧ୍ୟ ହୋଇଥାଏ; କାରଣ ଦେହାଭିମାନୀମାନଙ୍କ ଦ୍ୱାରା ଅବ୍ୟକ୍ତବିଷୟକ ଗତି ଦୁଃଖ-ପୂର୍ବକ ପ୍ରାପ୍ତ କରାଯାଇଥାଏ ॥ ୫ ॥

**ୟେ ତୁ ସର୍ବାଣି କର୍ମାଣି, ମୟି ସଂନ୍ୟସ୍ୟ ମତ୍-ପରାଃ ।**
**ଅନନ୍ୟେ-ନୈବ ୟୋଗେନ, ମାଂ ଧ୍ୟାୟନ୍ତ ଉପାସତେ ॥**

ପରନ୍ତୁ ମୋର ପରାୟଣ ହୋଇଥିବା ଯେଉଁ ଭକ୍ତମାନେ ସମସ୍ତ କର୍ମ ମୋଠାରେ ଅର୍ପଣ କରିଦେଇ ମୋତେ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ ହିଁ ଅନନ୍ୟ ଭକ୍ତିଯୋଗରେ ନିରନ୍ତର ଚିନ୍ତନ କରି କରି ଭଜନ୍ତି*....॥ ୬ ॥

**ତେଷାମହଂ ସମୁଦ୍ଧର୍ତ୍ତା, ମୃତ୍ୟୁ-ସଂସାର-ସାଗରାତ୍ ।**
**ଭବାମି ନଚିରାତ୍ ପାର୍ଥ, ମୟ୍ୟାବେଶିତ-ଚେତସାମ୍ ॥**

ହେ ଅର୍ଜୁନ ! ମୋ'ଠାରେ ଚିତ୍ତ ନିବେଶ କରିଥିବା ସେହି ପ୍ରେମୀଭକ୍ତମାନଙ୍କୁ ମୁଁ ଶୀଘ୍ର ହିଁ ମୃତ୍ୟୁରୂପକ ସଂସାରସାଗରରୁ ଉଦ୍ଧାର କରିଦିଏ ॥ ୭ ॥

**ମୟ୍ୟେବ ମନ ଆଧତ୍ସ୍ୱ, ମୟି ବୁଦ୍ଧିଂ ନିବେଶୟ ।**
**ନିବସିଷ୍ୟସି ମୟ୍ୟେବ, ଅତ ଊର୍ଦ୍ଧ୍ୱଂ ନ ସଂଶୟଃ ॥**

ତେଣୁ ତୁମେ ମୋ'ଠାରେ ହିଁ ମନ ଲଗାଅ; ମୋ'ଠାରେ ହିଁ ବୁଦ୍ଧି ଲଗାଇ ଦିଅ । ତା'ହେଲେ ତୁମେ ଯେ ମୋ'ଠାରେ ହିଁ ନିବାସ କରିବ, ଏଥିରେ କୌଣସି ସନ୍ଦେହ ନାହିଁ ॥ ୮ ॥

**ଅଥ ଚିତ୍ତଂ ସମାଧାତୁଂ, ନ ଶକ୍ନୋଷି ମୟି ସ୍ଥିରମ୍ ।**
**ଅଭ୍ୟାସ-ୟୋଗେନ ତତୋ, ମାମିଚ୍ଛାପ୍ତୁଂ ଧନଞ୍ଜୟ ॥**

---

* ବିଶେଷ ଅର୍ଥପାଇଁ ଗୀତା ତତ୍ତ୍ୱବିବେଚନୀ ଟୀକାର ଏକାଦଶ ଅଧ୍ୟାୟ ୫୫ତମ ଶ୍ଳୋକ ଦେଖନ୍ତୁ ।

ଯଦି ତୁମେ ମୋ'ଠାରେ ଦୃଢ଼ରୂପେ ଚିତ୍ତ ସ୍ଥାପନ କରିବାକୁ ସମର୍ଥ ନ ହେଉଛ, ତେବେ ହେ ଅର୍ଜୁନ ! ଅଭ୍ୟାସରୂପୀ ଯୋଗଦ୍ୱାରା* ମୋତେ ପାଇବାକୁ ଇଚ୍ଛା କର ॥ ୯ ॥

**ଅଭ୍ୟାସେଽପ୍ୟ-ସମର୍ଥୋଽସି, ମତ୍-କର୍ମ-ପରମୋ ଭବ ।**
**ମଦର୍ଥ-ମପି କର୍ମାଣି, କୁର୍ବନ୍ ସିଦ୍ଧି-ମବାପ୍ସ୍ୟସି ॥**

ଯଦି ତୁମେ ଉପରୋକ୍ତ ଅଭ୍ୟାସ କରିବାରେ ମଧ୍ୟ ଅସମର୍ଥ ହେଉଛ, ତେବେ କେବଳ ମୋ ପାଇଁ କର୍ମ☫ କରିବାରେ ହିଁ ପରାୟଣ ହୁଅ । ମୋ ପାଇଁ ଏପରି କର୍ମ କରୁ କରୁ ମଧ୍ୟ ତୁମେ ମୋତେ ପାଇବାରୂପକ ସିଦ୍ଧି ଲାଭ କରିପାରିବ ॥ ୧୦ ॥

**ଅଥୈ-ତଦପ୍ୟ-ଶକ୍ତୋଽସି, କର୍ତ୍ତୁଂ ମଦ୍‌ଯୋଗ-ମାଶ୍ରିତଃ ।**
**ସର୍ବ-କର୍ମ-ଫଳ-ତ୍ୟାଗଂ, ତତଃ କୁରୁ ଯତାତ୍ମବାନ୍ ॥**

ଯଦି ମୋର ପ୍ରାପ୍ତିରୂପକ ଯୋଗର ଆଶ୍ରିତ ହୋଇ ଉପରୋକ୍ତ ସାଧନା କରିବାରେ ମଧ୍ୟ ତୁମେ ଅସମର୍ଥ ଅଟ, ତେବେ ସଂଯତାତ୍ମା ହୋଇ ଅର୍ଥାତ୍ ମନ, ବୁଦ୍ଧି ଆଦି ଉପରେ ବିଜୟ ଲାଭ କରି ସମସ୍ତ କର୍ମଫଳ ତ୍ୟାଗ✦ କର ॥ ୧୧ ॥

---

* ଭଗବତ୍‌ପ୍ରାପ୍ତିପାଇଁ ଭଗବାନଙ୍କ ନାମ ଏବଂ ଗୁଣ ଶ୍ରବଣ, କୀର୍ତ୍ତନ, ମନନ ଏବଂ ଶ୍ୱାସଦ୍ୱାରା ଜପ ଓ ଭଗବତ୍‌ପ୍ରାପକ ବିଷୟକ ଶାସ୍ତ୍ର ପଠନ-ପାଠନ ଇତ୍ୟାଦି କରିବାକୁ ଅଭ୍ୟାସ ବୋଲାଯାଏ ।

☫ ସ୍ୱାର୍ଥତ୍ୟାଗ କରି, ପରମେଶ୍ୱରଙ୍କୁ ହିଁ ପରମ ଆଶ୍ରୟ ଓ ପରମ ଗତି ମନେକରି ନିଷ୍କାମଭାବରେ ପତିବ୍ରତା ନାରୀପରି କାୟମନୋବାକ୍ୟରେ ପରମେଶ୍ୱରଙ୍କ ପାଇଁ ଯଜ୍ଞ, ଦାନ, ତପ ଆଦି ସକଳ କର୍ତ୍ତବ୍ୟ କର୍ମ କରିବାକୁ ଭଗବଦର୍ଥ କର୍ମ କରିବା ବୋଲାଯାଏ ।

✦ ତତ୍ତ୍ୱବିବେଚନୀ ଟୀକାର ନବମ ଅଧ୍ୟାୟ ୨୭ ଶ୍ଳୋକରେ ଏହାର ବିସ୍ତୃତ ବିବରଣ ଦେଖନ୍ତୁ ।

**ଶ୍ରେୟୋ ହି ଜ୍ଞାନ-ମଭ୍ୟାସାଜ୍,-ଜ୍ଞାନାଦ୍-ଧ୍ୟାନଂ ବିଶିଷ୍ୟତେ ।**
**ଧ୍ୟାନାତ୍-କର୍ମ-ଫଲ-ତ୍ୟାଗସ୍,-ତ୍ୟାଗାଚ୍-ଛାନ୍ତି-ରନନ୍ତରମ୍ ॥**

ମର୍ମ ନ ଜାଣି କରାଯାଉଥିବା ଅଭ୍ୟାସ ଅପେକ୍ଷା ଜ୍ଞାନ ଶ୍ରେଷ୍ଠ; ଜ୍ଞାନଠାରୁ ମୋର ପରମେଶ୍ୱର-ସ୍ୱରୂପର ଧ୍ୟାନ ଶ୍ରେଷ୍ଠ ଏବଂ ଧ୍ୟାନ ଅପେକ୍ଷା ସବୁକର୍ମର ଫଳତ୍ୟାଗ ଶ୍ରେଷ୍ଠ* ଅଟେ; କାରଣ, ତ୍ୟାଗଦ୍ୱାରା ତତ୍କାଳ ହିଁ ପରମ ଶାନ୍ତି ପ୍ରାପ୍ତ ହୋଇଥାଏ ॥ ୧୨ ॥

**ଅଦ୍ୱେଷ୍ଟା ସର୍ବ-ଭୂତାନାଂ, ମୈତ୍ରଃ କରୁଣ ଏବ ଚ ।**
**ନିର୍ମମୋ ନିରହଙ୍କାରଃ, ସମ-ଦୁଃଖ-ସୁଖଃ କ୍ଷମୀ ॥**
**ସନ୍ତୁଷ୍ଟଃ ସତତଂ ଯୋଗୀ, ଯତାତ୍ମା ଦୃଢ-ନିଶ୍ଚୟଃ ।**
**ମୟ୍ୟର୍ପିତ-ମନୋ-ବୁଦ୍ଧିର୍,-ଯୋ ମଦ୍-ଭକ୍ତଃ ସ ମେ ପ୍ରିୟଃ ॥**

ଯେଉଁ ପୁରୁଷ ସକଳ ଭୂତଙ୍କ ଠାରେ ଦ୍ୱେଷରହିତ, ନିଃସ୍ୱାର୍ଥଭାବରେ ସମସ୍ତଙ୍କର ପ୍ରେମୀ ଓ ଅହେତୁକ ଦୟାଳୁ ତଥା ମମତାରହିତ, ଅହଂକାରରହିତ, ସୁଖଦୁଃଖପ୍ରାପ୍ତିରେ ସମ ଓ କ୍ଷମାଶୀଳ ଅର୍ଥାତ୍ ଅପରାଧୀକୁ ବି ଅଭୟ ପ୍ରଦାନ କରନ୍ତି, ପୁଣି ଯେଉଁ ଯୋଗୀ ନିରନ୍ତର ସନ୍ତୁଷ୍ଟ ରହନ୍ତି, ମନ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ବଶ କରି ରଖିଥାନ୍ତି ଏବଂ ଯେ ମୋଠାରେ ଦୃଢ଼ନିଶ୍ଚୟ ହୋଇଥାନ୍ତି, ମୋଠାରେ ମନ-ବୁଦ୍ଧି ଅର୍ପଣ କରିଦେଇ-ଥିବା ସେହି ଭକ୍ତ ମୋର ପ୍ରିୟ ଅଟନ୍ତି ॥ ୧୩-୧୪ ॥

---

* ଯେ କେବଳ ଭଗବଦର୍ଥ କର୍ମ କରନ୍ତି, ଭଗବାନଙ୍କ ଠାରେ ତାଙ୍କର ପ୍ରେମ, ଶ୍ରଦ୍ଧା ଓ ଚିନ୍ତା ଅକ୍ଷୁଣ୍ଣ ରହେ । ତେଣୁ ଧ୍ୟାନଠାରୁ କର୍ମଫଳତ୍ୟାଗକୁ ଶ୍ରେଷ୍ଠ ବୋଲି କୁହାଯାଇଛି ।

**ଯସ୍ମାନ୍ନୋ-ଦ୍ୱିଜତେ ଲୋକୋ, ଲୋକାନ୍ନୋ-ଦ୍ୱିଜତେ ଚ ଯଃ ।**
**ହର୍ଷା-ମର୍ଷ-ଭୟୋଦ୍‌ବେଗୈର୍‌,-ମୁକ୍ତୋ ଯଃ ସ ଚ ମେ ପ୍ରିୟଃ ॥**

ଯାହାଙ୍କ ଦ୍ୱାରା କୌଣସି ବି ଜୀବ ଉଦ୍‌ବିଗ୍ନ ହୁଏ ନାହିଁ, କି ସେ ନିଜେ କୌଣସି ଜୀବହେତୁ ଉଦ୍‌ବିଗ୍ନ ହୁଅନ୍ତି ନାହିଁ, ତଥା ଯେ ହର୍ଷ, ଅମର୍ଷ*, ଭୟ ଓ ଉଦ୍‌ବେଗାଦିରୁ ରହିତ, ସେହି ଭକ୍ତ ମୋର ପ୍ରିୟ ଅଟନ୍ତି ॥ ୧୫ ॥

**ଅନପେକ୍ଷଃ ଶୁଚିର୍‌-ଦକ୍ଷ, ଉଦାସୀନୋ ଗତ-ବ୍ୟଥଃ ।**
**ସର୍ବାରମ୍ଭ-ପରିତ୍ୟାଗୀ, ଯୋ ମଦ୍‌-ଭକ୍ତଃ ସ ମେ ପ୍ରିୟଃ ॥**

ଯେ ଆକାଙ୍‌କ୍ଷାରହିତ, ବାହାରେ ଓ ଭିତରେ ଶୁଦ୍ଧ☫, ଦକ୍ଷ, ପକ୍ଷପାତରହିତ ଓ ଦୁଃଖରୁ ମୁକ୍ତ ଅଟନ୍ତି, ସେହି ସର୍ବାରମ୍ଭତ୍ୟାଗୀ ଭକ୍ତ ମୋର ପ୍ରିୟ ॥ ୧୬ ॥

**ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି, ନ ଶୋଚତି ନ କାଂକ୍ଷତି ।**
**ଶୁଭାଶୁଭ-ପରିତ୍ୟାଗୀ, ଭକ୍ତି-ମାନ୍ ଯଃ ସ ମେ ପ୍ରିୟଃ ॥**

ଯେ କେବେ ହର୍ଷିତ ହୁଅନ୍ତି ନାହିଁ, ଦ୍ୱେଷ କରନ୍ତି ନାହିଁ, ଶୋକ କରନ୍ତି ନାହିଁ, କି କାମନା କରନ୍ତି ନାହିଁ, ତଥା ଯେ କି ଶୁଭ, କି ଅଶୁଭ ସକଳ କର୍ମର ତ୍ୟାଗୀ ଅଟନ୍ତି, ସେହି ଭକ୍ତିମାନ୍ ପୁରୁଷ ମୋର ପ୍ରିୟ ॥ ୧୭ ॥

**ସମଃ ଶତ୍ରୌ ଚ ମିତ୍ରେ ଚ, ତଥା ମାନାପ-ମାନୟୋଃ ।**
**ଶୀତୋଷ୍ଣ-ସୁଖ-ଦୁଃଖେଷୁ, ସମଃ ସଙ୍ଗ-ବିବର୍ଜିତଃ ॥**

---

* ଅନ୍ୟର ଉନ୍ନତି ଦେଖି ଜ୍ୱାଳା ବୋଧ କରିବାର ନାମ ଅମର୍ଷ ।

☫ ତତ୍ତ୍ୱବିବେଚନୀ ଟୀକାରେ ୧୩ଶ ଅଧ୍ୟାୟର ୭ମ ଶ୍ଳୋକର ଟିପ୍ପଣୀ ଦେଖନ୍ତୁ ।

ଯେ ଶତ୍ରୁ-ମିତ୍ରଠାରେ ଓ ମାନ-ଅପମାନରେ ସମ, ତଥା ଶୀତ-ଉଷ୍ଣ ଓ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱରେ ସମ ଏବଂ ଆସକ୍ତିରହିତ,... .........।। ୧୮ ।।

**ତୁଲ୍ୟ-ନିନ୍ଦା-ସ୍ତୁତିର୍-ମୌନୀ, ସନ୍ତୁଷ୍ଟୋ ଯେନ କେନଚିତ୍ ।**
**ଅନିକେତଃ ସ୍ଥିର-ମତିର୍,-ଭକ୍ତିମାନ୍ ମେ ପ୍ରିୟୋ ନରଃ ।।**

ଯେ ନିନ୍ଦା ଓ ସ୍ତୁତିକୁ ସମାନ ବୋଲି ଦେଖନ୍ତି, ଯେ ମନନଶୀଳ ଏବଂ ଯେକୌଣସିପ୍ରକାର ଶରୀରନିର୍ବାହ ହେବାରେ ବି ସଦା ହିଁ ସନ୍ତୁଷ୍ଟ ରହନ୍ତି ଓ ବାସସ୍ଥାନ ପ୍ରତି ମମତ୍ୱ ଓ ଆସକ୍ତିରୁ ରହିତ ଅଟନ୍ତି, ସେହି ସ୍ଥିରବୁଦ୍ଧି ଭକ୍ତିମାନ୍ ପୁରୁଷ ମୋର ପ୍ରିୟ ଅଟନ୍ତି ।। ୧୯ ।।

**ଯେ ତୁ ଧର୍ମ୍ୟାମୃତ-ମିଦଂ, ଯଥୋକ୍ତଂ ପର୍ଯ୍ୟୁପାସତେ ।**
**ଶ୍ରଦ୍-ଦଧାନା ମତ୍-ପରମା, ଭକ୍ତାସ୍-ତେଽତୀବ ମେ ପ୍ରିୟାଃ ।।**

ପରନ୍ତୁ ଯେଉଁ ଶ୍ରଦ୍ଧାଯୁକ୍ତ* ପୁରୁଷମାନେ ମୋର ପରାୟଣ ହୋଇ ଉପରୋକ୍ତ ଧର୍ମମୟ ଅମୃତକୁ ନିଷ୍କାମ ପ୍ରେମଭାବରେ ସେବନ କରନ୍ତି, ସେହି ଭକ୍ତମାନେ ମୋର ଅତିଶୟ ପ୍ରିୟ ଅଟନ୍ତି ।। ୨୦ ।।

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ଭକ୍ତି-ଯୋଗୋ ନାମ ଦ୍ୱାଦଶୋଽଧ୍ୟାୟଃ ।। ୧୨ ।।*



* ବେଦ, ଶାସ୍ତ୍ର, ମହାତ୍ମା, ଗୁରୁଜନ ଓ ଈଶ୍ୱରଙ୍କ ବଚନକୁ ପ୍ରତ୍ୟକ୍ଷପରି ବିଶ୍ୱାସ କରିବାର ନାମ ଶ୍ରଦ୍ଧା ।

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ତ୍ରୟୋଦଶୋଽଧ୍ୟାୟଃ

*ଶ୍ରୀଭଗବାନୁବାଚ*

**ଇଦଂ ଶରୀରଂ କୌନ୍ତେୟ, କ୍ଷେତ୍ର-ମିତ୍ୟଭି-ଧୀୟତେ ।**
**ଏତଦ୍ ୟୋ ବେତ୍ତି ତଂ ପ୍ରାହୁଃ, କ୍ଷେତ୍ରଜ୍ଞ ଇତି ତଦ୍-ବିଦଃ ॥**

ଶ୍ରୀଭଗବାନ୍ କହିଲେ—ହେ ଅର୍ଜୁନ ! ଏହି ଶରୀର 'କ୍ଷେତ୍ର'* ନାମରେ କଥିତ ହୁଏ ଏବଂ ଏହାକୁ ଯେ ଜାଣନ୍ତି, ତତ୍ତ୍ୱଜ୍ଞ ଜ୍ଞାନୀଜନମାନେ ତାଙ୍କୁ 'କ୍ଷେତ୍ରଜ୍ଞ' ବୋଲି କହନ୍ତି ॥ ୧ ॥

**କ୍ଷେତ୍ରଜ୍ଞଂ ଚାପି ମାଂ ବିଦ୍ଧି, ସର୍ବ-କ୍ଷେତ୍ରେଷୁ ଭାରତ ।**
**କ୍ଷେତ୍ର-କ୍ଷେତ୍ରଜ୍ଞୟୋର୍-ଜ୍ଞାନଂ, ଯତ୍ତଜ୍-ଜ୍ଞାନଂ ମତଂ ମମ ॥**

ହେ ଅର୍ଜୁନ ! ତୁମେ ମୋତେ ସବୁ କ୍ଷେତ୍ର (ଶରୀର)ରେ କ୍ଷେତ୍ରଜ୍ଞ ଅର୍ଥାତ୍ ଜୀବାତ୍ମା♆ ବୋଲି ଜାଣ ଏବଂ କ୍ଷେତ୍ର ଓ କ୍ଷେତ୍ରଜ୍ଞ ଅର୍ଥାତ୍ ବିକାରସହିତ ପ୍ରକୃତି ଓ ପୁରୁଷ ଉଭୟଙ୍କୁ ତତ୍ତ୍ୱତଃ ଜାଣିବା ହିଁ ମୋ ମତରେ ଜ୍ଞାନ ॥ ୨ ॥

---

* କ୍ଷେତ୍ରରେ ବୁଣିଥିବା ବୀଜର ଫଳ ଯେପରି ସମୟକ୍ରମେ ଫଳେ, ଶରୀରଦ୍ୱାରା କରଯାଇଥିବା କର୍ମସଂସ୍କାରର ଫଳ ମଧ୍ୟ ସେହିପରି ସମୟକ୍ରମେ ଫଳେ । ତେଣୁ ଶରୀରକୁ କ୍ଷେତ୍ର କୁହାଯାଏ ।

♆ ୧୫ଶ ଅଧ୍ୟାୟ ୭ମ ଶ୍ଳୋକର ବ୍ୟାଖ୍ୟା ଦ୍ରଷ୍ଟବ୍ୟ ।

**ତତ୍-କ୍ଷେତ୍ରଂ ଯଚ୍ଚ ଯାଦୃକ୍ ଚ, ଯଦ୍-ବିକାରି ଯତଶ୍-ଚ ଯତ୍ ।**
**ସ ଚ ଯୋ ଯତ୍ ପ୍ରଭାବଶ୍-ଚ, ତତ୍ ସମାସେନ ମେ ଶୃଣୁ ॥**

ସେହି କ୍ଷେତ୍ର କ'ଣ, ତାହା କିପରି ଏବଂ କେଉଁ କେଉଁ ବିକାରଯୁକ୍ତ, କେଉଁଥିରୁ କ'ଣ ଉତ୍ପନ୍ନ ହୋଇଛି ତଥା ସେହି କ୍ଷେତ୍ରଜ୍ଞ ମଧ୍ୟ କିଏ ଓ ତାହା କେଉଁ ପ୍ରଭାବଯୁକ୍ତ, ତାହା ସଂକ୍ଷେପରେ ମୋ'ଠାରୁ ଶୁଣ ॥ ୩ ॥

**ଋଷିଭିର୍-ବହୁଧା ଗୀତଂ, ଛନ୍ଦୋଭିର୍-ବିବିଧୈଃ ପୃଥକ୍ ।**
**ବ୍ରହ୍ମସୂତ୍ର-ପଦୈଶ୍-ଚୈବ, ହେତୁମଦ୍ଭିର୍-ବିନିଶ୍ଚିତୈଃ ॥**

ଏହି କ୍ଷେତ୍ର ଓ କ୍ଷେତ୍ରଜ୍ଞର ତତ୍ତ୍ୱ ଋଷିମାନଙ୍କ ଦ୍ୱାରା ବହୁପ୍ରକାରେ କୁହାଯାଇଛି ଏବଂ ବିବିଧ ବେଦମନ୍ତ୍ର ଦ୍ୱାରା ମଧ୍ୟ ବିଭାଗପୂର୍ବକ କୁହାଯାଇଛି ତଥା ଭଲଭାବରେ ନିଶ୍ଚୟ କରାଯାଇଥିବା ଯୁକ୍ତିଯୁକ୍ତ ବ୍ରହ୍ମସୂତ୍ରର ପଦମାନଙ୍କ ଦ୍ୱାରା ମଧ୍ୟ କୁହାଯାଇଛି ॥ ୪ ॥

**ମହାଭୂତା-ନ୍ୟହଙ୍କାରୋ, ବୁଦ୍ଧି-ରବ୍ୟକ୍ତ-ମେବ ଚ ।**
**ଇନ୍ଦ୍ରିୟାଣି ଦଶୈକଂ ଚ, ପଞ୍ଚ ଚେନ୍ଦ୍ରିୟ-ଗୋଚରାଃ ॥**

ପଞ୍ଚ ମହାଭୂତ, ଅହଂକାର, ବୁଦ୍ଧି ଓ ମୂଳ ପ୍ରକୃତି ତଥା ଦଶ ଇନ୍ଦ୍ରିୟ, ଏକ ମନ ଓ ଇନ୍ଦ୍ରିୟମାନଙ୍କର ବିଷୟ ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ,.....॥ ୫ ॥

**ଇଚ୍ଛା ଦ୍ୱେଷଃ ସୁଖଂ ଦୁଃଖଂ, ସଂଘାତଶ୍-ଚେତନା ଧୃତିଃ ।**
**ଏତତ୍ କ୍ଷେତ୍ରଂ ସମାସେନ, ସବିକାର-ମୁଦାହୃତମ୍ ॥**

ତଥା ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ, ସ୍ଥୂଳଦେହର ପିଣ୍ଡ, ଚେତନା ଓ ଧୃତି*—ଏପରି ବିକାରମାନଙ୍କ✠ ସହିତ ଏହି କ୍ଷେତ୍ରର ସ୍ୱରୂପ ସଂକ୍ଷେପରେ କୁହାଗଲା ॥ ୬ ॥

**ଅମାନିତ୍ୱ-ମଦମ୍ଭିତ୍ୱ,-ମହିଂସା କ୍ଷାନ୍ତି-ରାର୍ଜବମ୍ ।**
**ଆଚାର୍ଯ୍ୟୋ-ପାସନଂ ଶୌଚଂ, ସ୍ଥୈର୍ଯ୍ୟ-ମାତ୍ମ-ବିନିଗ୍ରହଃ ॥**

ନିଜଠାରେ ଶ୍ରେଷ୍ଠତା-ଅଭିମାନର ଅଭାବ, ଅଦାମ୍ଭିକତା, ପ୍ରାଣୀମାତ୍ରକେ କାହାରିକୁ କୌଣସିପ୍ରକାର ଦୁଃଖ ନ ଦେବା, କ୍ଷମାଶୀଳତା, ମନ-ବଚନ ଆଦିରେ ସରଳତା, ଶ୍ରଦ୍ଧା-ଭକ୍ତିର ସହିତ ଗୁରୁଙ୍କର ସେବା, ଅନ୍ତଃ-ବାହ୍ୟ ଶୁଦ୍ଧି✦, ଅନ୍ତଃକରଣର ସ୍ଥିରତା ଏବଂ ମନ-ଇନ୍ଦ୍ରିୟ ସହିତ ଶରୀରର ନିଗ୍ରହ,.......॥ ୭ ॥

**ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟ,-ମନହଙ୍କାର ଏବ ଚ ।**
**ଜନ୍ମ-ମୃତ୍ୟୁ-ଜରା-ବ୍ୟାଧି,-ଦୁଃଖ-ଦୋଷାନୁ-ଦର୍ଶନମ୍ ॥**

ଇହଲୋକ ତଥା ପରଲୋକର ସକଳପ୍ରକାର ଭୋଗରେ ଆସକ୍ତିର ଅଭାବ, ଅହଂକାରଶୂନ୍ୟତା, ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧି ଆଦିରେ ଦୁଃଖ ଓ ଦୋଷ ଦର୍ଶନ କରି ବାରମ୍ବାର ବିବେଚନା କରିବା,......॥ ୮ ॥

---

* ୧୮ଶ ଅଧ୍ୟାୟ ୩୪ଶ ଓ ୩୫ଶ ଶ୍ଳୋକର ବ୍ୟାଖ୍ୟା ଦେଖନ୍ତୁ ।

✠ ୫ମ ଶ୍ଳୋକରେ କ୍ଷେତ୍ରର ସ୍ୱରୂପ ଓ ଏହି ଶ୍ଳୋକରେ କଥିତ ଇଚ୍ଛା ଇତ୍ୟାଦିକୁ କ୍ଷେତ୍ରର ବିକାର ବୋଲି ବୁଝିବାକୁ ହେବ ।

✦ ସତ୍ୟଶୁଦ୍ଧ ବ୍ୟବହାରଦ୍ୱାରା ପ୍ରାପ୍ତ ଦ୍ରବ୍ୟ ଓ ଅନ୍ନରେ ଶରୀର ରକ୍ଷା କରିବା ତଥା ଜଳ ଓ ମୃତ୍ତିକାଦ୍ୱାରା ଶରୀରକୁ ଶୁଦ୍ଧ କରିବାର ନାମ ବାହ୍ୟଶୁଦ୍ଧି । ରାଗଦ୍ୱେଷ ଓ କପଟାଦିର ଦୂର କରି ଚିତ୍ତ ଶୁଦ୍ଧ କରିବାର ନାମ ଅନ୍ତଃଶୁଦ୍ଧି ।

**ଅସକ୍ତି-ରନଭିଷ୍ୱଙ୍ଗଃ, ପୁତ୍ର-ଦାର-ଗୃହାଦିଷୁ ।**
**ନିତ୍ୟଂ ଚ ସମ-ଚିତ୍ତତ୍ୱ,-ମିଷ୍ଟାନିଷ୍ଟୋ-ପପତ୍ତିଷୁ ॥**

ପୁତ୍ର, ସ୍ତ୍ରୀ, ଗୃହ ଏବଂ ଧନ ଆଦିରେ ଆସକ୍ତିର ଅଭାବ, ମମତ୍ୱର ଅଭାବ ତଥା ପ୍ରିୟ ପ୍ରାପ୍ତି ହେଉ କିମ୍ବା ଅପ୍ରିୟ ପ୍ରାପ୍ତି ହେଉ, ସର୍ବଦା ସମଚିତ୍ତ ହୋଇ ରହିବା,.....॥ ୯ ॥

**ମୟି ଚାନନ୍ୟ-ଯୋଗେନ, ଭକ୍ତି-ରବ୍ୟଭିଚାରିଣୀ ।**
**ବିବିକ୍ତ-ଦେଶ-ସେବିତ୍ୱ,-ମରତିର୍-ଜନ-ସଂସଦି ॥**

ମୋଠାରେ ଅର୍ଥାତ୍ ପରମେଶ୍ୱରଙ୍କ ଠାରେ ଅନନ୍ୟ ଯୋଗଦ୍ୱାରା ଅବ୍ୟଭିଚାରିଣୀ ଭକ୍ତି*, ତଥା ଏକାନ୍ତ ଓ ଶୁଦ୍ଧ ସ୍ଥାନରେ ରହିବାର ସ୍ୱଭାବ, ବିଷୟାସକ୍ତ ଲୋକମାନଙ୍କ ସମୁଦାୟ ପ୍ରତି ବିରାଗ,........ ॥ ୧୦ ॥

**ଅଧ୍ୟାତ୍ମ-ଜ୍ଞାନ-ନିତ୍ୟତ୍ୱଂ, ତତ୍ତ୍ୱ-ଜ୍ଞାନାର୍ଥ-ଦର୍ଶନମ୍ ।**
**ଏତଜ୍-ଜ୍ଞାନ-ମିତି ପ୍ରୋକ୍ତ,-ମଜ୍ଞାନଂ ଯଦତୋଽନ୍ୟଥା ॥**

ଅଧ୍ୟାତ୍ମଜ୍ଞାନରେ☫ ନିତ୍ୟସ୍ଥିତି ଏବଂ ତତ୍ତ୍ୱଜ୍ଞାନର ଅର୍ଥରୂପ ପରମାତ୍ମାଙ୍କୁ ହିଁ ସର୍ବତ୍ର ଦର୍ଶନ—ଏସବୁକୁ ଜ୍ଞାନ✦ ବୋଲି ଏବଂ

---

* ସର୍ବଶକ୍ତିମାନ ପରମେଶ୍ୱରଙ୍କୁ ହିଁ ସ୍ୱାମୀ ବୋଲି ମାନି ଅହଂକାର ଓ ସ୍ୱାର୍ଥ ତ୍ୟାଗ କରି ଶ୍ରଦ୍ଧା ଓ ଭାବର ସହିତ ଭକ୍ତିସହକାରେ ନିରନ୍ତର ଭଗବତ୍‌ଚିନ୍ତନକୁ ଅବ୍ୟଭିଚାରିଣୀ ଭକ୍ତି କହନ୍ତି ।

☫ ଯେଉଁ ଜ୍ଞାନ ସାହାଯ୍ୟରେ ଆତ୍ମବସ୍ତୁ ଓ ଅନାତ୍ମବସ୍ତୁକୁ ଜାଣିହୁଏ, ତାହା ଅଧ୍ୟାତ୍ମଜ୍ଞାନ ।

✦ ୭ମ ଠାରୁ ଏପର୍ଯ୍ୟନ୍ତ ଶ୍ଳୋକମାନଙ୍କରେ ଯେଉଁ ସାଧନାପ୍ରଣାଳୀ କୁହାଯାଇଛି, ତାହା ତତ୍ତ୍ୱଜ୍ଞାନଲାଭର ହେତୁ ହୋଇଥିବାରୁ ଜ୍ଞାନ ଅଟେ ।

ଯାହା ଏହାର ବିପରୀତ, ତାହା ଅଜ୍ଞାନ* ବୋଲି କୁହାଯାଇଛି ॥ ୧ ୧॥

**ଜ୍ଞେୟଂ ଯତ୍ତତ୍-ପ୍ରବକ୍ଷ୍ୟାମି, ଯଜ୍-ଜ୍ଞାତ୍ୱା-ମୃତ-ମଶ୍ନୁତେ ।**
**ଅନାଦିମତ୍-ପରଂ ବ୍ରହ୍ମ, ନ ସତ୍-ତନ୍ନା-ସଦୁଚ୍ୟତେ ॥**

ଯାହା ଜାଣିବାର ଯୋଗ୍ୟ ତଥା ଯାହାକୁ ଜାଣି ମନୁଷ୍ୟ ପରମାନନ୍ଦ ପ୍ରାପ୍ତ ହୁଏ, ତାହା ମୁଁ ଭଲରୂପେ ବୁଝାଇଦେବି । ସେହି ଅନାଦି ପରମବ୍ରହ୍ମଙ୍କୁ ସତ୍ ବୋଲି କୁହାଯାଇ ପାରିବ ନାହିଁ, କି ଅସତ୍ ବୋଲି କୁହାଯାଏ ନାହିଁ ॥ ୧ ୨ ॥

**ସର୍ବତଃ-ପାଣି-ପାଦଂ ତତ୍, ସର୍ବତୋଽକ୍ଷି-ଶିରୋ-ମୁଖମ୍ ।**
**ସର୍ବତଃ-ଶ୍ରୁତିମଲ୍-ଲୋକେ, ସର୍ବ-ମାବୃତ୍ୟ ତିଷ୍ଠତି ॥**

ତାଙ୍କର ସକଳଦିଗରେ ହସ୍ତ ଓ ପାଦ ରହିଛି; ସକଳଦିଗରେ ନେତ୍ର, ଶିର ଓ ମୁଖ ରହିଛି; ସକଳଦିଗରେ କର୍ଣ୍ଣ ରହିଛି; କାରଣ ସେ ସଂସାରରେ ସବୁକୁ ବ୍ୟାପି ରହିଛନ୍ତିΨ ॥ ୧ ୩ ॥

**ସର୍ବେନ୍ଦ୍ରିୟ-ଗୁଣାଭାସଂ, ସର୍ବେନ୍ଦ୍ରିୟ-ବିବର୍ଜିତମ୍ ।**
**ଅସକ୍ତଂ ସର୍ବଭୃଚ୍-ଚୈବ, ନିର୍ଗୁଣଂ ଗୁଣ-ଭୋକ୍ତୃ ଚ ॥**

ସେ ସକଳ ଇନ୍ଦ୍ରିୟଗ୍ରାହ୍ୟ ବିଷୟର ଜ୍ଞାତା, ଅଥଚ ବାସ୍ତବରେ ସେ ସକଳ ଇନ୍ଦ୍ରିୟରୁ ରହିତ ଅଟନ୍ତି । ସେ ଆସକ୍ତିରହିତ ହୋଇ ମଧ୍ୟ ସମସ୍ତଙ୍କର ଧାରଣ-ପୋଷଣକାରୀ

---

* ଉପରୋକ୍ତ ଜ୍ଞାନସାଧନାର ବିପରୀତ ମାନ, ଦମ୍ଭ ଓ ହିଂସାଦି ଅଜ୍ଞାନ ବୃଦ୍ଧି କରେ; ତେଣୁ ସେସବୁକୁ ଅଜ୍ଞାନ ବୋଲାଯାଏ ।

Ψ ବାୟୁ, ଅଗ୍ନି, ଜଳ ଓ ପୃଥିବୀର କାରଣରୂପ ହୋଇଥିବା ଆକାଶ ଯେପରି ସେସବୁକୁ ବ୍ୟାପି ରହିଛି, ସମସ୍ତଙ୍କର କାରଣରୂପ ହୋଇଥିବା ପରମାତ୍ମା ସେହିପରି ସମସ୍ତ ଚରାଚର ଜଗତକୁ ବ୍ୟାପି ରହିଛନ୍ତି ।

ଏବଂ ନିର୍ଗୁଣ ହୋଇ ମଧ୍ୟ ଗୁଣମାନଙ୍କର ଭୋକ୍ତା ଅଟନ୍ତି ॥୧୪॥

**ବହିରନ୍ତଶ୍-ଚ ଭୂତାନା,-ମଚରଂ ଚରମେବ ଚ ।**
**ସୂକ୍ଷ୍ମତ୍ୱାତ୍-ତଦ-ବିଜ୍ଞେୟଂ, ଦୂରସ୍ଥଂ ଗ୍ନ୍ତିକେ ଚ ତତ୍ ॥**

ସେହି ପରମାତ୍ମା ଚରାଚର ସକଳଭୂତଙ୍କର ବାହାରେ ଓ ଭିତରେ ସର୍ବତ୍ର ପରିପୂର୍ଣ୍ଣ ହୋଇ ରହିଛନ୍ତି ଏବଂ ଚର-ଅଚର ରୂପ ମଧ୍ୟ ସେ ହିଁ ଅଟନ୍ତି । ପୁଣି ସେ ସୂକ୍ଷ୍ମ ହୋଇଥିବାରୁ ଅବିଜ୍ଞେୟ* ଅଟନ୍ତି ତଥା ସେ ଅତ୍ୟନ୍ତ ନିକଟରେΨ ଅଛନ୍ତି ଓ ଅତି ଦୂରରେ✦ ମଧ୍ୟ ଅଛନ୍ତି ॥ ୧୫ ॥

**ଅବିଭକ୍ତଂ ଚ ଭୂତେଷୁ, ବିଭକ୍ତ-ମିବ ଚ ସ୍ଥିତମ୍ ।**
**ଭୂତ-ଭର୍ତ୍ତୃ ଚ ତଜ୍-ଜ୍ଞେୟଂ, ଗ୍ରସିଷ୍ଣୁ ପ୍ରଭବିଷ୍ଣୁ ଚ ॥**

ସେହି ପରମାତ୍ମା ଅବିଭକ୍ତରୂପରେ ଆକାଶସଦୃଶ ପରିପୂର୍ଣ୍ଣ ହୋଇଥିଲେ ବି ଚରାଚର ସମସ୍ତ ଭୂତମାନଙ୍କ ଭିତରେ ବିଭକ୍ତ ପରି ହୋଇ ରହିଥିବା ପ୍ରତୀତ ହୁଅନ୍ତି§ । ପୁଣି ସେହି ଜ୍ଞେୟ

* ସୂର୍ଯ୍ୟକିରଣରେ ଅବସ୍ଥିତ ଜଳରାଶି ଯେପରି ସୂକ୍ଷ୍ମ ହୋଇଥିବାରୁ ସାଧାରଣ ମନୁଷ୍ୟ ତାହାକୁ ଜାଣିପାରେ ନାହିଁ, ସର୍ବତ୍ର ବ୍ୟାପ୍ତସ୍ୱରୂପ ପରମାତ୍ମା ସେହିପରି ସୂକ୍ଷ୍ମ ହୋଇଥିବାରୁ ସାଧାରଣ ମନୁଷ୍ୟର ଜ୍ଞାନ ଗୋଚର ହୁଅନ୍ତି ନାହିଁ ।

Ψ ପରମାତ୍ମା ସର୍ବତ୍ର ପରିପୂର୍ଣ୍ଣ ଓ ସମସ୍ତଙ୍କର ଆତ୍ମା ହୋଇଥିବାରୁ ଆମର ଅତି ନିକଟରେ ଅଛନ୍ତି ।

✦ ଶ୍ରଦ୍ଧାହୀନମାନେ ଜ୍ଞାନହୀନ; ତେଣୁ ସେମାନଙ୍କ ଠାରୁ ପରମାତ୍ମା ଅତି ଦୂରରେ ଥାଆନ୍ତି ।

§ ମହାକାଶ ଯେପରି ବିଭାଗହୀନ ହେଲେ ବି ପୃଥକ୍ ପୃଥକ୍ ଘଟରେ ପୃଥକ୍ ପୃଥକ୍‌ରୂପେ ଦେଖାଯାଏ, ପରମାତ୍ମା ସେହିପରି ସକଳ ଭୂତଙ୍କ ଠାରେ ଏକରୂପେ ରହିଥିଲେ ବି ବିଭକ୍ତରୂପେ ରହିଥିବା ପରି ପ୍ରତୀତ ହୁଅନ୍ତି ।

ପରମାତ୍ମା ବିଷ୍ଣୁରୂପରେ ଭୂତମାନଙ୍କର ଧାରଣ-ପୋଷଣକର୍ତ୍ତା, ରୁଦ୍ରରୂପରେ ସଂହାରକର୍ତ୍ତା ତଥା ବ୍ରହ୍ମାରୂପରେ ସମସ୍ତଙ୍କର ସୃଷ୍ଟିକର୍ତ୍ତା ଅଟନ୍ତି ॥ ୧୬ ॥

**ଜ୍ୟୋତିଷା-ମପି ତଜ୍-ଜ୍ୟୋତିସ୍,-ତମସଃ ପର-ମୁଚ୍ୟତେ ।**
**ଜ୍ଞାନଂ ଜ୍ଞେୟଂ ଜ୍ଞାନ-ଗମ୍ୟଂ, ହୃଦି ସର୍ବସ୍ୟ ବିଷ୍ଠିତମ୍ ॥**

ସେହି ପରବ୍ରହ୍ମଙ୍କୁ ଜ୍ୟୋତିମାନଙ୍କର ବି ଜ୍ୟୋତି ଏବଂ ମାୟାରୁ ସମ୍ପୂର୍ଣ୍ଣ ଅତୀତ ବୋଲି କୁହାଯାଏ । ସେହି ପରମାତ୍ମା ବୋଧସ୍ୱରୂପ, ଜାଣିବାର ଯୋଗ୍ୟ ଏବଂ ତତ୍ତ୍ୱଜ୍ଞାନଦ୍ୱାରା ପ୍ରାପ୍ୟ ତଥା ସେ ସମସ୍ତଙ୍କର ହୃଦୟରେ ବିଶେଷରୂପେ ଅବସ୍ଥିତ ॥ ୧୭ ॥

**ଇତି କ୍ଷେତ୍ରଂ ତଥା ଜ୍ଞାନଂ, ଜ୍ଞେୟଂ ଚୋକ୍ତଂ ସମାସତଃ ।**
**ମଦ୍-ଭକ୍ତ ଏତଦ୍-ବିଜ୍ଞାୟ, ମଦ୍‌ଭାବା-ୟୋପପଦ୍ୟତେ ॥**

ଏପରିଭାବରେ କ୍ଷେତ୍ର ତଥା ଜ୍ଞାନ ଓ ଜ୍ଞେୟ ପରମାତ୍ମାଙ୍କର ସ୍ୱରୂପ ସଂକ୍ଷେପରେ କୁହାଗଲା । ମୋର ଭକ୍ତ ଏହା ତତ୍ତ୍ୱତଃ ଜାଣି ମୋର ସ୍ୱରୂପ ପ୍ରାପ୍ତ ହୁଅନ୍ତି ॥ ୧୮ ॥

**ପ୍ରକୃତିଂ ପୁରୁଷଂ ଚୈବ, ବିଦ୍ଧ୍ୟନାଦୀ ଉଭାବପି ।**
**ବିକାରାଂଶ୍-ଚ ଗୁଣାଂଶ୍-ଚୈବ, ବିଦ୍ଧି ପ୍ରକୃତି-ସମ୍ଭବାନ୍ ॥**

ପ୍ରକୃତି (ମୂଳପ୍ରକୃତି) ଏବଂ ପୁରୁଷ (ଜୀବାତ୍ମା)—ଏହି ଉଭୟଙ୍କୁ ଅନାଦି ବୋଲି ଜାଣ ଏବଂ ରାଗଦ୍ୱେଷାଦି ବିକାରଗୁଡ଼ିକୁ ତଥା ତ୍ରିଗୁଣାତ୍ମକ ସମସ୍ତ ପଦାର୍ଥ ବି ପ୍ରକୃତିରୁ ହିଁ ଉତ୍ପନ୍ନ ବୋଲି ଜାଣ ॥ ୧୯ ॥

**କାର୍ଯ୍ୟ-କରଣ-କର୍ତ୍ତୃତ୍ୱେ, ହେତୁଃ ପ୍ରକୃତି-ରୁଚ୍ୟତେ ।**
**ପୁରୁଷଃ ସୁଖ-ଦୁଃଖାନାଂ, ଭୋକ୍ତୃତ୍ୱେ ହେତୁ-ରୁଚ୍ୟତେ ॥**

କାର୍ଯ୍ୟ* ଓ କରଣ Ψ ଉତ୍ପନ୍ନ କରିବାରେ ପ୍ରକୃତିକୁ ହେତୁ ବୋଲି କୁହାଯାଏ ଏବଂ ସୁଖ-ଦୁଃଖର ଭୋକ୍ତାପଣରେ ଅର୍ଥାତ୍ ଭୋଗିବାରେ ଜୀବାତ୍ମାକୁ ହେତୁ ବୋଲି କୁହାଯାଏ ॥ ୨୦ ॥

**ପୁରୁଷଃ ପ୍ରକୃତିସ୍ଥୋ ହି, ଭୁଙ୍କ୍ତେ ପ୍ରକୃତିଜାନ୍-ଗୁଣାନ୍ ।**
**କାରଣଂ ଗୁଣ-ସଙ୍ଗୋଽସ୍ୟ, ସଦସଦ୍-ଯୋନି-ଜନ୍ମସୁ ॥**

ପ୍ରକୃତିରେ✦ ସ୍ଥିତ ପୁରୁଷ ହିଁ ପ୍ରକୃତିରୁ ଉତ୍ପନ୍ନ ତ୍ରିଗୁଣାତ୍ମକ ପଦାର୍ଥଗୁଡ଼ିକୁ ଭୋଗ କରେ ଏବଂ ଏହିସବୁ ଗୁଣମାନଙ୍କର ସଙ୍ଗ ହିଁ ଏହି ଜୀବାତ୍ମାର ଭଲ-ମନ୍ଦ ଯୋନିମାନଙ୍କରେ§ ଜନ୍ମ ନେବାରେ କାରଣ ଅଟେ ॥ ୨୧ ॥

**ଉପ-ଦ୍ରଷ୍ଟା-ନୁମନ୍ତା ଚ, ଭର୍ତ୍ତା ଭୋକ୍ତା ମହେଶ୍ୱରଃ ।**
**ପରମାତ୍ମେତି ଚାପ୍ୟୁକ୍ତୋ, ଦେହେଽସ୍ମିନ୍-ପୁରୁଷଃ ପରଃ ॥**

---

* ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ ଏବଂ ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ—ଏଗୁଡ଼ିକୁ କାର୍ଯ୍ୟ ବୋଲାଯାଏ ।

Ψ ବୁଦ୍ଧି-ଅହଂକାର-ମନ ଏବଂ ଚକ୍ଷୁ, କର୍ଣ୍ଣ, ଜିହ୍ୱା, ନାସିକା, ତ୍ୱକ୍ ଏବଂ ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ—ଏହି ୧୩ଟି ହେଉଛି କରଣ ।

✦ ୭ମ ଅଧ୍ୟାୟର ୧୪ଶ ଶ୍ଲୋକରେ କଥିତ ଭଗବାନଙ୍କର ତ୍ରିଗୁଣାତ୍ମକ ମାୟାକୁ ପ୍ରକୃତି ବୋଲି ଧରାଯାଏ ।

§ ସତ୍ତ୍ୱଗୁଣ ଧାରଣ କଲେ ଦେବଯୋନିରେ, ରଜୋଗୁଣ ଧାରଣ କଲେ ମନୁଷ୍ୟ ଯୋନିରେ ଓ ତମୋଗୁଣ ଧାରଣ କଲେ ପଶୁପକ୍ଷୀ ଆଦି ନୀଚଯୋନିରେ ଜନ୍ମ ମିଳେ ।

ଏହି ଦେହରେ ଅବସ୍ଥିତ ହୋଇ ମଧ୍ୟ ଏହି ଆତ୍ମା ପ୍ରକୃତରେ ପରମାତ୍ମା ହିଁ ଅଟେ । ସେ ହିଁ ସାକ୍ଷୀ ହୋଇଥିବାରୁ ଉପଦ୍ରଷ୍ଟା, ଯଥାର୍ଥ ସମ୍ମତିଦାତା ହୋଇଥିବାରୁ ଅନୁମନ୍ତା, ସମସ୍ତଙ୍କର ଧାରଣ-ପୋଷଣକାରୀ ହୋଇଥିବାରୁ ଭର୍ତ୍ତା, ଜୀବରୂପୀ ହୋଇଥିବାରୁ ଭୋକ୍ତା, ବ୍ରହ୍ମା ପ୍ରଭୃତିଙ୍କର ସ୍ୱାମୀ ହୋଇଥିବାରୁ ମହେଶ୍ୱର ଏବଂ ଶୁଦ୍ଧ ସଚ୍ଚିଦାନନ୍ଦଘନ ହୋଇଥିବାରୁ ପରମାତ୍ମା ବୋଲି କଥିତ ହୁଏ ॥ ୨୨ ॥

**ଯ୍ଯ ଏବଂ ବେତ୍ତି ପୁରୁଷଂ, ପ୍ରକୃତିଂ ଚ ଗୁଣୈଃ ସହ ।**
**ସର୍ବଥା ବର୍ତ୍ତମାନୋଽପି, ନ ସ ଭୂୟୋଽଭି-ଜାୟତେ ॥**

ଏପରିଭାବରେ ଯେଉଁ ମନୁଷ୍ୟ ପୁରୁଷକୁ (ସ୍ୱ-ସ୍ୱରୂପକୁ) ଓ ଗୁଣମାନଙ୍କ ସହିତ ପ୍ରକୃତିକୁ ତତ୍ତ୍ୱତଃ ଜାଣନ୍ତି,* ସେ ସକଳପ୍ରକାରେ କର୍ତ୍ତବ୍ୟ କର୍ମ କରୁଥିଲେ ବି ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ନାହିଁ ॥ ୨୩ ॥

**ଧ୍ୟାନେ-ନାତ୍ମନି ପଶ୍ୟନ୍ତି, କେଚିଦାତ୍ମାନ-ମାତ୍ମନା ।**
**ଅନ୍ୟେ ସାଙ୍ଖ୍ୟେନ ୟୋଗେନ, କର୍ମ-ୟୋଗେନ ଚାପରେ ॥**

---

* ଜଗତର ସକଳ ଇନ୍ଦ୍ରିୟଗୋଚର ବସ୍ତୁ ମାୟାର କାର୍ଯ୍ୟ ହୋଇଥିବାରୁ କ୍ଷଣଭଙ୍ଗୁର, ବିନାଶଶୀଳ, ଜଡ଼ ଓ ଅନିତ୍ୟ ଏବଂ ଜୀବାତ୍ମା ହେଉଛି ନିତ୍ୟ, ଚେତନ, ନିର୍ବିକାର ଓ ଅବିନାଶୀ; ପୁଣି ସେ ହେଉଛି ଶୁଦ୍ଧ, ବୋଧସ୍ୱରୂପ, ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କର ସନାତନ ଅଂଶ । ଏହା ଜାଣି ମାୟାଧୀନ ପଦାର୍ଥ ତ୍ୟାଗ କରି ପରମାତ୍ମାଙ୍କ ଠାରେ ରମଣ କରିବା ହିଁ ଏହାକୁ ତତ୍ତ୍ୱତଃ ଜାଣିବା ।

କେତେକ ମନୁଷ୍ୟ ସେହି ପରମପୁରୁଷ ପରମାତ୍ମାଙ୍କୁ ଶୁଦ୍ଧ ହୋଇଥିବା ସୂକ୍ଷ୍ମବୁଦ୍ଧିବଳରେ ଧ୍ୟାନଦ୍ୱାରା* ହୃଦୟରେ ଦର୍ଶନ କରନ୍ତି; ଅନ୍ୟ କେତେକ ଜ୍ଞାନଯୋଗΨ (ସାଙ୍ଖ୍ୟଯୋଗ)ଦ୍ୱାରା ଓ ଆହୁରି କେତେକ କର୍ମଯୋଗଦ୍ୱାରା✦ ତାଙ୍କୁ ଦର୍ଶନ କରନ୍ତି ଅର୍ଥାତ୍ ପ୍ରାପ୍ତ ହୁଅନ୍ତି ॥ ୨୪ ॥

**ଅନ୍ୟେ ତ୍ୱେବ-ମଜାନନ୍ତଃ, ଶ୍ରୁତ୍ୱାନ୍ୟେଭ୍ୟ ଉପାସତେ ।**
**ତେଽପି ଚାତି-ତରନ୍ତ୍ୟେବ, ମୃତ୍ୟୁଂ ଶ୍ରୁତି-ପରାୟଣାଃ ॥**

ପରନ୍ତୁ ଅନ୍ୟ ଅଳ୍ପବୁଦ୍ଧି ପୁରୁଷମାନେ ଏପରି ତତ୍ତ୍ୱ ଜାଣୁ ନ ଥିବାରୁ ଅନ୍ୟମାନଙ୍କ ଠାରୁ ଅର୍ଥାତ୍ ତତ୍ତ୍ୱଜ୍ଞ ପୁରୁଷମାନଙ୍କ ଠାରୁ ଶୁଣି ହିଁ ତଦନୁସାରେ ଉପାସନା କରନ୍ତି ଏବଂ ସେହି ଶ୍ରବଣପରାୟଣ ପୁରୁଷମାନେ ବି ମୃତ୍ୟୁରୂପକ ସଂସାରସାଗରକୁ ନିଃସନ୍ଦେହ ତରିଯାଆନ୍ତି ॥ ୨୫ ॥

**ୟାବତ୍ ସଂଜାୟତେ କିଞ୍ଚିତ୍, ସତ୍ତ୍ୱଂ ସ୍ଥାବର-ଜଙ୍ଗମମ୍ ।**
**କ୍ଷେତ୍ର-କ୍ଷେତ୍ରଜ୍ଞ-ସଂୟୋଗାତ୍, ତଦ୍-ବିଦ୍ଧି ଭରତର୍ଷଭ ॥**

ହେ ଅର୍ଜୁନ ! ଯେତେସବୁ ସ୍ଥାବରଜଙ୍ଗମ ପ୍ରାଣୀ ଉତ୍ପନ୍ନ ହୁଅନ୍ତି, ସେମାନଙ୍କୁ ତୁମେ କ୍ଷେତ୍ର ଓ କ୍ଷେତ୍ରଜ୍ଞର ସଂଯୋଗରୁ ହିଁ ଉତ୍ପନ୍ନ ହୁଅନ୍ତି ବୋଲି ଜାଣ ॥ ୨୬ ॥

---

* ୬ଷ୍ଠ ଅଧ୍ୟାୟର ୧୧ ଠାରୁ ୩୨ ଶ୍ଳୋକର ବ୍ୟାଖ୍ୟା ଦେଖନ୍ତୁ ।

Ψ ୨ୟ ଅଧ୍ୟାୟର ୧୧ ଠାରୁ ୩୦ ଶ୍ଳୋକର ବ୍ୟାଖ୍ୟା ଦେଖନ୍ତୁ ।

✦ ୨ୟ ଅଧ୍ୟାୟର ୪୦ ଠାରୁ ଶେଷ ଯାଏ ବ୍ୟାଖ୍ୟା ଦେଖନ୍ତୁ ।

**ସମଂ ସର୍ବେଷୁ ଭୂତେଷୁ, ତିଷ୍ଠନ୍ତଂ ପରମେଶ୍ୱରମ୍ ।**
**ବିନଶ୍ୟତ୍ସ୍ୱ-ବିନଶ୍ୟନ୍ତଂ, ଯଃ ପଶ୍ୟତି ସ ପଶ୍ୟତି ॥**

ଯେଉଁ ପୁରୁଷ ବିନଷ୍ଟ ହେଉଥିବା ସକଳ ଚରାଚର ଭୂତମାନଙ୍କ ଠାରେ ପରମେଶ୍ୱରଙ୍କୁ ନାଶରହିତ ଏବଂ ସମଭାବରେ ଅବସ୍ଥିତ ଥିବା ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି ॥ ୨୭ ॥

**ସମଂ ପଶ୍ୟନ୍ ହି ସର୍ବତ୍ର, ସମ-ବସ୍ଥିତ-ମୀଶ୍ୱରମ୍ ।**
**ନ ହିନସ୍ତ୍ୟାତ୍ମ-ନାତ୍ମାନଂ, ତତୋ ଯାତି ପରାଂ ଗତିମ୍ ॥**

କାରଣ, ଯେଉଁ ପୁରୁଷ ସର୍ବତ୍ର ସମଭାବରେ ଅବସ୍ଥିତ ପରମେଶ୍ୱରଙ୍କୁ ସମାନରୂପରେ ଦେଖି ନିଜଦ୍ୱାରା ନିଜକୁ ନଷ୍ଟ କରନ୍ତି ନାହିଁ, ସେ ତାହାର ଫଳସ୍ୱରୂପ ପରମଗତି ପ୍ରାପ୍ତ ହୁଅନ୍ତି ॥ ୨୮ ॥

**ପ୍ରକୃତ୍ୟୈବ ଚ କର୍ମାଣି, କ୍ରିୟମାଣାନି ସର୍ବଶଃ ।**
**ଯଃ ପଶ୍ୟତି ତଥାତ୍ମାନ,-ମକର୍ତ୍ତାରଂ ସ ପଶ୍ୟତି ॥**

ଏବଂ ଯେଉଁ ପୁରୁଷ କର୍ମମାନଙ୍କୁ ସବୁପ୍ରକାରେ ପ୍ରକୃତିଦ୍ୱାରା ହିଁ କରାଯାଉଛି ବୋଲି ଦେଖନ୍ତି ଓ ଆତ୍ମାକୁ ଅକର୍ତ୍ତା ବୋଲି ଦେଖନ୍ତି, ସେ ହିଁ ଯଥାର୍ଥ ଦେଖନ୍ତି ॥ ୨୯ ॥

**ଯଦା ଭୂତ-ପୃଥଗ୍-ଭାବ,-ମେକସ୍ଥ-ମନୁ-ପଶ୍ୟତି ।**
**ତତ ଏବ ଚ ବିସ୍ତାରଂ, ବ୍ରହ୍ମ ସମ୍ପଦ୍ୟତେ ତଦା ॥**

ଏହି ପୁରୁଷ ଯେଉଁକ୍ଷଣି ଭୂତମାନଙ୍କର ପୃଥକ୍ ପୃଥକ୍ ଭାବକୁ ଏକ ପରମାତ୍ମାଙ୍କ ଠାରେ ଅବସ୍ଥିତ ଥିବା ଦେଖନ୍ତି ଏବଂ

ସେହି ଏକ ପରମାତ୍ମାଙ୍କ ଠାରୁ ହିଁ ସମସ୍ତ ଭୂତଙ୍କର ବିସ୍ତାର ହୋଇଛି ବୋଲି ଦେଖନ୍ତି, ସେ ସେହିକ୍ଷଣି ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ ପ୍ରାପ୍ତ ହୋଇଯାଆନ୍ତି ॥ ୩୦ ॥

**ଅନାଦିତ୍ୱାନ୍-ନିର୍ଗୁଣତ୍ୱାତ୍, ପରମାତ୍ମାୟ-ମବ୍ୟୟଃ ।**
**ଶରୀରସ୍ଥୋଽପି କୌନ୍ତେୟ, ନ କରୋତି ନ ଲିପ୍ୟତେ ॥**

ହେ ଅର୍ଜୁନ ! ଅନାଦି ହୋଇଥିବାରୁ ଓ ନିର୍ଗୁଣ ହୋଇଥିବାରୁ ଏହି ଅବିନାଶୀ ପରମାତ୍ମା ଶରୀରରେ ରହି ମଧ୍ୟ ବାସ୍ତବରେ କିଛି କରନ୍ତି ନାହିଁ, କି କୌଣସିଥିରେ ଲିପ୍ତ ହୁଅନ୍ତି ନାହିଁ ॥ ୩୧ ॥

**ଯଥା ସର୍ବଗତଂ ସୌକ୍ଷ୍ମ୍ୟା,-ଦାକାଶଂ ନୋପଲିପ୍ୟତେ ।**
**ସର୍ବତ୍ରା-ବସ୍ଥିତୋ ଦେହେ, ତଥାତ୍ମା ନୋପଲିପ୍ୟତେ ॥**

ଯେପରି ସର୍ବତ୍ର ବ୍ୟାପ୍ତ ଆକାଶ ସୂକ୍ଷ୍ମ ହୋଇଥିବାରୁ କାହାଦ୍ୱାରା ଲିପ୍ତ ହୁଏ ନାହିଁ, ସେହିପରି ଦେହରେ ସର୍ବତ୍ର ଅବସ୍ଥିତ ଆତ୍ମା ନିର୍ଗୁଣ ହୋଇଥିବାରୁ ଦେହର ଗୁଣମାନଙ୍କ ଦ୍ୱାରା ଲିପ୍ତ ହୁଏ ନାହିଁ ॥ ୩୨ ॥

**ଯଥା ପ୍ରକାଶ-ୟତ୍ୟେକଃ, କୃତ୍ସ୍ନଂ ଲୋକ-ମିମଂ ରବିଃ ।**
**କ୍ଷେତ୍ରଂ କ୍ଷେତ୍ରୀ ତଥା କୃତ୍ସ୍ନଂ, ପ୍ରକାଶୟତି ଭାରତ ॥**

ହେ ଅର୍ଜୁନ ! ଯେପରି ଏକ ହିଁ ସୂର୍ଯ୍ୟ ସମସ୍ତ ବ୍ରହ୍ମାଣ୍ଡକୁ ଆଲୋକିତ କରିଥାଏ, ସେହିପରି ଏକ ହିଁ ଆତ୍ମା ସମସ୍ତ କ୍ଷେତ୍ରକୁ ଆଲୋକିତ କରେ ॥ ୩୩ ॥

**କ୍ଷେତ୍ର-କ୍ଷେତ୍ରଜ୍ଞୟୋ-ରେବ,-ମନ୍ତରଂ ଜ୍ଞାନ-ଚକ୍ଷୁଷା ।**
**ଭୂତ-ପ୍ରକୃତି-ମୋକ୍ଷଂ ଚ, ୟେ ବିଦୁର୍-ୟାନ୍ତି ତେ ପରମ୍ ॥**

ଯେଉଁ ପୁରୁଷମାନେ ଏପରିଭାବରେ କ୍ଷେତ୍ର ଓ କ୍ଷେତ୍ରଜ୍ଞର ପ୍ରଭେଦ* ତଥା କାର୍ଯ୍ୟସମେତ ପ୍ରକୃତିରୁ ମୁକ୍ତ ହେବା ପ୍ରଣାଳୀ ଜ୍ଞାନନେତ୍ରଦ୍ୱାରା ତତ୍ତ୍ୱତଃ ଜାଣିପାରନ୍ତି, ସେହି ମହାତ୍ମାମାନେ ପରବ୍ରହ୍ମ ପରମାତ୍ମାଙ୍କୁ ପ୍ରାପ୍ତ ହୁଅନ୍ତି ॥ ୩୪ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ୟୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, କ୍ଷେତ୍ର-କ୍ଷେତ୍ରଜ୍ଞ-ବିଭାଗ-ୟୋଗୋ ନାମ ତ୍ରୟୋଦଶୋଽଧ୍ୟାୟଃ ॥ ୧୩ ॥*



* କ୍ଷେତ୍ରକୁ ଜଡ଼, ବିକାରଶୀଳ, କ୍ଷଣିକ ଓ ବିନାଶଶୀଳ ଏବଂ କ୍ଷେତ୍ରଜ୍ଞକୁ ନିତ୍ୟ, ଚେତନ, ଅବିକାରୀ ଓ ଅବିନାଶଶୀଳ ବୋଲି ଜାଣିବା ହିଁ ସେ ଦୁହିଙ୍କର ପ୍ରଭେଦକୁ ଜାଣିବା ।

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ଚତୁର୍ଦ୍ଦଶୋଽଧ୍ୟାୟଃ

ଶ୍ରୀଭଗବାନୁବାଚ

**ପରଂ ଭୂୟଃ ପ୍ରବକ୍ଷ୍ୟାମି, ଜ୍ଞାନାନାଂ ଜ୍ଞାନ-ମୁତ୍ତମମ୍ ।**
**ଯଜ୍-ଜ୍ଞାତ୍ୱା ମୁନୟଃ ସର୍ବେ, ପରାଂ ସିଦ୍ଧି-ମିତୋ ଗତାଃ ॥**

ଶ୍ରୀଭଗବାନ୍ କହିଲେ—ଜ୍ଞାନମାନଙ୍କ ମଧ୍ୟରେ ଅତି ଉତ୍ତମ ସେହି ପରମ ଜ୍ଞାନ ମୁଁ ତୁମକୁ ପୁନର୍ବାର କହିବି, ଯାହା ଜାଣି ସକଳ ମୁନିଜନ ଏହି ସଂସାରରୁ ମୁକ୍ତ ହୋଇ ପରମ ସିଦ୍ଧି ପ୍ରାପ୍ତ ହୋଇଛନ୍ତି ॥ ୧ ॥

**ଇଦଂ ଜ୍ଞାନ-ମୁପାଶ୍ରିତ୍ୟ, ମମ ସାଧର୍ମ୍ୟ-ମାଗତାଃ ।**
**ସର୍ଗେଽପି ନୋପଜାୟନ୍ତେ, ପ୍ରଳୟେ ନ ବ୍ୟଥନ୍ତି ଚ ॥**

ଏହି ଜ୍ଞାନକୁ ଆଶ୍ରୟ କରି ଅର୍ଥାତ୍ ଧାରଣ କରି ମୋର ସ୍ୱରୂପ ପ୍ରାପ୍ତ ହୋଇଥିବା ପୁରୁଷମାନେ ସୃଷ୍ଟିର ଆରମ୍ଭରେ ପୁନର୍ବାର ଉତ୍ପନ୍ନ ହୁଅନ୍ତି ନାହିଁ, କି ପ୍ରଳୟକାଳରେ ବି ବ୍ୟଥିତ ହୁଅନ୍ତି ନାହିଁ ॥ ୨ ॥

**ମମ ଯୋନିର୍-ମହଦ୍-ବ୍ରହ୍ମ, ତସ୍ମିନ୍ ଗର୍ଭଂ ଦଧାମ୍ୟହମ୍ ।**
**ସମ୍ଭବଃ ସର୍ବ-ଭୂତାନାଂ, ତତୋ ଭବତି ଭାରତ ॥**

ହେ ଅର୍ଜୁନ ! ମୋର ମହତ୍-ବ୍ରହ୍ମରୂପକ ମୂଳପ୍ରକୃତି ହେଉଛି ସକଳ ଭୂତଙ୍କର ଯୋନି ଅର୍ଥାତ୍ ଗର୍ଭାଧାନର ସ୍ଥାନ ଏବଂ ମୁଁ ସେହି ଯୋନିରେ ଚେତନ-ସମୁଦାୟରୂପକ ଗର୍ଭ ସ୍ଥାପନ କରିଥାଏ। ସେହି ଜଡ଼-ଚେତନର ସଂଯୋଗରୁ ସମସ୍ତ ଭୂତମାନଙ୍କର ଉତ୍ପତ୍ତି ହୁଏ ॥ ୩ ॥

**ସର୍ବ-ୟୋନିଷୁ କୌନ୍ତେୟ, ମୂର୍ତ୍ତୟଃ ସମ୍ଭବନ୍ତି ୟାଃ ।**
**ତାସାଂ ବ୍ରହ୍ମ ମହଦ୍-ୟୋନି,-ରହଂ ବୀଜ-ପ୍ରଦଃ ପିତା ॥**

ହେ ଅର୍ଜୁନ ! ନାନାପ୍ରକାର ଯୋନିରେ ଯେତେସବୁ ଶରୀରଧାରୀ ପ୍ରାଣୀ ଉତ୍ପନ୍ନ ହୁଅନ୍ତି, ମୂଳପ୍ରକୃତି ହେଉଛି ସେହି ସମସ୍ତଙ୍କର ଗର୍ଭଧାରଣ କରୁଥିବା ମାତା ଏବଂ ମୁଁ ହେଉଛି ବୀଜ ସ୍ଥାପନ କରୁଥିବା ପିତା ॥ ୪ ॥

**ସତ୍ତ୍ୱଂ ରଜସ୍-ତମ ଇତି, ଗୁଣାଃ ପ୍ରକୃତି-ସମ୍ଭବାଃ ।**
**ନିବଧ୍ନନ୍ତି ମହାବାହୋ, ଦେହେ ଦେହିନ-ମବ୍ୟୟମ୍ ॥**

ହେ ଅର୍ଜୁନ ! ପ୍ରକୃତିରୁ ଉତ୍ପନ୍ନ ହୋଇଥିବା ସତ୍ତ୍ୱ, ରଜ ଓ ତମ—ଏହି ତିନିଗୁଣ ଅବିନାଶୀ ଜୀବାତ୍ମାକୁ ଶରୀରରେ ବାନ୍ଧିରଖନ୍ତି ॥ ୫ ॥

**ତତ୍ର ସତ୍ତ୍ୱଂ ନିର୍ମଲତ୍ୱାତ୍, ପ୍ରକାଶକ-ମନାମୟମ୍ ।**
**ସୁଖ-ସଙ୍ଗେନ ବଧ୍ନାତି, ଜ୍ଞାନ-ସଙ୍ଗେନ ଚାନଘ ॥**

ହେ ନିଷ୍ପାପ ! ସେହି ତିନିଗୁଣମଧ୍ୟରୁ ସତ୍ତ୍ୱଗୁଣ ନିର୍ମଳ ହୋଇଥିବାରୁ ପ୍ରକାଶକ ଓ ବିକାରରହିତ ଅଟେ; କିନ୍ତୁ ତାହା

ସୁଖ ସମ୍ବନ୍ଧଦ୍ୱାରା ଓ ଜ୍ଞାନସମ୍ବନ୍ଧଦ୍ୱାରା ଅର୍ଥାତ୍ ଜ୍ଞାନର ଅଭିମାନଦ୍ୱାରା ବନ୍ଧନ କରେ ॥ ୬ ॥

**ରଜୋ ରାଗାତ୍ମକଂ ବିଦ୍ଧି, ତୃଷ୍ଣା-ସଙ୍ଗ-ସମୁଦ୍‌ଭବମ୍ ।**
**ତନ୍-ନିବଧ୍ନାତି କୌନ୍ତେୟ, କର୍ମ-ସଙ୍ଗେନ ଦେହିନମ୍ ॥**

ହେ ଅର୍ଜୁନ ! ରାଗରୂପୀ ରଜୋଗୁଣ କାମନା ଓ ଆସକ୍ତିରୁ ଉତ୍ପନ୍ନ ହୁଏ ବୋଲି ଜାଣ । ତାହା ଏହି ଜୀବାତ୍ମାକୁ କର୍ମ ଓ କର୍ମଫଳ ସହିତ ଥିବା ସମ୍ବନ୍ଧଦ୍ୱାରା ବନ୍ଧନ କରେ ॥ ୭ ॥

**ତମସ୍-ତ୍ୱଜ୍ଞାନଜଂ ବିଦ୍ଧି, ମୋହନଂ ସର୍ବ-ଦେହିନାମ୍ ।**
**ପ୍ରମାଦାଲସ୍ୟ-ନିଦ୍ରାଭିସ୍,-ତନ୍-ନିବଧ୍ନାତି ଭାରତ ॥**

କିନ୍ତୁ ହେ ଅର୍ଜୁନ ! ସମସ୍ତ ଦେହାଭିମାନୀଙ୍କୁ ମୋହିତ କରୁଥିବା ତମୋଗୁଣ ଅଜ୍ଞାନରୁ ଉତ୍ପନ୍ନ ବୋଲି ଜାଣ । ତାହା ଏହି ଜୀବାତ୍ମାକୁ ପ୍ରମାଦ*, ଆଳସ୍ୟ☫ ଓ ନିଦ୍ରାଦ୍ୱାରା ବନ୍ଧନ କରେ ॥ ୮ ॥

**ସତ୍ତ୍ୱଂ ସୁଖେ ସଞ୍ଜୟତି, ରଜଃ କର୍ମଣି ଭାରତ ।**
**ଜ୍ଞାନ-ମାବୃତ୍ୟ ତୁ ତମଃ, ପ୍ରମାଦେ ସଂଜୟତ୍ୟୁତ ॥**

ହେ ଅର୍ଜୁନ ! ସତ୍ତ୍ୱଗୁଣ ସୁଖରେ ଲଗାଏ ଓ ରଜୋଗୁଣ କର୍ମରେ ଲଗାଏ । ତମୋଗୁଣ ତ ଜ୍ଞାନକୁ ଆଚ୍ଛାଦିତ କରି ପ୍ରମାଦରେ ବି ଲଗାଇଥାଏ ॥ ୯ ॥

---

* ଇନ୍ଦ୍ରିୟ ଓ ଚିତ୍ତର ବ୍ୟର୍ଥ ପ୍ରଚେଷ୍ଟାର ନାମ ପ୍ରମାଦ ।

☫ କର୍ତ୍ତବ୍ୟକର୍ମରେ ଅପ୍ରବୃତ୍ତିରୂପ ନିରୁଦ୍ୟମକୁ ଆଳସ୍ୟ କୁହାଯାଏ ।

**ରଜସ୍-ତମଶ୍-ଗ୍ୱଭିଭୂୟ, ସତ୍ତ୍ୱଂ ଭବତି ଭାରତ ।**
**ରଜଃ ସତ୍ତ୍ୱଂ ତମଶ୍-ଚୈବ, ତମଃ ସତ୍ତ୍ୱଂ ରଜସ୍-ତଥା ॥**

ହେ ଅର୍ଜୁନ ! ରଜୋଗୁଣ ଓ ତମୋଗୁଣକୁ ଗ୍ୱପିଦେଇ ସତ୍ତ୍ୱଗୁଣ ବର୍ଦ୍ଧିତ ହୁଏ, ସତ୍ତ୍ୱଗୁଣ ଓ ତମୋଗୁଣକୁ ଗ୍ୱପିଦେଇ ରଜୋଗୁଣ ବର୍ଦ୍ଧିତ ହୁଏ ଏବଂ ସେହିପରି ସତ୍ତ୍ୱଗୁଣ ଓ ରଜୋଗୁଣକୁ ଗ୍ୱପିଦେଇ ତମୋଗୁଣ ବର୍ଦ୍ଧିତ ହୁଏ ॥ ୧୦ ॥

**ସର୍ବ-ଦ୍ୱାରେଷୁ ଦେହେଽସ୍ମିନ୍, ପ୍ରକାଶ ଉପଜାୟତେ ।**
**ଜ୍ଞାନଂ ଯଦା ତଦା ବିଦ୍ୟାଦ୍,-ବିବୃଦ୍ଧଂ ସତ୍ତ୍ୱ-ମିତ୍ୟୁତ ॥**

ଯେତେବେଳେ ଏହି ଦେହରେ ତଥା ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କରେ ଚେତନା ଏବଂ ବିବେକଶକ୍ତି ଉତ୍ପନ୍ନ ହୁଏ, ସେତେବେଳେ ଜାଣିବା ଉଚିତ ଯେ, ସତ୍ତ୍ୱଗୁଣ ବଢ଼ିଛି ॥ ୧୧ ॥

**ଲୋଭଃ ପ୍ରବୃତ୍ତି-ରାରମ୍ଭଃ, କର୍ମଣା-ମଶମଃ ସ୍ପୃହା ।**
**ରଜସ୍ୟେତାନି ଜାୟନ୍ତେ, ବିବୃଦ୍ଧେ ଭରତର୍ଷଭ ॥**

ହେ ଅର୍ଜୁନ ! ରଜୋଗୁଣର ବୃଦ୍ଧି ଘଟିଲେ ଲୋଭ, ପ୍ରବୃତ୍ତି, ସ୍ୱାର୍ଥବୁଦ୍ଧିପୂର୍ବକ ସକାମଭାବରେ କର୍ମାଚରଣ, ଅଶାନ୍ତି ଓ ବିଷୟଭୋଗର ଲାଳସା—ଏସବୁ ଉତ୍ପନ୍ନ ହୁଏ ॥ ୧୨ ॥

**ଅପ୍ରକାଶୋଽପ୍ରବୃତ୍ତିଶ୍-ଚ, ପ୍ରମାଦୋ ମୋହ ଏବ ଚ ।**
**ତମସ୍ୟେତାନି ଜାୟନ୍ତେ, ବିବୃଦ୍ଧେ କୁରୁ-ନନ୍ଦନ ॥**

ହେ ଅର୍ଜୁନ ! ତମୋଗୁଣ ବୃଦ୍ଧି ହେଲେ ଅନ୍ତଃକରଣରେ ଓ ଇନ୍ଦ୍ରିୟମାନଙ୍କରେ ଅପ୍ରକାଶ, କର୍ତ୍ତବ୍ୟକର୍ମରେ ଅପ୍ରବୃତ୍ତି ଓ

ପ୍ରମାଦ ଅର୍ଥାତ୍ ବ୍ୟର୍ଥଚେଷ୍ଟା ଏବଂ ନିଦ୍ରାଦି ଅନ୍ତଃକରଣର ମୋହିନୀ ବୃତ୍ତି ଉତ୍ପନ୍ନ ହୁଏ ॥ ୧୩ ॥

**ଯଦା ସତ୍ତ୍ୱେ ପ୍ରବୃଦ୍ଧେ ତୁ, ପ୍ରଲୟଂ ଯାତି ଦେହ-ଭୃତ୍ ।**
**ତଦୋତ୍ତମ-ବିଦାଂ ଲୋକା,-ନମଲାନ୍ ପ୍ରତିପଦ୍ୟତେ ॥**

ଯେତେବେଳେ ଏହି ମନୁଷ୍ୟ ସତ୍ତ୍ୱଗୁଣବୃଦ୍ଧିରେ ମୃତ୍ୟୁ ପ୍ରାପ୍ତ ହୁଏ, ସେତେବେଳେ ସେ ଉତ୍ତମ କର୍ମ କରୁଥିବା ପୁରୁଷମାନଙ୍କର ଦିବ୍ୟ ସ୍ୱର୍ଗାଦି ଲୋକ ପ୍ରାପ୍ତ ହୁଏ ॥ ୧୪ ॥

**ରଜସି ପ୍ରଲୟଂ ଗତ୍ୱା, କର୍ମ-ସଙ୍ଗିଷୁ ଜାୟତେ ।**
**ତଥା ପ୍ରଲୀନସ୍-ତମସି, ମୂଢ଼-ଯୋନିଷୁ ଜାୟତେ ॥**

ରଜୋଗୁଣବୃଦ୍ଧିରେ ମରୁଥିବା ମନୁଷ୍ୟ କର୍ମାସକ୍ତ ମନୁଷ୍ୟମାନଙ୍କ ମଧ୍ୟରେ ଜନ୍ମ ହୁଏ ତଥା ତମୋଗୁଣବୃଦ୍ଧିରେ ମରୁଥିବା ମନୁଷ୍ୟ ପଶୁ, କୀଟ ଆଦି ମୂଢ଼ଯୋନିମାନଙ୍କରେ ଜନ୍ମ ହୁଏ ॥ ୧୫ ॥

**କର୍ମଣଃ ସୁକୃତସ୍ୟାହୁଃ, ସାତ୍ତ୍ୱିକଂ ନିର୍ମଲଂ ଫଲମ୍ ।**
**ରଜସସ୍-ତୁ ଫଲଂ ଦୁଃଖ,-ମଜ୍ଞାନଂ ତମସଃ ଫଲମ୍ ॥**

ଶ୍ରେଷ୍ଠ କର୍ମରୁ ସାତ୍ତ୍ୱିକ ଫଳ ଅର୍ଥାତ୍ ସୁଖ, ଜ୍ଞାନ ଓ ବୈରାଗ୍ୟାଦି ନିର୍ମଳ ଫଳ ମିଳେ ବୋଲି କହନ୍ତି; ରାଜସକର୍ମର ଫଳ ଦୁଃଖ ଏବଂ ତାମସକର୍ମର ଫଳ ଅଜ୍ଞାନ ବୋଲି କହନ୍ତି ॥୧୬॥

**ସତ୍ତ୍ୱାତ୍ ସଂଜାୟତେ ଜ୍ଞାନଂ, ରଜସୋ ଲୋଭ ଏବ ଚ ।**
**ପ୍ରମାଦ-ମୋହୌ ତମସୋ, ଭବତୋଽଜ୍ଞାନ-ମେବ ଚ ॥**

ସତ୍ତ୍ୱଗୁଣରୁ ଜ୍ଞାନ ଉତ୍ପନ୍ନ ହୁଏ ଏବଂ ରଜୋଗୁଣରୁ କେବଳ

ଲୋଭ ତଥା ତମୋଗୁଣରୁ ପ୍ରମାଦ, ମୋହ ଏବଂ ଅଜ୍ଞାନ ମଧ୍ୟ ଉତ୍ପନ୍ନ ହୁଏ ॥ ୧୭ ॥

**ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା, ମଧ୍ୟେ ତିଷ୍ଠନ୍ତି ରାଜସାଃ ।**
**ଜଘନ୍ୟ-ଗୁଣ-ବୃତ୍ତିସ୍ଥା, ଅଧୋ ଗଚ୍ଛନ୍ତି ତାମସାଃ ॥**

ସତ୍ତ୍ୱଗୁଣରେ ସ୍ଥିତ ପୁରୁଷମାନେ ସ୍ୱର୍ଗାଦି ଉଚ୍ଚଲୋକମାନଙ୍କୁ ଯାଆନ୍ତି, ରଜୋଗୁଣରେ ସ୍ଥିତ ପୁରୁଷମାନେ ମଧ୍ୟରେ ଅର୍ଥାତ୍ ମନୁଷ୍ୟଲୋକରେ ହିଁ ରହନ୍ତି ଏବଂ ତମୋଗୁଣର କାର୍ଯ୍ୟରୂପୀ ନିଦ୍ରା, ପ୍ରମାଦ ଓ ଆଳସ୍ୟାଦିରେ ସ୍ଥିତ ପୁରୁଷମାନେ ଅଧୋଗତି ଅର୍ଥାତ୍ କୀଟ, ପଶୁ ଆଦି ନୀଚଯୋନି ତଥା ନରକ ପ୍ରାପ୍ତ ହୁଅନ୍ତି ॥ ୧୮ ॥

**ନାନ୍ୟଂ ଗୁଣେଭ୍ୟଃ କର୍ତ୍ତାରଂ, ଯଦା ଦ୍ରଷ୍ଟାନୁ-ପଶ୍ୟତି ।**
**ଗୁଣେଭ୍ୟଶ୍-ଚ ପରଂ ବେତ୍ତି, ମଦ୍-ଭାବଂ ସୋଽଧି-ଗଚ୍ଛତି ॥**

ଯେତେବେଳେ ଦ୍ରଷ୍ଟା-ସାକ୍ଷୀରୂପେ ସ୍ଥିତ ବିବେକୀ ପୁରୁଷ ତିନିଗୁଣଠାରୁ ଭିନ୍ନ ଅନ୍ୟ କାହାକୁ କର୍ତ୍ତା ବୋଲି ଦେଖନ୍ତି ନାହିଁ ଏବଂ ତିନିଗୁଣଠାରୁ ସର୍ବଥା ଅତୀତ ହୋଇ ରହିଥିବା ସଚ୍ଚିଦାନନ୍ଦଘନସ୍ୱରୂପ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ ତତ୍ତ୍ୱତଃ ଜାଣନ୍ତି, ସେତେବେଳେ ସେ ମୋର ସ୍ୱରୂପ ପ୍ରାପ୍ତ ହୁଅନ୍ତି ॥ ୧୯ ॥

**ଗୁଣାନେତା-ନତୀତ୍ୟ ତ୍ରୀନ୍, ଦେହୀ ଦେହ-ସମୁଦ୍ଭବାନ୍ ।**
**ଜନ୍ମ-ମୃତ୍ୟୁ-ଜରା-ଦୁଃଖୈର୍,-ବିମୁକ୍ତୋଽମୃତ-ମଶ୍ନୁତେ ॥**

ସେହି ପୁରୁଷ ଶରୀର ଉତ୍ପତ୍ତିର* କାରଣରୂପ ଏହି ତିନି

* ବୁଦ୍ଧି, ଅହଂକାର, ମନ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ମହାଭୂତ,

ଗୁଣକୁ ଅତିକ୍ରମ କରି, ଜନ୍ମ, ମୃତ୍ୟୁ, ବାର୍ଦ୍ଧକ୍ୟ ଓ ସକଳପ୍ରକାର ଦୁଃଖରୁ ବିମୁକ୍ତ ହୋଇ ପରମାନନ୍ଦ ପ୍ରାପ୍ତ ହୁଅନ୍ତି ॥ ୨୦ ॥

*ଅର୍ଜୁନ ଉବାଚ*

**କୈର୍ଲିଙ୍ଗୈସ୍-ତ୍ରୀନ୍ ଗୁଣାନେତା,-ନତୀତୋ ଭବତି ପ୍ରଭୋ ।**
**କିମାଚାରଃ କଥଂ ଚୈତାଂସ୍,-ତ୍ରୀନ୍ ଗୁଣା-ନତି-ବର୍ତ୍ତତେ ॥**

**ଅର୍ଜୁନ ପଚାରିଲେ**—ଏହି ତିନି ଗୁଣରୁ ଅତୀତ ପୁରୁଷ କେଉଁ କେଉଁ ଲକ୍ଷଣରେ ଯୁକ୍ତ ହୁଅନ୍ତି ଏବଂ କେଉଁପ୍ରକାର ଆଚରଣଯୁକ୍ତ ହୁଅନ୍ତି? ତଥା ହେ ପ୍ରଭୁ ! ମନୁଷ୍ୟ କେଉଁ ଉପାୟରେ ଏହି ତିନିଗୁଣରୁ ଅତୀତ ହୋଇଥାଏ? ॥ ୨୧ ॥

*ଶ୍ରୀଭଗବାନୁବାଚ*

**ପ୍ରକାଶଂ ଚ ପ୍ରବୃତ୍ତିଂ ଚ, ମୋହମେବ ଚ ପାଣ୍ଡବ ।**
**ନ ଦ୍ୱେଷ୍ଟି ସମ୍ପ୍ରବୃତ୍ତାନି, ନ ନିବୃତ୍ତାନି କାଂକ୍ଷତି ॥**

**ଶ୍ରୀଭଗବାନ୍ କହିଲେ**—ହେ ଅର୍ଜୁନ ! ଯେଉଁ ପୁରୁଷ ସତ୍ତ୍ୱଗୁଣର କାର୍ଯ୍ୟରୂପୀ ପ୍ରକାଶ*, ଏବଂ ରଜୋଗୁଣର କାର୍ଯ୍ୟରୂପୀ ପ୍ରବୃତ୍ତି ତଥା ତମୋଗୁଣର କାର୍ଯ୍ୟରୂପୀ ମୋହ☬ ପ୍ରବୃତ୍ତ ହେଲେ

---

ପଞ୍ଚ ଜ୍ଞାନେନ୍ଦ୍ରିୟର ବିଷୟ—ଏପରି ୨୩ଟି ତତ୍ତ୍ୱର ପିଣ୍ଡରୂପ ଏହି ସ୍ଥୂଳ ଶରୀରଟି ପ୍ରକୃତିରୁ ଉତ୍ପନ୍ନ ଗୁଣମାନଙ୍କର ହିଁ କାର୍ଯ୍ୟ । ତେଣୁ ଗୁଣତ୍ରୟକୁ ଏହାର ଉତ୍ପତ୍ତିର କାରଣ ବୋଲାଯାଏ ।

* ଚିତ୍ତ ଓ ଇନ୍ଦ୍ରିୟମାନଙ୍କରୁ ଆଳସ୍ୟ ଦୂର ହୋଇ ଯେଉଁ ଏକପ୍ରକାର ଚେତନା ଜାଗିଉଠେ, ତାହାକୁ ପ୍ରକାଶ କହନ୍ତି ।

☬ ନିଦ୍ରା ଓ ଆଳସ୍ୟ ବଢ଼ି ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କରେ ଚେତନା ଶକ୍ତି ଲୟ ହେବାକୁ ମୋହ କହନ୍ତି ।

(ଆସିଗଲେ) ସେଗୁଡ଼ିକୁ ଦ୍ୱେଷ କରନ୍ତି ନାହିଁ, କି ନିବୃତ୍ତ ହେଲେ (ଚାଲିଗଲେ) ସେଗୁଡ଼ିକୁ ଆକାଙ୍‌କ୍ଷା କରନ୍ତି ନାହିଁ,*....॥ ୨୨ ॥

**ଉଦାସୀନ-ବଦାସୀନୋ, ଗୁଣୈର୍‌-ଯୋ ନ ବିଚାଲ୍ୟତେ ।**
**ଗୁଣା ବର୍ତ୍ତନ୍ତ ଇତ୍ୟେବ, ଯୋଽବ-ତିଷ୍ଠତି ନେଙ୍ଗତେ ॥**

ଯେ ସାକ୍ଷୀଙ୍କ ସଦୃଶ ସ୍ଥିତ ରହି ଗୁଣମାନଙ୍କ ଦ୍ୱାରା ବିଚଳିତ ହୁଅନ୍ତି ନାହିଁ ଓ ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବୃତ୍ତΨ ହେଉଛନ୍ତି ଜାଣି ଯେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ଏକୀଭାବରେ ଅବସ୍ଥିତ ହୁଅନ୍ତି ଏବଂ ସେହି ସ୍ଥିତିରୁ କଦାପି ବିଚଳିତ ହୁଅନ୍ତି ନାହିଁ,.......॥ ୨୩ ॥

**ସମ-ଦୁଃଖ-ସୁଖଃ ସ୍ୱସ୍ଥଃ, ସମ-ଲୋଷ୍ଟାଶ୍ମ-କାଞ୍ଚନଃ ।**
**ତୁଲ୍ୟ-ପ୍ରିୟାପ୍ରିୟୋ ଧୀରସ୍‌,-ତୁଲ୍ୟ-ନିନ୍ଦାତ୍ମ-ସଂସ୍ତୁତିଃ ॥**

ଯେ ନିରନ୍ତର ଆତ୍ମଭାବରେ ସ୍ଥିତ, ଯେ ଦୁଃଖ ଓ ସୁଖକୁ ସମାନ ବୋଲି ବୁଝନ୍ତି, ଯେ ମାଟି, ପଥର ଓ ସୁନାକୁ ସମାନ ବୋଲି ମଣନ୍ତି, ଯେ ଜ୍ଞାନୀ, ଯେ ପ୍ରିୟ ଓ ଅପ୍ରିୟକୁ ସମାନ ବୋଲି ଗ୍ରହଣ କରନ୍ତି ଓ ଯେ ନିଜର ନିନ୍ଦା ଓ ସ୍ତୁତିକୁ ସମାନ ବୋଲି ବୁଝନ୍ତି,..... ॥ ୨୪ ॥

---

* ତ୍ରିଗୁଣାତୀତ ପୁରୁଷଙ୍କ ଚିତ୍ତରେ ତ୍ରିଗୁଣର କାର୍ଯ୍ୟରୂପ ପ୍ରକାଶ, ପ୍ରବୃତ୍ତି ଓ ମୋହ ପ୍ରକଟିତ ହେଉ ବା ନ ହେଉ, ତାଙ୍କ ଠାରେ କେବେ ବି ରାଗ-ଦ୍ୱେଷ ଇତ୍ୟାଦି ବିକାର ଜାତ ହୁଏନା । ଏହା ଗୁଣାତୀତ ପୁରୁଷଙ୍କର ପ୍ରଧାନ ଲକ୍ଷଣ ।

Ψ ତ୍ରିଗୁଣମୟୀ ମାୟାରୁ ଉତ୍ପନ୍ନ ଅନ୍ତଃକରଣ ସହିତ ଇନ୍ଦ୍ରିୟମାନେ ନିଜ ନିଜ ବିଷୟରେ ବିଚରଣ କରିବାକୁ 'ଗୁଣମାନେ ଗୁଣମାନଙ୍କରେ ପ୍ରବୃତ୍ତ ବା ଆବର୍ତ୍ତିତ ହୁଅନ୍ତି' ବୋଲି ବୋଲାଯାଏ ।

**ମାନାପ-ମାନୟୋସ୍‌-ତୁଲ୍ୟସ୍‌,-ତୁଲ୍ୟୋ ମିତ୍ରାରି-ପକ୍ଷୟୋଃ ।**
**ସର୍ବାରମ୍ଭ-ପରିତ୍ୟାଗୀ, ଗୁଣାତୀତଃ ସ ଉଚ୍ୟତେ ॥**

ଯେ ମାନ ଓ ଅପମାନରେ ସମ, ମିତ୍ର ଓ ଶତ୍ରୁ ପକ୍ଷରେ ବି ସମ ଏବଂ ସମସ୍ତ କର୍ମରେ କର୍ତ୍ତାପଣ-ଅଭିମାନରୁ ରହିତ, ସେହି ପୁରୁଷ ଗୁଣାତୀତ ବୋଲି କଥିତ ହୁଅନ୍ତି ॥ ୨୫ ॥

**ମାଂ ଚ ୟୋଽବ୍ୟଭିଚାରେଣ, ଭକ୍ତି-ୟୋଗେନ ସେବତେ ।**
**ସ ଗୁଣାନ୍‌ ସମତୀତ୍ୟୈତାନ୍‌, ବ୍ରହ୍ମ-ଭୂୟାୟ କଳ୍ପତେ ॥**

ଯେଉଁ ପୁରୁଷ ଅବ୍ୟଭିଚାରୀ ଭକ୍ତିଯୋଗଦ୍ୱାରା* ମୋତେ ନିରନ୍ତର ଭଜନ କରନ୍ତି, ସେ ବି ଏହି ତିନି ଗୁଣକୁ ସମ୍ପୂର୍ଣ୍ଣରୂପେ ଅତିକ୍ରମ କରି ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ ପ୍ରାପ୍ତ ହେବା ନିମନ୍ତେ ଯୋଗ୍ୟ ହୋଇଯାଆନ୍ତି ॥ ୨୬ ॥

**ବ୍ରହ୍ମଣୋ ହି ପ୍ରତିଷ୍ଠାହ,-ମମୃତସ୍ୟା-ବ୍ୟୟସ୍ୟ ଚ ।**
**ଶାଶ୍ୱତସ୍ୟ ଚ ଧର୍ମସ୍ୟ, ସୁଖସ୍ୟୈ-କାନ୍ତିକସ୍ୟ ଚ ॥**

କାରଣ ମୁଁ ସେହି ଅବିନାଶୀ ପରବ୍ରହ୍ମଙ୍କର ଓ ଅମୃତର ତଥା ନିତ୍ୟଧର୍ମର ଓ ଅଖଣ୍ଡ ଏକରସ ଆନନ୍ଦର ଆଶ୍ରୟ ଅଟେ ॥ ୨୭ ॥

*ଓଁ ତତ୍‌-ସଦିତି, ଶ୍ରୀମଦ୍‌-ଭଗବଦ୍‌-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ୟୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ଗୁଣ-ତ୍ରୟ-ବିଭାଗ-ୟୋଗୋ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥ ୧୪ ॥*



* ୧୩ଶ ଅଧ୍ୟାୟ ୧୦ମ ଶ୍ଳୋକର ପାଦଟୀକା ଦେଖନ୍ତୁ ।

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ପଞ୍ଚଦଶୋଽଧ୍ୟାୟଃ

ଶ୍ରୀଭଗବାନୁବାଚ

**ଊର୍ଦ୍ଧ୍ୱ-ମୂଲ-ମଧଃଶାଖ,-ମଶ୍ୱତ୍ଥଂ ପ୍ରାହୁ-ରବ୍ୟୟମ୍ ।**
**ଛନ୍ଦାଂସି ଯସ୍ୟ ପର୍ଣ୍ଣାନି, ଯସ୍ତଂ ବେଦ ସ ବେଦବିତ୍ ॥**

ଶ୍ରୀଭଗବାନ୍ କହିଲେ—ଆଦିପୁରୁଷ ପରମେଶ୍ୱର ଯାହାର ମୂଳ* ଓ ବ୍ରହ୍ମା ଯାହାର ପ୍ରଧାନଶାଖା☬, ଯେଉଁ ସଂସାରରୂପକ ଅଶ୍ୱତ୍ଥବୃକ୍ଷକୁ ଅବିନାଶୀ✦ ବୋଲି ତଥା ବେଦକୁ ଯାହାର ପତ୍ର§ ବୋଲି କହନ୍ତି, ସେହି ସଂସାରରୂପକ ବୃକ୍ଷକୁ ଯେଉଁ ପୁରୁଷ ମୂଳ-

---

* ଆଦିପୁରୁଷ ନାରାୟଣ ବାସୁଦେବ ଭଗବାନ୍ ହିଁ ନିତ୍ୟ, ଅନନ୍ତ, ସମସ୍ତଙ୍କର ଆଧାର ଓ ସମସ୍ତଙ୍କ ଉପରେ ନିତ୍ୟଧାମରେ ସଗୁଣରୂପେ ବାସ କରନ୍ତି; ତେଣୁ ତାଙ୍କୁ ଊର୍ଦ୍ଧ୍ୱ ବୋଲାଯାଏ । ଏହି ମାୟାଧିପତି ସର୍ବଶକ୍ତିମାନ୍ ପରମେଶ୍ୱର ହିଁ ଏହି ସଂସାରବୃକ୍ଷର କାରଣସ୍ୱରୂପ । ତେଣୁ ଏହି ସଂସାରବୃକ୍ଷକୁ ଊର୍ଦ୍ଧ୍ୱମୂଳସମ୍ପନ୍ନ ବୋଲାଯାଇଛି ।

☬ ବ୍ରହ୍ମା ଆଦିପୁରୁଷଙ୍କ ଠାରୁ ଉତ୍ପନ୍ନ; ତେଣୁ ତାଙ୍କ ବ୍ରହ୍ମଲୋକ ଆଦିପୁରୁଷଙ୍କ ନିତ୍ୟଧାମର ତଳେ । ତେଣୁ ବ୍ରହ୍ମାଙ୍କୁ ପରମେଶ୍ୱରଙ୍କ ଠାରୁ 'ଅଧଃସ୍ଥ' ବୋଲାଯାଇଛି । ବ୍ରହ୍ମା ହିଁ ଏହି ଜଗତର ବିସ୍ତାରକର୍ତ୍ତା ହୋଇଥିବାରୁ ଏହାର ପ୍ରଧାନ ଶାଖା ଅଟନ୍ତି । ତେଣୁ ଏହି ସଂସାରବୃକ୍ଷକୁ ଅଧଃଶାଖାସମ୍ପନ୍ନ ବୋଲାଯାଇଛି ।

✦ ଏହି ବୃକ୍ଷର ମୂଳକାରଣ ପରମାତ୍ମା ଅବିନାଶୀ ଏବଂ ଅନାଦିକାଳରୁ ଏହାର ପରମ୍ପରା ଚାଲିଆସିଛି; ତେଣୁ ସଂସାରବୃକ୍ଷକୁ ଅବିନାଶୀ ବୋଲାଯାଏ ।

§ ପତ୍ର ବୃକ୍ଷର ଶାଖାରୁ ବାହାରେ ଓ ବୃକ୍ଷକୁ ରକ୍ଷା କରେ ତଥା ବଢ଼ାଏ । ସଂସାରବୃକ୍ଷର ମୁଖ୍ୟ ଶାଖାରୂପ ବ୍ରହ୍ମାଙ୍କ ଠାରୁ ବେଦ ଉତ୍ପନ୍ନ ହୁଅନ୍ତି ଓ ବେଦବିହିତ କର୍ମମାନଙ୍କ ଦ୍ୱାରା ସଂସାରର ରକ୍ଷା ଓ ବୃଦ୍ଧି ହୁଏ । ତେଣୁ ବେଦମାନଙ୍କୁ ଏହି ବୃକ୍ଷର ପତ୍ର କୁହାଯାଇଛି ।

ସହିତ ତତ୍ତ୍ୱତଃ ଜାଣନ୍ତି*, ସେ ବେଦର ତାତ୍ପର୍ଯ୍ୟ ଜାଣନ୍ତି ॥ ୧ ॥

**ଅଧଶ୍-ଚୋର୍ଦ୍ଧ୍ୱଂ ପ୍ରସୃତାସ୍-ତସ୍ୟ ଶାଖା**
**ଗୁଣ-ପ୍ରବୃଦ୍ଧା ବିଷୟ-ପ୍ରବାଲାଃ ।**
**ଅଧଶ୍-ଚ ମୂଲା-ନ୍ୟନୁ-ସନ୍ତତାନି**
**କର୍ମାନୁ-ବନ୍ଧୀନି ମନୁଷ୍ୟ-ଲୋକେ ॥**

ତ୍ରିଗୁଣରୂପୀ ଜଳଦ୍ୱାରା ବୃଦ୍ଧିପ୍ରାପ୍ତ ହୋଇଥିବା ଏବଂ ବିଷୟଭୋଗରୂପୀ କୋମଳପତ୍ର ଥିବା ସେହି ସଂସାରବୃକ୍ଷର ଦେବ, ମନୁଷ୍ୟ ଓ ତିର୍ଯ୍ୟକ୍ ଆଦି ଯୋନିରୂପୀ ଶାଖାମାନ☫ ତଳ, ଉପର ଆଦି ସକଳ ଦିଗରେ ପ୍ରସାରିତ ହୋଇଛି ତଥା ମନୁଷ୍ୟଯୋନିରେ✦ କର୍ମାନୁସାରେ ବନ୍ଧନ କରୁଥିବା ଅହଂତ୍ୱ, ମମତ୍ୱ ଓ ବାସନାରୂପୀ ମୂଳମାନେ ମଧ୍ୟ ତଳ, ଉପର ଆଦି ସର୍ବଲୋକରେ ବ୍ୟାପ୍ତ ହୋଇଛନ୍ତି ॥ ୨ ॥

**ନ ରୂପ-ମସ୍ୟେହ ତଥୋପ-ଲଭ୍ୟତେ**
**ନାନ୍ତୋ ନ ଚାଦିର୍-ନ ଚ ସଂପ୍ରତିଷ୍ଠା ।**
**ଅଶ୍ୱତ୍ଥ-ମେନଂ ସୁବିରୂଢ-ମୂଲ-**
**ମସଙ୍ଗ-ଶସ୍ତ୍ରେଣ ଦୃଢେନ ଛିତ୍ତ୍ୱା ॥**

---

* ସଂସାର କ୍ଷଣଭଙ୍ଗୁର, ଅନିତ୍ୟ ଓ ଦୁଃଖର କାରଣ—ଏପରି ବୁଝି ସଂସାର ପ୍ରତି ଆସକ୍ତି ଛାଡ଼ି କେବଳ ପରମେଶ୍ୱରଙ୍କୁ ହିଁ ଅନନ୍ୟ ଭକ୍ତିର ସହିତ ନିତ୍ୟ ଚିନ୍ତନ କରିବା ଉଚିତ । ଏହା ବୁଝିବା ହିଁ ବେଦର ତାତ୍ପର୍ଯ୍ୟ ବୁଝିବା ।

☫ ମୂଳ ଶାଖା ବ୍ରହ୍ମାଙ୍କଠାରୁ ଦେବତା, ମନୁଷ୍ୟ ଓ ତିର୍ଯ୍ୟକାଦି ଯୋନିର ଉତ୍ପତ୍ତି ଓ ବିସ୍ତାର ହୁଏ; ତେଣୁ ସେସବୁକୁ ଶାଖା ବୋଲାଯାଇଛି ।

✦ ମନୁଷ୍ୟଯୋନିରେ ହିଁ ନବୀନ କର୍ମ କରିବାର ଅଧିକାର ଅଛି ଏବଂ ଅହଂତ୍ୱ ମମତ୍ୱ ରଖି କର୍ମ କଲେ, ତାହା ବନ୍ଧନର କାରଣ ହୋଇଯାଏ ।

ଏହି ସଂସାରବୃକ୍ଷର ସ୍ୱରୂପ ଯେପରି କୁହାଯାଇଛି, ଏଠାରେ ବିଚାର କରିବା ସମୟରେ ସେପରି ଦେଖିବାକୁ ମିଳେ ନାହିଁ*; କାରଣ, ଏହାର ଆଦି ନାହିଁ, କି ଅନ୍ତΨ ନାହିଁ, ତଥା ଏହାର ଭଲରୂପେ ସ୍ଥିତି✦ ବି ନାହିଁ। ତେଣୁ ଏହି ଅହଂତ୍ୱ, ମମତ୍ୱ ଓ ବାସନାରୂପୀ ଅତି ଦୃଢ଼ମୂଳବିଶିଷ୍ଟ ସଂସାରରୂପୀ ଅଶ୍ୱତ୍ଥବୃକ୍ଷକୁ ଦୃଢ଼ ବୈରାଗ୍ୟରୂପକ ଶସ୍ତ୍ରଦ୍ୱାରା§ ଛେଦନ କରି,$......॥ ୩ ॥

**ତତଃ ପଦଂ ତତ୍ ପରି-ମାର୍ଗିତବ୍ୟଂ**
**ଯସ୍ମିନ୍ ଗତା ନ ନିବର୍ତ୍ତନ୍ତି ଭୂୟଃ।**
**ତମେବ ଚାଦ୍ୟଂ ପୁରୁଷଂ ପ୍ରପଦ୍ୟେ**
**ୟତଃ ପ୍ରବୃତ୍ତିଃ ପ୍ରସୃତା ପୁରାଣୀ ॥**

ତା'ପରେ ଯାହାଙ୍କୁ ପାଇଲେ ପୁରୁଷମାନେ ପୁଣି ସଂସାରକୁ ଫେରି ଆସନ୍ତି ନାହିଁ, ସେହି ପରମପଦରୂପକ ପରମେଶ୍ୱରଙ୍କୁ ଭଲଭାବରେ ଖୋଜିବା ଉଚିତ ଏବଂ ଯେଉଁ ପରମେଶ୍ୱରଙ୍କ ଠାରୁ ଏହି ପୁରାତନ ସଂସାରବୃକ୍ଷର ପ୍ରବୃତ୍ତି ବିସ୍ତାରିତ ହୋଇଛି,

---

* ଏହି ସଂସାରର ସ୍ୱରୂପ ଶାସ୍ତ୍ରରେ ଯେପରି ବର୍ଣ୍ଣିତ ହୋଇଛି ଏବଂ ଯେପରି ଦେଖିବାକୁ ଓ ଶୁଣିବାକୁ ମିଳୁଛି, ତତ୍ତ୍ୱଜ୍ଞାନ ହୋଇଗଲେ, ତାହା ଆଉ ସେପରି ଦୃଷ୍ଟିଗୋଚର ହେଉ ନାହିଁ; ସ୍ୱପ୍ନର ସୃଷ୍ଟିପରି ଉଭେଇଯାଉଛି।

Ψ ଏହା କେବେଠାରୁ ଆରମ୍ଭ ହେଲାଣି ଏବଂ କେବେ ଶେଷ ହେବ, ତାହା ଜଣା ନାହିଁ।

✦ ପ୍ରକୃତପକ୍ଷରେ ଏହା କ୍ଷଣଭଙ୍ଗୁର ଓ ବିନାଶଶୀଳ।

§ ବ୍ରହ୍ମଲୋକପର୍ଯ୍ୟନ୍ତ ସବୁ ଭୋଗ କ୍ଷଣିକ ଜାଣି ବିଷୟଭୋଗ ପ୍ରତି ପ୍ରୀତି ଓ ଆସକ୍ତି ତ୍ୟାଗ କରିଦେବା ହିଁ ବୈରାଗ୍ୟରୂପକ ଶସ୍ତ୍ର ଧରିବା।

$ ସକଳପ୍ରକାର ସଂସାରଚିନ୍ତା, ଅହଂତ୍ୱ-ମମତ୍ୱ ଓ କାମନା-ବାସନା ତ୍ୟାଗ କରିଦେବା ହିଁ ସଂସାରବୃକ୍ଷକୁ ଛେଦନ କରିବା।

'ମୁଁ ସେହି ଆଦିପୁରୁଷ ନାରାୟଣଙ୍କ ଶରଣ ନେଉଛି' ବୋଲି ଦୃଢ଼ ନିଶ୍ଚୟ କରି ସେହି ପରମେଶ୍ୱରଙ୍କର ହିଁ ମନନ ଓ ନିଦିଧ୍ୟାସନ କରିବା ଉଚିତ ॥ ୪ ॥

**ନିର୍ମାନ-ମୋହା ଜିତ-ସଙ୍ଗ-ଦୋଷା**
**ଅଧ୍ୟାତ୍ମ-ନିତ୍ୟା ବିନିବୃତ୍ତ-କାମାଃ ।**
**ଦ୍ୱନ୍ଦ୍ୱୈର୍-ବିମୁକ୍ତାଃ ସୁଖ-ଦୁଃଖ-ସଂଜ୍ଞୈର୍-**
**ଗଚ୍ଛନ୍ତ୍ୟମୂଢ଼ାଃ ପଦ-ମବ୍ୟୟଂ ତତ୍ ॥**

ଯେଉଁମାନଙ୍କର ମାନ ଓ ମୋହ ନଷ୍ଟ ହୋଇଯାଇଛି, ଯେଉଁମାନେ ଆସକ୍ତିରୂପକ ଦୋଷକୁ ଜୟ କରିଛନ୍ତି, ଯେଉଁମାନେ ପରମାତ୍ମାଙ୍କ ସ୍ୱରୂପରେ ନିତ୍ୟସ୍ଥିତ ଓ ଯେଉଁମାନଙ୍କର ସମସ୍ତ କାମନା ସମ୍ପୂର୍ଣ୍ଣରୂପେ ନଷ୍ଟ ହୋଇଯାଇଛି, ସୁଖ-ଦୁଃଖ ନାମକ ଦ୍ୱନ୍ଦ୍ୱମାନଙ୍କରୁ ବିମୁକ୍ତ ସେହି ଜ୍ଞାନୀମାନେ ସେହି ଅବିନାଶୀ ପରମପଦ ପ୍ରାପ୍ତ ହୁଅନ୍ତି ॥ ୫ ॥

**ନ ତଦ୍-ଭାସୟତେ ସୂର୍ଯ୍ୟୋ, ନ ଶଶାଙ୍କୋ ନ ପାବକଃ ।**
**ଯଦ୍-ଗତ୍ୱା ନ ନିବର୍ତ୍ତନ୍ତେ, ତଦ୍ଧାମ ପରମଂ ମମ ॥**

ସେହି ସ୍ୱୟଂପ୍ରକାଶ ପରମପଦକୁ ସୂର୍ଯ୍ୟ ପ୍ରକାଶିତ କରିପାରେ ନାହିଁ, କି ନା ଚନ୍ଦ୍ର, ନା ଅଗ୍ନି କେହି ପ୍ରକାଶିତ କରିପାରନ୍ତି ନାହିଁ। ସେହି ଯେଉଁ ପରମପଦ ପ୍ରାପ୍ତ ହେଲେ ମନୁଷ୍ୟକୁ ଆଉ ସଂସାରକୁ ଫେରି ଆସିବାକୁ ପଡ଼େ ନାହିଁ, ତାହା ହିଁ ମୋର ପରମଧାମ* ॥ ୬ ॥

---

* ଅଷ୍ଟମ ଅଧ୍ୟାୟ ୨୧ଶ ଶ୍ଳୋକ ଦ୍ରଷ୍ଟବ୍ୟ।

**ମମୈବାଂଶୋ ଜୀବ-ଲୋକେ, ଜୀବ-ଭୂତଃ ସନାତନଃ ।**
**ମନଃଷଷ୍ଠା-ନୀନ୍ଦ୍ରିୟାଣି, ପ୍ରକୃତି-ସ୍ଥାନି କର୍ଷତି ॥**

ଏହି ଦେହରେ ରହିଥିବା ସନାତନ ଜୀବାତ୍ମା ମୋର ହିଁ ଅଂଶ* ଅଟେ ଏବଂ ସେ ହିଁ ଏହି ପ୍ରକୃତିରେ ସ୍ଥିତ ମନ ଓ ପାଞ୍ଚଟି ଇନ୍ଦ୍ରିୟଙ୍କୁ ଆକର୍ଷଣ କରେ ॥ ୭ ॥

**ଶରୀରଂ ଯଦ୍-ବାପ୍ନୋତି, ଯଚ୍ଛା-ପ୍ୟୁତ୍କ୍ରାମ-ତୀଶ୍ୱରଃ ।**
**ଗୃହୀତ୍ୱୈତାନି ସଂଯାତି, ବାୟୁର୍ଗନ୍ଧା-ନିବାଶୟାତ୍ ॥**

ବାୟୁ ଯେପରି ଗନ୍ଧର ସ୍ଥାନରୁ ଗନ୍ଧକୁ ବୋହିନିଏ, ଦେହାଦିର ସ୍ୱାମୀ ଜୀବାତ୍ମା ମଧ୍ୟ ସେହିପରି ଯେଉଁ ଶରୀର ତ୍ୟାଗ କରି ଚାଲିଯାଏ, ସେଥିରୁ ମନ ସହିତ ଏହି ଇନ୍ଦ୍ରିୟମାନଙ୍କୁ ଗ୍ରହଣ କରି ଯେଉଁ ଶରୀର ପ୍ରାପ୍ତ ହୁଏ, ସେଥିରେ ପ୍ରବେଶ କରେ ॥ ୮ ॥

**ଶ୍ରୋତ୍ରଂ ଚକ୍ଷୁଃ ସ୍ପର୍ଶନଂ ଚ, ରସନଂ ଘ୍ରାଣ-ମେବ ଚ ।**
**ଅଧିଷ୍ଠାୟ ମନଶ୍-ଚାୟଂ, ବିଷୟା-ନୁପସେବତେ ॥**

ଏହି ଜୀବାତ୍ମା କର୍ଣ୍ଣ, ଚକ୍ଷୁ ଓ ଚର୍ମକୁ ତଥା ଜିହ୍ୱା, ନାସା ଓ ମନକୁ ଆଶ୍ରୟ କରି ଅର୍ଥାତ୍ ଏସବୁର ସାହାଯ୍ୟରେ ହିଁ ବିଷୟମାନଙ୍କୁ ସେବନ କରିଥାଏ ॥ ୯ ॥

---

* ଆକାଶ ବିଭାଗରହିତ ହୋଇ ବି ଭିନ୍ନ ଭିନ୍ନ ଘଟରେ ଭିନ୍ନ ଭିନ୍ନ ହୋଇ ରହିଥିବା ପରି ଲାଗେ। ଠିକ୍ ସେହିପରି ପରମାତ୍ମା ସର୍ବଭୂତରେ ଏକଭାବରେ ରହିଥିଲେ ମଧ୍ୟ ଭିନ୍ନ ଭିନ୍ନ ଭୂତରେ ଭିନ୍ନ ଭିନ୍ନ ହୋଇ ରହିଥିବା ପରି ଲାଗନ୍ତି। ତେଣୁ ଜୀବାତ୍ମାକୁ ଭଗବାନ ନିଜର ସନାତନ ଅଂଶ ବୋଲି କହିଛନ୍ତି।

**ଉତ୍କ୍ରାମନ୍ତଂ ସ୍ଥିତଂ ବାପି, ଭୁଞ୍ଜାନଂ ବା ଗୁଣାନ୍ୱିତମ୍ ।**
**ବିମୂଢା ନାନୁ-ପଶ୍ୟନ୍ତି, ପଶ୍ୟନ୍ତି ଜ୍ଞାନ-ଚକ୍ଷୁଷଃ ॥**

ଶରୀର ଛାଡ଼ି ଚାଲିଯାଉଥିବା ଅଥବା ଶରୀରରେ ରହିଥିବା ଅଥବା ବିଷୟମାନଙ୍କୁ ଭୋଗ କରୁଥିବା ତଥା ତିନିଗୁଣରେ ଯୁକ୍ତ ହୋଇଥିବା ନିଜର ପ୍ରକୃତ ସ୍ୱରୂପକୁ ଅଜ୍ଞାନୀମାନେ ଜାଣନ୍ତି ନାହିଁ; କେବଳ ଜ୍ଞାନଚକ୍ଷୁ ଥିବା ବିବେକଶୀଳ ଜ୍ଞାନୀମାନେ ହିଁ ତାହା ତତ୍ତ୍ୱତଃ ଜାଣନ୍ତି ॥ ୧୦ ॥

**ଯତନ୍ତୋ ଯୋଗିନଶ୍-ଚୈନଂ, ପଶ୍ୟନ୍ତ୍ୟାତ୍ମ-ନ୍ୟବସ୍ଥିତମ୍ ।**
**ଯତନ୍ତୋଽପ୍ୟ-କୃତାତ୍ମାନୋ, ନୈନଂ ପଶ୍ୟନ୍-ତ୍ୟଚେତସଃ ॥**

ଯତ୍ନ କରୁଥିବା ଯୋଗୀମାନେ ମଧ୍ୟ ନିଜ ହୃଦୟସ୍ଥିତ ଏହି ଆତ୍ମାକୁ ତତ୍ତ୍ୱତଃ ଜାଣନ୍ତି । କିନ୍ତୁ ଯେଉଁମାନେ ନିଜ ଅନ୍ତଃକରଣକୁ ଶୁଦ୍ଧ କରି ନାହାନ୍ତି, ସେହି ଅଜ୍ଞାନୀମାନେ ତ ଯତ୍ନ କରି ମଧ୍ୟ ଏହି ଆତ୍ମାକୁ ଜାଣିପାରନ୍ତି ନାହିଁ ॥ ୧୧ ॥

**ଯଦାଦିତ୍ୟ-ଗତଂ ତେଜୋ, ଜଗଦ୍-ଭାସୟତେଽଖିଲମ୍ ।**
**ଯଚ୍ଚନ୍ଦ୍ରମସି ଯଚ୍ଚାଗ୍ନୌ, ତତ୍ତେଜୋ ବିଦ୍ଧି ମାମକମ୍ ॥**

ସୂର୍ଯ୍ୟଙ୍କ ଠାରେ ଥିବା ଯେଉଁ ତେଜ ସମସ୍ତ ଜଗତକୁ ପ୍ରକାଶିତ କରୁଛି ତଥା ଯେଉଁ ତେଜ ଚନ୍ଦ୍ରମାରେ ରହିଛି ଓ ଯାହା ଅଗ୍ନିରେ ରହିଛି, ତାହାକୁ ତୁମେ ମୋର ହିଁ ତେଜ ବୋଲି ଜାଣ ॥ ୧୨ ॥

**ଗାମାବିଶ୍ୟ ଚ ଭୂତାନି, ଧାରୟାମ୍ୟହ-ମୋଜସା ।**
**ପୁଷ୍ଣାମି ଚୌଷଧୀଃ ସର୍ବାଃ, ସୋମୋ ଭୂତ୍ୱା ରସାତ୍ମକଃ ॥**

ଏବଂ ମୁଁ ହିଁ ପୃଥିବୀରେ ପ୍ରବେଶ କରି ନିଜ ଶକ୍ତିଦ୍ୱାରା ସମସ୍ତ ଭୂତପ୍ରାଣୀଙ୍କୁ ଧାରଣ କରେ ଓ ରସସ୍ୱରୂପ ଅର୍ଥାତ୍ ଅମୃତମୟ ଚନ୍ଦ୍ର ହୋଇ ସକଳ ଓଷଧିମାନଙ୍କୁ ଅର୍ଥାତ୍ ବନସ୍ପତିମାନଙ୍କୁ ପୁଷ୍ଟ କରେ ॥ ୧୩ ॥

**ଅହଂ ବୈଶ୍ୱାନରୋ ଭୂତ୍ୱା, ପ୍ରାଣିନାଂ ଦେହ-ମାଶ୍ରିତଃ ।**
**ପ୍ରାଣାପାନ-ସମାୟୁକ୍ତଃ, ପଚାମ୍ୟନ୍ନଂ ଚତୁର୍ବିଧମ୍ ॥**

ସକଳ ପ୍ରାଣୀଙ୍କ ଶରୀରରେ ରହୁଥିବା ମୁଁ ପ୍ରାଣ ଓ ଅପାନଦ୍ୱାରା ସଂଯୁକ୍ତ ବୈଶ୍ୱାନର ଅଗ୍ନିରୂପ ହୋଇ ଚାରିପ୍ରକାର* ଅନ୍ନ ଜୀର୍ଣ୍ଣ କରୁଛି ॥ ୧୪ ॥

**ସର୍ବସ୍ୟ ଚାହଂ ହୃଦି ସଂନିବିଷ୍ଟୋ**
**ମତ୍ତଃ ସ୍ମୃତିର୍-ଜ୍ଞାନ-ମପୋହନଂ ଚ ।**
**ବେଦୈଶ୍-ଚ ସର୍ବୈ-ରହମେବ ବେଦ୍ୟୋ**
**ବେଦାନ୍ତ-କୃଦ୍-ବେଦବିଦେବ ଚାହମ୍ ॥**

ମୁଁ ହିଁ ସବୁ ପ୍ରାଣୀଙ୍କ ହୃଦୟରେ ଅନ୍ତର୍ଯ୍ୟାମୀରୂପରେ ରହିଛି ତଥା ମୋ'ଠାରୁ ହିଁ ସ୍ମୃତି, ଜ୍ଞାନ ଓ ଅପୋହନΨ ଜାତ ହୁଏ ଓ ସବୁ ବେଦଦ୍ୱାରା ଏକମାତ୍ର ମୁଁ ହିଁ ଜାଣିବାର ଯୋଗ୍ୟ✦ ତଥା ମୁଁ ହିଁ ବେଦାନ୍ତକର୍ତ୍ତା ଓ ବେଦଜ୍ଞ ଅଟେ ॥ ୧୫ ॥

---

* ଖାଦ୍ୟ ବା ଅନ୍ନ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ଓ ପେୟ—(ଚୋବେଇ, ଚୁଚୁମି, ଚାଟି ଓ ପିଇ ଖିଆଯାଉଥିବା) ଏପରି ଚାରିପ୍ରକାର ।

Ψ ବିଚାର-ବୁଦ୍ଧି ସାହାଯ୍ୟରେ ମନର ସଂଶୟ-ବିପର୍ଯ୍ୟୟ ନାଶ କରିବାର ନାମ ଅପୋହନ ।

✦ ସକଳ ବେଦର ତାତ୍ପର୍ଯ୍ୟ ହେଉଛି ପରମେଶ୍ୱରଙ୍କୁ ଜାଣିବା । ତେଣୁ ପରମେଶ୍ୱର ହିଁ ସର୍ବବେଦର ଏକମାତ୍ର ଜାଣିବାଯୋଗ୍ୟ ତତ୍ତ୍ୱ ।

**ଦ୍ୱାବିମୌ ପୁରୁଷୌ ଲୋକେ, କ୍ଷରଶ୍-ଚାକ୍ଷର ଏବ ଚ ।**
**କ୍ଷରଃ ସର୍ବାଣି ଭୂତାନି, କୂଟସ୍ଥୋଽକ୍ଷର ଉଚ୍ୟତେ ॥**

ଏହି ସଂସାରରେ ନାଶବାନ୍ ଓ ଅବିନାଶୀ*—ଏପରି ଦୁଇପ୍ରକାର ପୁରୁଷ ଅଛନ୍ତି । ଏମାନଙ୍କ ମଧ୍ୟରୁ ସକଳ ପ୍ରାଣୀମାନଙ୍କର ଶରୀର ନାଶବାନ୍ ଓ ଜୀବାତ୍ମା ଅବିନାଶୀ ବୋଲି କୁହାଯାଏ ॥ ୧୬॥

**ଉତ୍ତମଃ ପୁରୁଷସ୍-ତ୍ୱନ୍ୟଃ, ପରମାତ୍ମେ-ତ୍ୟୁଦାହୃତଃ ।**
**ଯୋ ଲୋକ-ତ୍ରୟ-ମାବିଶ୍ୟ, ବିଭର୍-ତ୍ୟବ୍ୟୟ ଈଶ୍ୱରଃ ॥**

ଏହି ଦୁଇ ପୁରୁଷଙ୍କ ଠାରୁ ଉତ୍ତମ ପୁରୁଷ ତ ଅନ୍ୟ ଜଣେ ହିଁ ଅଟନ୍ତି, ଯେ କି ତିନି ଲୋକରେ ପ୍ରବେଶ କରି ସମସ୍ତଙ୍କର ଧାରଣପୋଷଣ କରନ୍ତି ଏବଂ ଅବିନାଶୀ ପରମେଶ୍ୱର ଓ ପରମାତ୍ମା ବୋଲି କଥିତ ହୁଅନ୍ତି ॥ ୧୭ ॥

**ଯସ୍ମାତ୍-କ୍ଷର-ମତୀତୋଽହ,-ମକ୍ଷରାଦପି ଚୋତ୍ତମଃ ।**
**ଅତୋଽସ୍ମି ଲୋକେ ବେଦେ ଚ, ପ୍ରଥିତଃ ପୁରୁଷୋତ୍ତମଃ ॥**

ଯେହେତୁ ମୁଁ ନାଶବାନ୍ ଜଡ଼ବର୍ଗକ୍ଷେତ୍ରଠାରୁ ସର୍ବଥା ଅତୀତ ଏବଂ ଅବିନାଶୀ ଜୀବାତ୍ମାଠାରୁ ମଧ୍ୟ ଉତ୍ତମ, ତେଣୁ ଲୋକରେ ଓ ବେଦରେ ମଧ୍ୟ ମୁଁ ପୁରୁଷୋତ୍ତମ ନାମରେ ପ୍ରସିଦ୍ଧ ॥ ୧୮ ॥

**ଯୋ ମାମେବମ-ସମ୍ମୂଢୋ, ଜାନାତି ପୁରୁଷୋତ୍ତମମ୍ ।**
**ସ ସର୍ବ-ବିଦ୍-ଭଜତି ମାଂ, ସର୍ବ-ଭାବେନ ଭାରତ ॥**

* ସପ୍ତମ ଅଧ୍ୟାୟର ୪ର୍ଥ-୫ମ ଶ୍ଳୋକରେ ଯେଉଁ ପରା ଓ ଅପରା ପ୍ରକୃତି ବିଷୟ ଏବଂ ତ୍ରୟୋଦଶ ଅଧ୍ୟାୟରେ ଯେଉଁ କ୍ଷେତ୍ର ଓ କ୍ଷେତ୍ରଜ୍ଞ ବିଷୟ କୁହାଯାଇଛି, ସେହି ଦୁଇଟିକୁ ହିଁ ଏଠାରେ କ୍ଷର ଓ ଅକ୍ଷର କୁହାଯାଇଛି ।

ହେ ଭାରତ ! ଯେଉଁ ଜ୍ଞାନୀପୁରୁଷ ମୋତେ ଏହିପରି ତତ୍ତ୍ୱତଃ ପୁରୁଷୋତ୍ତମ ବୋଲି ଜାଣନ୍ତି, ସେହି ସର୍ବଜ୍ଞ ପୁରୁଷ ନିରନ୍ତର ମୋତେ ଅର୍ଥାତ୍ ବାସୁଦେବପରମେଶ୍ୱରଙ୍କୁ ହିଁ ସକଳ-ଭାବରେ ଭଜନ୍ତି ॥ ୧୯ ॥

**ଇତି ଗୁହ୍ୟ-ତମଂ ଶାସ୍ତ୍ର,-ମିଦ-ମୁକ୍ତଂ ମୟାନଘ ।**
**ଏତଦ୍-ବୁଦ୍ଧ୍ୱା ବୁଦ୍ଧିମାନ୍-ସ୍ୟାତ୍, କୃତ-କୃତ୍ୟଶ୍-ଚ ଭାରତ ॥**

ହେ ନିଷ୍ପାପ ଅର୍ଜୁନ ! ଏପରିଭାବରେ ଏହି ଅତି ରହସ୍ୟଯୁକ୍ତ ଗୋପନୀୟ ଶାସ୍ତ୍ର ମୋ ଦ୍ୱାରା କୁହାଗଲା । ଏହାକୁ ତତ୍ତ୍ୱତଃ ଜାଣି ମନୁଷ୍ୟ ଜ୍ଞାନବାନ୍ ଓ କୃତାର୍ଥ ହୋଇଯାଏ ॥ ୨୦ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ପୁରୁଷୋତ୍ତମ-ଯୋଗୋ ନାମ ପଞ୍ଚଦଶୋଽଧ୍ୟାୟଃ ॥ ୧୫ ॥*



॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ଷୋଡଶୋଽଧ୍ୟାୟଃ

ଶ୍ରୀଭଗବାନୁବାଚ

**ଅଭୟଂ ସତ୍ତ୍ୱ-ସଂଶୁଦ୍ଧିର୍,-ଜ୍ଞାନ-ୟୋଗ-ବ୍ୟବସ୍ଥିତିଃ ।**
**ଦାନଂ ଦମଶ୍-ଚ ୟଜ୍ଞଶ୍-ଚ, ସ୍ୱାଧ୍ୟାୟସ୍-ତପ ଆର୍ଜବମ୍ ॥**

ଶ୍ରୀଭଗବାନ୍ କହିଲେ—ଭୟର ସର୍ବଥା ଅଭାବ, ଅନ୍ତଃକରଣର ପୂର୍ଣ୍ଣନିର୍ମଳତା, ତତ୍ତ୍ୱଜ୍ଞାନ ପାଇଁ ଧ୍ୟାନଯୋଗରେ ନିରନ୍ତର ଦୃଢ଼ସ୍ଥିତି* ଓ ସାତ୍ତ୍ୱିକ ଦାନ☫, ଇନ୍ଦ୍ରିୟଦମନ, ଭଗବାନ୍, ଦେବତା ଓ ଗୁରୁଜନମାନଙ୍କର ପୂଜା ତଥା ଅଗ୍ନିହୋତ୍ର ଆଦି ଉତ୍ତମ କର୍ମ ଆଚରଣ ଏବଂ ବେଦ-ଶାସ୍ତ୍ରାଦି ପଠନ-ପାଠନ ତଥା ଭଗବାନଙ୍କର ନାମ ଓ ଗୁଣ କୀର୍ତ୍ତନ, ସ୍ୱଧର୍ମ-ପାଳନପାଇଁ କଷ୍ଟସହନ ଏବଂ ଶରୀର ତଥା ଇନ୍ଦ୍ରିୟମାନଙ୍କ ସହିତ ଅନ୍ତଃକରଣର ସରଳତା,.....॥ ୧ ॥

**ଅହିଂସା ସତ୍ୟ-ମକ୍ରୋଧସ୍,-ତ୍ୟାଗଃ ଶାନ୍ତି-ରପୈଶୁନମ୍ ।**
**ଦୟା ଭୂତେଷ୍ୱ-ଲୋଲୁପ୍ତ୍ୱଂ, ମାର୍ଦବଂ ହ୍ରୀ-ରଚାପଲମ୍ ॥**

କାୟମନୋବାକ୍ୟରେ କାହାରିକୁ କୌଣସିପ୍ରକାର କଷ୍ଟ ନ

---

* ପରମାତ୍ମାଙ୍କ ସ୍ୱରୂପ ତତ୍ତ୍ୱତଃ ଜାଣିବା ନିମନ୍ତେ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପକୁ ଏକାଗ୍ରଚିତ୍ତରେ ନିତ୍ୟନିରନ୍ତର ଧ୍ୟାନ କରି ରହିବାକୁ ଏଥିରେ ଦୃଢ଼ସ୍ଥିତି ବୋଲାଯାଏ ।

☫ ୧୭ଶ ଅଧ୍ୟାୟର ୨୦ତମ ଶ୍ଲୋକ ଦେଖନ୍ତୁ ।

ଦେବା, ଯଥାର୍ଥ ଓ ପ୍ରିୟ ବଚନ* କହିବା, ନିଜର ଅପକାର କରୁଥିବା ଲୋକ ପ୍ରତି ମଧ୍ୟ କ୍ରୋଧ ନ କରିବା, କର୍ମରେ କର୍ତ୍ତୃତ୍ୱ-ଅଭିମାନ ତ୍ୟାଗ, ଅନ୍ତଃକରଣର ଉପରତି ଅର୍ଥାତ୍ ଚିତ୍ତଚଞ୍ଚଳତାର ଅଭାବ, କାହାରି ମଧ୍ୟ ନିନ୍ଦା ଆଦି ନ କରିବା, ସବୁ ପ୍ରାଣୀଙ୍କ ପ୍ରତି ଅହେତୁକ ଦୟା, ଇନ୍ଦ୍ରିୟମାନଙ୍କର ବିଷୟ-ମାନଙ୍କ ସହିତ ସଂଯୋଗ ହେଲେ ମଧ୍ୟ ସେଥିରେ ଆସକ୍ତି ନ ହେବା, କୋମଳତା, ଲୋକାଗ୍ରହ ଓ ଶାସ୍ତ୍ରବିରୁଦ୍ଧ ଆଚରଣରେ ଲଜ୍ଜା ଏବଂ ବ୍ୟର୍ଥଚେଷ୍ଟାର ଅଭାବ,.....॥ ୨ ॥

**ତେଜଃ କ୍ଷମା ଧୃତିଃ ଶୌଚ,-ମଦ୍ରୋହୋ ନାତିମାନିତା ।**
**ଭବନ୍ତି ସମ୍ପଦଂ ଦୈବୀ,-ମଭି-ଜାତସ୍ୟ ଭାରତ ॥**

ତେଜ$\Psi$, କ୍ଷମା, ଧୈର୍ଯ୍ୟ, ବାହ୍ୟ ଶୁଦ୍ଧି ଏବଂ କାହାରି ଠାରେ ବି ଶତ୍ରୁଭାବ ନ ହେବା ଓ ନିଜଠାରେ ପୂଜ୍ୟତା-ଅଭିମାନର ଅଭାବ—ହେ ଅର୍ଜୁନ ! ଏସବୁ ହେଉଛି ଦୈବୀସମ୍ପଦ ନେଇ ଜନ୍ମ ହୋଇଥିବା ପୁରୁଷଙ୍କ ଲକ୍ଷଣ ॥ ୩ ॥

**ଦମ୍ଭୋ ଦର୍ପୋଽଭିମାନଶ୍ଚ, କ୍ରୋଧଃ ପାରୁଷ୍ୟ-ମେବ ଚ ।**
**ଅଜ୍ଞାନଂ ଚାଭି-ଜାତସ୍ୟ, ପାର୍ଥ ସମ୍ପଦ-ମାସୁରୀମ୍ ॥**

ହେ ପାର୍ଥ ! ଦମ୍ଭ, ଗର୍ବ ଓ ଅଭିମାନ ତଥା କ୍ରୋଧ,

---

* ଚିତ୍ତ ଓ ଇନ୍ଦ୍ରିୟଦ୍ୱାରା ଯାହା ଯେପରିଭାବରେ ଜଣାଯାଏ, ତାହା ଠିକ୍ ସେପରିଭାବରେ ପ୍ରିୟଶବ୍ଦରେ କହିବା ହିଁ ସତ୍ୟଭାଷଣ ।

$\Psi$ ଶ୍ରେଷ୍ଠବ୍ୟକ୍ତିଙ୍କର ଯେଉଁ ଶକ୍ତି ପ୍ରଭାବରେ ପ୍ରାୟ ସବୁ ବିଷୟାସକ୍ତ ଓ ନୀଚ ପ୍ରକୃତିର ଲୋକ ଅନ୍ୟାୟ ଆଚରଣ ତ୍ୟାଗ କରି ତାଙ୍କରି ଉପଦେଶ ଅନୁଯାୟୀ ଶ୍ରେଷ୍ଠ ଆଚରଣରେ ପ୍ରବୃତ୍ତ ହୁଅନ୍ତି, ସେହି ଶକ୍ତିକୁ ତେଜ କହନ୍ତି ।

କଠୋରତା ଓ ଅଜ୍ଞାନ—ଏସବୁ ହେଉଛି ଆସୁରୀସମ୍ପଦ ନେଇ ଜନ୍ମ ହୋଇଥିବା ପୁରୁଷର ଲକ୍ଷଣ ॥ ୪ ॥

**ଦୈବୀ ସମ୍ପଦ୍-ବିମୋକ୍ଷାୟ, ନିବନ୍ଧା-ଯାସୁରୀ ମତା ।**
**ମା ଶୁଚଃ ସମ୍ପଦଂ ଦୈବୀ,-ମଭି-ଜାତୋଽସି ପାଣ୍ଡବ ॥**

ଦୈବୀସମ୍ପଦ ମୁକ୍ତିପ୍ରଦ ଓ ଆସୁରୀସମ୍ପଦ ବନ୍ଧନକାରକ ବୋଲି ସ୍ୱୀକାର କରାଯାଇଛି । ଏଣୁ, ହେ ଅର୍ଜୁନ ! ତୁମେ ଶୋକ କର ନାହିଁ; କାରଣ ତୁମେ ଦେବୀସମ୍ପଦ ନେଇ ଜନ୍ମ ହୋଇଛ ॥ ୫ ॥

**ଦ୍ୱୌ ଭୂତ-ସର୍ଗୌ ଲୋକେଽସ୍ମିନ୍, ଦୈବ ଆସୁର ଏବ ଚ ।**
**ଦୈବୋ ବିସ୍ତରଶଃ ପ୍ରୋକ୍ତ, ଆସୁରଂ ପାର୍ଥ ମେ ଶୃଣୁ ॥**

ହେ ଅର୍ଜୁନ ! ଇହଲୋକରେ ଭୂତମାନଙ୍କର ସୃଷ୍ଟି ଅର୍ଥାତ୍ ମନୁଷ୍ୟସମୁଦାୟ ଦୁଇପ୍ରକାରର; ଗୋଟିଏ ଦୈବୀପ୍ରକୃତିର ଓ ଅନ୍ୟଟି ଆସୁରୀପ୍ରକୃତିର । ସେଦୁହିଁଙ୍କ ମଧ୍ୟରୁ ଦୈବୀପ୍ରକୃତିର ମନୁଷ୍ୟସମୁଦାୟ ବିଷୟରେ ତ ବିସ୍ତୃତଭାବରେ କୁହାଯାଇସାରିଛି; ବର୍ତ୍ତମାନ ତୁମେ ଆସୁରୀପ୍ରକୃତିର ମନୁଷ୍ୟସମୁଦାୟ ବିଷୟରେ ମଧ୍ୟ ବିସ୍ତାରପୂର୍ବକ ମୋଠାରୁ ଶୁଣ ॥ ୬ ॥

**ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ, ଜନା ନ ବିଦୁ-ରାସୁରାଃ ।**
**ନ ଶୌଚଂ ନାପି ଚାଚାରୋ, ନ ସତ୍ୟଂ ତେଷୁ ବିଦ୍ୟତେ ॥**

ଆସୁରସ୍ୱଭାବର ମନୁଷ୍ୟମାନେ ପ୍ରବୃତ୍ତି ଓ ନିବୃତ୍ତି—ଏହି ଉଭୟ ଜାଣନ୍ତି ନାହିଁ । ତେଣୁ ସେମାନଙ୍କ ଠାରେ ବାହ୍ୟ ଓ ଅନ୍ତଃ ଶୁଦ୍ଧି ନ ଥାଏ, କି ସେମାନଙ୍କର ଆଚରଣରେ ଶୁଦ୍ଧି ନ ଥାଏ ତଥା ସେମାନଙ୍କ ଠାରେ ସତ୍ୟବାଦିତା ବି ନ ଥାଏ ॥ ୭ ॥

**ଅସତ୍ୟ-ମପ୍ରତିଷ୍ଠଂ ତେ, ଜଗଦାହୁ-ରନୀଶ୍ୱରମ୍ ।**
**ଅପରସ୍ପର-ସମ୍ଭୂତଂ, କିମନ୍ୟତ୍-କାମ-ହୈତୁକମ୍ ॥**

ସେହି ଆସୁରୀପ୍ରକୃତିର ମନୁଷ୍ୟମାନେ କହନ୍ତି ଯେ, ଜଗତ ଆଶ୍ରୟରହିତ, ସର୍ବଥା ଅସତ୍ୟ ଓ ଈଶ୍ୱରରହିତ; ଏହା କେବଳ ସ୍ତ୍ରୀ-ପୁରୁଷଙ୍କ ସଂଯୋଗରୁ ନିଜେ ନିଜେ ଉତ୍ପନ୍ନ ହୋଇଛି; ଅତଏବ କେବଳ କାମ ହିଁ ଏହାର କାରଣ । ଏହା ଛଡ଼ା ଆଉ କ'ଣ ଅଛି ! ॥ ୮ ॥

**ଏତାଂ ଦୃଷ୍ଟି-ମବଷ୍ଟଭ୍ୟ, ନଷ୍ଟାତ୍ମାନୋଽଲ୍ପ-ବୁଦ୍ଧୟଃ ।**
**ପ୍ରଭବନ୍ତ୍ୟୁଗ୍ର-କର୍ମାଣଃ, କ୍ଷୟାୟ ଜଗତୋଽହିତାଃ ॥**

ଏହି ମିଥ୍ୟା ଜ୍ଞାନକୁ ଅବଲମ୍ବନ କରି ଯେଉଁମାନଙ୍କର ସ୍ୱଭାବ ନଷ୍ଟ ହୋଇଗଲାଣି, ତଥା ଯେଉଁମାନଙ୍କର ବୁଦ୍ଧି ମନ୍ଦ, ଯେଉଁମାନେ ସମସ୍ତଙ୍କର ଅପକାରୀ, ସେହି କ୍ରୂରକର୍ମା ମନୁଷ୍ୟମାନଙ୍କର ସାମର୍ଥ୍ୟ କେବଳ ଜଗତର ବିନାଶ କରିବାକୁ ହିଁ ହୋଇଥାଏ ॥ ୯ ॥

**କାମ-ମାଶ୍ରିତ୍ୟ ଦୁଷ୍ପୂରଂ, ଦମ୍ଭ-ମାନ-ମଦାନ୍ୱିତାଃ ।**
**ମୋହାଦ୍-ଗୃହୀତ୍ୱା-ସଦ୍-ଗ୍ରାହାନ୍, ପ୍ରବର୍ତ୍ତନ୍ତେଽଶୁଚିବ୍ରତାଃ ॥**

ସେହି ଦମ୍ଭ, ମାନ ଓ ମଦଯୁକ୍ତ ମନୁଷ୍ୟମାନେ କୌଣସି-ପ୍ରକାରେ ବି ପୂର୍ଣ୍ଣ ହେଉ ନ ଥିବା କାମନାମାନଙ୍କୁ ଆଶ୍ରୟ କରି, ଅଜ୍ଞାନବଶତଃ ମିଥ୍ୟା ସିଦ୍ଧାନ୍ତମାନ ଗ୍ରହଣ କରି ଓ ଭ୍ରଷ୍ଟ ଆଚରଣ ଧାରଣ କରି ସଂସାରରେ ବିଚରଣ କରନ୍ତି ॥ ୧୦ ॥

**ଚିନ୍ତା-ମପରିମେୟାଂ ଚ, ପ୍ରଳୟାନ୍ତା-ମୁପାଶ୍ରିତାଃ ।**
**କାମୋପ-ଭୋଗ-ପରମା, ଏତାବଦିତି ନିଶ୍ଚିତାଃ ॥**

ତଥା ସେମାନେ ମୃତ୍ୟୁପର୍ଯ୍ୟନ୍ତ ରହୁଥିବା ଅସଂଖ୍ୟ ଚିନ୍ତାକୁ ଆଶ୍ରୟ କରି ଏବଂ ବିଷୟଭୋଗପରାୟଣ ହୋଇ 'ଏତିକି ହିଁ ସୁଖ' ବୋଲି ମନେକରନ୍ତି ॥ ୧୧ ॥

**ଆଶା-ପାଶ-ଶତୈର୍-ବଦ୍ଧାଃ, କାମ-କ୍ରୋଧ-ପରାୟଣାଃ ।**
**ଈହନ୍ତେ କାମ-ଭୋଗାର୍ଥି,-ମନ୍ୟାୟେନାର୍ଥ-ସଞ୍ଚୟାନ୍ ॥**

ଶତ ଶତ ଆଶାପାଶରେ ଆବଦ୍ଧ ହୋଇଥିବା ସେହି ମନୁଷ୍ୟମାନେ କାମକ୍ରୋଧପରାୟଣ ହୋଇ ବିଷୟଭୋଗପାଇଁ ଅନ୍ୟାୟପୂର୍ବକ ଧନାଦି ସଂଗ୍ରହ କରିବାର ଚେଷ୍ଟାରେ ଲାଗିରହିଥାନ୍ତି ॥ ୧୨ ॥

**ଇଦମଦ୍ୟ ମୟା ଲବ୍ଧ,-ମିମଂ ପ୍ରାପ୍‌ସ୍ୟେ ମନୋରଥମ୍ ।**
**ଇଦମସ୍ତୀଦ-ମପି ମେ, ଭବିଷ୍ୟତି ପୁନର୍ଧନମ୍ ॥**

ସେମାନେ ଭାବନ୍ତି, "ମୁଁ ଆଜି ଏହା ପାଇଗଲି ଓ ଏଥର ଏହି ମନୋରଥ ପୂର୍ଣ୍ଣ ହୋଇଯିବ । ମୋ ପାଖରେ ଏତିକି ଧନ ଅଛି ଏବଂ ଆହୁରି ମଧ୍ୟ ଏତକ ଧନ ମୋର ହୋଇଯିବ" ॥ ୧୩ ॥

**ଅସୌ ମୟା ହତଃ ଶତ୍ରୁର୍,-ହନିଷ୍ୟେ ଚାପରାନପି ।**
**ଈଶ୍ୱରୋଽହ-ମହଂ ଭୋଗୀ, ସିଦ୍ଧୋଽହଂ ବଳବାନ୍ ସୁଖୀ ॥**

"ସେହି ଶତ୍ରୁ ମୋ'ଦ୍ୱାରା ନିହତ ହୋଇଗଲା ଓ ଅନ୍ୟ ଶତ୍ରୁମାନଙ୍କୁ ମଧ୍ୟ ମୁଁ ମାରିଦେବି । ମୁଁ ଈଶ୍ୱର; ମୁଁ ଐଶ୍ୱର୍ଯ୍ୟବାନ୍;

ମୁଁ ସମସ୍ତ ସିଦ୍ଧିରେ ଯୁକ୍ତ, ବଳବାନ୍ ତଥା ସୁଖୀ'' ॥ ୧୪ ॥

**ଆଢ୍ୟୋଽଭି-ଜନବାନସ୍ମି, କୋଽନ୍ୟୋଽସ୍ତି ସଦୃଶୋ ମୟା ।**
**ଯକ୍ଷ୍ୟେ ଦାସ୍ୟାମି ମୋଦିଷ୍ୟ, ଇତ୍ୟ-ଜ୍ଞାନ-ବିମୋହିତାଃ ॥**
**ଅନେକ-ଚିତ୍ତ-ବିଭ୍ରାନ୍ତା, ମୋହ-ଜାଲ-ସମାବୃତାଃ ।**
**ପ୍ରସକ୍ତାଃ କାମ-ଭୋଗେଷୁ, ପତନ୍ତି ନରକେଽଶୁଚୌ ॥**

''ମୁଁ ବିରାଟ ଧନୀ ଓ ବିଶାଳ କୁଟୁମ୍ବୀ । ମୋ ସମାନ ଆଉ କିଏ ଅଛି? ମୁଁ ଯଜ୍ଞ କରିବି, ଦାନ ଦେବି ଓ ଆମୋଦପ୍ରମୋଦ କରିବି ।'' ଏପରିଭାବରେ ଅଜ୍ଞାନରେ ମୋହିତ, ଅନେକ-ପ୍ରକାରେ ବିଭ୍ରାନ୍ତଚିତ୍ତ ତଥା ମୋହରୂପୀ ଜାଲରେ ଆବଦ୍ଧ ଓ ବିଷୟଭୋଗରେ ଅତ୍ୟନ୍ତ ଆସକ୍ତ ଆସୁରସ୍ୱଭାବର ଲୋକେ ଅତ୍ୟନ୍ତ ଅପବିତ୍ର ନରକରେ ପଡ଼ନ୍ତି ॥ ୧୫-୧୬ ॥

**ଆତ୍ମ-ସମ୍ଭାବିତାଃ ସ୍ତବ୍ଧା, ଧନ-ମାନ-ମଦାନ୍ୱିତାଃ ।**
**ଯଜନ୍ତେ ନାମ-ଯଜ୍ଞୈସ୍-ତେ, ଦମ୍ଭେନାବିଧି-ପୂର୍ବକମ୍ ॥**

ନିଜେ ନିଜକୁ ହିଁ ଶ୍ରେଷ୍ଠ ମନେ କରୁଥିବା ସେହି ଗର୍ବୀ ପୁରୁଷମାନେ ଧନ ଓ ମାନର ମଦରେ ଯୁକ୍ତ ହୋଇ କେବଳ ନାମମାତ୍ର ଯଜ୍ଞମାନଙ୍କ ଦ୍ୱାରା ଓ ଆଡ଼ମ୍ବରପୂର୍ବକ ଶାସ୍ତ୍ରବିଧିରହିତ ଯଜନ କରନ୍ତି ॥ ୧୭ ॥

**ଅହଙ୍କାରଂ ବଳଂ ଦର୍ପଂ, କାମଂ କ୍ରୋଧଂ ଚ ସଂଶ୍ରିତାଃ ।**
**ମାମାତ୍ମ-ପର-ଦେହେଷୁ, ପ୍ରଦ୍ୱିଷନ୍ତୋଽଭ୍ୟ-ସୂୟକାଃ ॥**

ଅହଂକାର, ବଳ, ଗର୍ବ, କାମ ଓ କ୍ରୋଧପରାୟଣ ହୋଇ

ଅନ୍ୟମାନଙ୍କୁ ନିନ୍ଦା କରୁଥିବା ସେହି ପୁରୁଷମାନେ ନିଜର ଓ ଅନ୍ୟମାନଙ୍କର ଶରୀରରେ ଅଧିଷ୍ଠିତ ଥିବା ଅନ୍ତର୍ଯାମୀରୂପୀ ମୋ'ସହିତ ହିଁ ଦ୍ୱେଷ କରନ୍ତି ॥ ୧୮ ॥

**ତାନହଂ ଦ୍ୱିଷତଃ କ୍ରୂରାନ୍, ସଂସାରେଷୁ ନରାଧମାନ୍ ।**
**କ୍ଷିପାମ୍ୟଜସ୍ର-ମଶୁଭା,-ନାସୁରୀଷ୍ୱେବ ଯୋନିଷୁ ॥**

ସେହି ଦ୍ୱେଷ କରୁଥିବା ପାପାଚାରୀ ଓ କ୍ରୂରକର୍ମା ନରାଧମ-ମାନଙ୍କୁ ମୁଁ ସଂସାରରେ ବାରମ୍ବାର ଆସୁରୀଯୋନିମାନଙ୍କରେ ହିଁ ନିକ୍ଷେପ କରେ ॥ ୧୯ ॥

**ଆସୁରୀଂ ଯୋନି-ମାପନ୍ନା, ମୂଢ଼ା ଜନ୍ମନି ଜନ୍ମନି ।**
**ମାମପ୍ରାପ୍ୟୈବ କୌନ୍ତେୟ, ତତୋ ଯାନ୍ତ୍ୟ-ଧମାଂ ଗତିମ୍ ॥**

ହେ ଅର୍ଜୁନ ! ସେହି ମୂଢ଼ ଲୋକମାନେ ମୋତେ ନ ପାଇ ଜନ୍ମଜନ୍ମାନ୍ତରରେ ଆସୁରୀଯୋନି ହିଁ ପାଆନ୍ତି; ତା'ଠାରୁ ବି ଅତି ନୀଚଗତି ପାଆନ୍ତି, ଅର୍ଥାତ୍ ଘୋର ନରକରେ ପଡ଼ନ୍ତି ॥ ୨୦ ॥

**ତ୍ରିବିଧଂ ନରକସ୍ୟେଦଂ, ଦ୍ୱାରଂ ନାଶନ-ମାତ୍ମନଃ ।**
**କାମଃ କ୍ରୋଧସ୍-ତଥା ଲୋଭସ୍,-ତସ୍ମା-ଦେତତ୍ ତ୍ରୟଂ ତ୍ୟଜେତ୍ ॥**

କାମ, କ୍ରୋଧ ଓ ଲୋଭ—ନରକର ଏହି ତିନିପ୍ରକାର ଦ୍ୱାର* ହିଁ ଆତ୍ମାର ବିନାଶ କରନ୍ତି ଅର୍ଥାତ୍ ତାହାର ଅଧୋଗତି କରାଇଦିଅନ୍ତି । ଅତଏବ ଏହି ତିନୋଟିକୁ ତ୍ୟାଗ କରିଦେବା ଉଚିତ ॥ ୨୧ ॥

* ସକଳ ଅନର୍ଥର ମୂଳ ଓ ନରକପ୍ରାପ୍ତିର ହେତୁ ହୋଇଥିବାରୁ କାମ, କ୍ରୋଧ ଓ ଲୋଭକୁ ନରକର ଦ୍ୱାର ବୋଲାଯାଏ ।

**ଏତୈର୍‌-ବିମୁକ୍ତଃ କୌନ୍ତେୟ, ତମୋ-ଦ୍ୱାରୈସ୍‌-ତ୍ରିଭିର୍‌-ନରଃ ।**
**ଆଚର-ତ୍ୟାତ୍ମନଃ ଶ୍ରେୟସ୍‌,-ତତୋ ଯାତି ପରାଂ ଗତିମ୍‌ ॥**

ହେ ଅର୍ଜୁନ ! ନରକର ଏହି ତିନି ଦ୍ୱାରରୁ ମୁକ୍ତ ହୋଇଥିବା ପୁରୁଷ ନିଜର କଲ୍ୟାଣ ଆଚରଣ* କରନ୍ତି । ଏହାଦ୍ୱାରା ସେ ପରମଗତି ପାଆନ୍ତି ଅର୍ଥାତ୍‌ ମୋତେ ପାଆନ୍ତି ॥ ୨୨ ॥

**ଯଃ ଶାସ୍ତ୍ର-ବିଧି-ମୁତ୍ସୃଜ୍ୟ, ବର୍ତ୍ତତେ କାମ-କାରତଃ ।**
**ନ ସ ସିଦ୍ଧି-ମବାପ୍ନୋତି, ନ ସୁଖଂ ନ ପରାଂ ଗତିମ୍‌ ॥**

ଯେଉଁ ପୁରୁଷ ଶାସ୍ତ୍ରବିଧି ତ୍ୟାଗ କରି ନିଜ ଇଚ୍ଛାରେ ମନମୁଖୀ ଆଚରଣ କରେ, ସେ ସିଦ୍ଧି ପାଏ ନାହିଁ, କି ପରମଗତି ପାଏ ନାହିଁ, କି ସୁଖ ପାଏ ନାହିଁ ॥ ୨୩ ॥

**ତସ୍ମାତ୍‌-ଛାସ୍ତ୍ରଂ ପ୍ରମାଣଂ ତେ, କାର୍ଯ୍ୟା-କାର୍ଯ୍ୟ-ବ୍ୟବସ୍ଥିତୌ ।**
**ଜ୍ଞାତ୍ୱା ଶାସ୍ତ୍ର-ବିଧାନୋକ୍ତଂ, କର୍ମ କର୍ତ୍ତୁ-ମିହାର୍ହସି ॥**

ତେଣୁ ତୁମ ପାଇଁ ଏହି କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ନିର୍ଣ୍ଣୟରେ ଶାସ୍ତ୍ର ହିଁ ପ୍ରମାଣ । ଏପରି ଜାଣି ତୁମେ ଶାସ୍ତ୍ରବିଧିଦ୍ୱାରା ନିୟତ କର୍ମ ହିଁ କରିବା ଉଚିତ ॥ ୨୪ ॥

*ଓଁ ତତ୍‌-ସଦିତି, ଶ୍ରୀମଦ୍‌-ଭଗବଦ୍‌-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ଦୈବାସୁର-ସମ୍ପଦ୍‌-ବିଭାଗ-ଯୋଗୋ ନାମ ଷୋଡ଼ଶୋଽଧ୍ୟାୟଃ ॥ ୧୬ ॥*



* ଭଗବତ୍‌ନିର୍ଦ୍ଦେଶିତ ନିୟମ ଧରି କାର୍ଯ୍ୟ କରିବା ହିଁ ନିଜର କଲ୍ୟାଣ ଆଚରଣ କରିବା ।

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ ସପ୍ତଦଶୋଽଧ୍ୟାୟଃ

*ଅର୍ଜୁନ ଉବାଚ*

**ୟେ ଶାସ୍ତ୍ର-ବିଧି-ମୁତ୍ସୃଜ୍ୟ, ୟଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।**
**ତେଷାଂ ନିଷ୍ଠା ତୁ କା କୃଷ୍ଣ, ସତ୍ତ୍ୱମାହୋ ରଜସ୍-ତମଃ ॥**

**ଅର୍ଜୁନ** ପଚାରିଲେ—ହେ କୃଷ୍ଣ ! ଯେଉଁ ମନୁଷ୍ୟମାନେ ଶାସ୍ତ୍ରବିଧି ତ୍ୟାଗ କରି ଶ୍ରଦ୍ଧାଯୁକ୍ତ ହୋଇ ଦେବାଦିଙ୍କୁ ପୂଜା କରନ୍ତି, ସେମାନଙ୍କର ସ୍ଥିତି କ'ଣ ହୁଏ? ସାତ୍ତ୍ୱିକୀ, ନା ରାଜସୀ, ନା ତାମସୀ? ॥ ୧ ॥

*ଶ୍ରୀଭଗବାନୁବାଚ*

**ତ୍ରି-ବିଧା ଭବତି ଶ୍ରଦ୍ଧା, ଦେହିନାଂ ସା ସ୍ୱଭାବଜା ।**
**ସାତ୍ତ୍ୱିକୀ ରାଜସୀ ଚୈବ, ତାମସୀ ଚେତି ତାଂ ଶୃଣୁ ॥**

**ଶ୍ରୀଭଗବାନ୍ କହିଲେ**—ମନୁଷ୍ୟମାନଙ୍କର ସେହି ଶାସ୍ତ୍ରୀୟ ସଂସ୍କାରରୁ ରହିତ କେବଳ ସ୍ୱଭାବରୁ ଉତ୍ପନ୍ନ ଶ୍ରଦ୍ଧା* ସାତ୍ତ୍ୱିକୀ, ରାଜସୀ ତଥା ତାମସୀ—ଏପରି ତିନିପ୍ରକାର ହୋଇଥାଏ । ତାହା ତୁମେ ମୋ'ଠାରୁ ଶୁଣ ॥ ୨ ॥

---

* ଅନନ୍ତ ଜନ୍ମର କୃତକର୍ମର ସଞ୍ଚିତ ସଂସ୍କାରରୁ ଉତ୍ପନ୍ନ ଶ୍ରଦ୍ଧାକୁ 'ସ୍ୱଭାବରୁ ଉତ୍ପନ୍ନ ଶ୍ରଦ୍ଧା' କହନ୍ତି ।

**ସତ୍ତ୍ୱାନୁ-ରୂପା ସର୍ବସ୍ୟ, ଶ୍ରଦ୍ଧା ଭବତି ଭାରତ ।**
**ଶ୍ରଦ୍ଧାମୟୋଽୟଂ ପୁରୁଷୋ, ୟୋ ୟଚ୍ଛ୍ରଦ୍ଧଃ ସ ଏବ ସଃ ॥**

ହେ ଭାରତ ! ସବୁ ମନୁଷ୍ୟଙ୍କ ଶ୍ରଦ୍ଧା ସେମାନଙ୍କ ଅନ୍ତଃକରଣର ଅନୁରୂପ ହୁଏ । ଏହି ପୁରୁଷ ଶ୍ରଦ୍ଧାମୟ ଅଟେ । ଏଣୁ ଯେଉଁ ପୁରୁଷ ଯେପରି ଶ୍ରଦ୍ଧାବାନ୍, ସେ ସ୍ୱୟଂ ମଧ୍ୟ ସେପରି ହିଁ ଅଟେ ॥ ୩ ॥

**ୟଜନ୍ତେ ସାତ୍ତ୍ୱିକା ଦେବାନ୍, ୟକ୍ଷ-ରକ୍ଷାଂସି ରାଜସାଃ ।**
**ପ୍ରେତାନ୍ ଭୂତଗଣାଂଶ୍-ଚାନ୍ୟେ, ୟଜନ୍ତେ ତାମସା ଜନାଃ ॥**

ସାତ୍ତ୍ୱିକ ଲୋକେ ଦେବତାମାନଙ୍କୁ, ରାଜସ ଲୋକେ ଯକ୍ଷ ଓ ରାକ୍ଷସମାନଙ୍କୁ ଏବଂ ତାମସ ଲୋକେ ପ୍ରେତ ଓ ଭୂତମାନଙ୍କୁ ପୂଜା କରନ୍ତି ॥ ୪ ॥

**ଅଶାସ୍ତ୍ର-ବିହିତଂ ଘୋରଂ, ତପ୍ୟନ୍ତେ ୟେ ତପୋ ଜନାଃ ।**
**ଦମ୍ଭା-ହଙ୍କାର-ସଂୟୁକ୍ତାଃ, କାମ-ରାଗ-ବଲାନ୍ୱିତାଃ ॥**

ଯେଉଁମାନେ ଶାସ୍ତ୍ରବିଧିରହିତ କେବଳ ମନଃକଳ୍ପିତ ଘୋର ତପ ଆଚରଣ କରନ୍ତି ତଥା ଦମ୍ଭ ଓ ଅହଂକାରରେ ଯୁକ୍ତ ହୋଇ କାମନା, ଆସକ୍ତି ଓ ବଳର ଅଭିମାନରେ ମଧ୍ୟ ଜଡ଼ିତ ରହନ୍ତି,—॥ ୫ ॥

**କର୍ଶୟନ୍ତଃ ଶରୀରସ୍ଥଂ, ଭୂତ-ଗ୍ରାମ-ମଚେତସଃ ।**
**ମାଂ ଚୈବାନ୍ତଃଶରୀରସ୍ଥଂ, ତାନ୍-ବିଦ୍ଧ୍ୟାସୁର-ନିଶ୍ଚୟାନ୍ ॥**

ଶରୀରରେ ଅବସ୍ଥିତ ଭୂତସମୁଦାୟକୁ ଏବଂ ଅନ୍ତଃକରଣରେ

ସ୍ଥିତ ମୋତେ (ପରମାତ୍ମାଙ୍କୁ) ମଧ୍ୟ କୃଶ* କରାଉଥିବା ସେହି ଅଜ୍ଞାନୀମାନଙ୍କୁ ଆସୁରସ୍ୱଭାବ ଧରିଥିବା ଲୋକ ବୋଲି ଜାଣ ॥ ୬ ॥

**ଆହାରସ୍-ତ୍ୱପି ସର୍ବସ୍ୟ, ତ୍ରିବିଧୋ ଭବତି ପ୍ରିୟଃ ।**
**ୟଜ୍ଞସ୍-ତପସ୍-ତଥା ଦାନଂ, ତେଷାଂ ଭେଦ-ମିମଂ ଶୃଣୁ ॥**

ଆହାର (ଖାଦ୍ୟ) ମଧ୍ୟ ଲୋକଙ୍କ ପ୍ରକୃତି ଅନୁସାରେ ତିନିପ୍ରକାର ପ୍ରିୟ ହୁଏ ଏବଂ ଯଜ୍ଞ, ତପ ଓ ଦାନ ମଧ୍ୟ ସେହିପରି ତିନି ତିନିପ୍ରକାରର ହୁଏ । ସେଗୁଡ଼ିକର ଏହି ପୃଥକ୍ ପୃଥକ୍ ବିଭାଗକୁ ତୁମେ ମୋଠାରୁ ଶୁଣ ॥ ୭ ॥

**ଆୟୁଃ-ସତ୍ତ୍ୱ-ବଲାରୋଗ୍ୟ,-ସୁଖ-ପ୍ରୀତି-ବିବର୍ଧନାଃ ।**
**ରସ୍ୟାଃ ସ୍ନିଗ୍‌ଧାଃ ସ୍ଥିରା ହୃଦ୍ୟା, ଆହାରାଃ ସାତ୍ତ୍ୱିକ-ପ୍ରିୟାଃ ॥**

ଯେଉଁ ଖାଦ୍ୟ ଆୟୁ, ବୁଦ୍ଧି, ବଳ, ଆରୋଗ୍ୟ, ସୁଖ ଏବଂ ପ୍ରୀତିବର୍ଦ୍ଧନକାରୀ, ଯାହା ରସଯୁକ୍ତ, ସ୍ନିଗ୍‌ଧ ଏବଂ ସ୍ଥିରΨ ତଥା ସ୍ୱଭାବତଃ ମନକୁ ପ୍ରିୟ ଲାଗେ, ସେହି ଖାଦ୍ୟ ସାତ୍ତ୍ୱିକ ମନୁଷ୍ୟମାନଙ୍କର ପ୍ରିୟ ॥ ୮ ॥

**କଟ୍ୱମ୍ଳ-ଲବଣା-ତ୍ୟୁଷ୍ଣ,-ତୀକ୍ଷ୍ଣ-ରୂକ୍ଷ-ବିଦାହିନଃ ।**
**ଆହାରା ରାଜସସ୍ୟେଷ୍ଟା, ଦୁଃଖ-ଶୋକାମୟ-ପ୍ରଦାଃ ॥**

* ଶାସ୍ତ୍ରବିରୁଦ୍ଧ ଉପବାସ ଇତ୍ୟାଦି ଘୋର ଆଚରଣଦ୍ୱାରା ଶରୀରକୁ କୃଶ କରିବା ଓ ଭଗବାନଙ୍କର ଅଂଶସ୍ୱରୂପ ଜୀବାତ୍ମାକୁ କ୍ଳେଶ ଦେବା ହିଁ ଅନ୍ତର୍ଯାମୀ ପରମାତ୍ମାଙ୍କୁ କୃଶ କରିବା ।

Ψ ଯେଉଁ ଖାଦ୍ୟସାର ବହୁ ସମୟ ଧରି ଶରୀରରେ ରହେ, ତାହା ସ୍ଥିର ଖାଦ୍ୟ ।

ପିତା, ଖଟା, ଲୁଣିଆ, ଅତିଉଷ୍ଣ, ରାଗ, ରୂକ୍ଷ, ଦାହକାରକ ଏବଂ ଦୁଃଖ, ଚିନ୍ତା ତଥା ରୋଗ ଉତ୍ପନ୍ନକାରୀ ଖାଦ୍ୟ ରାଜସ ଲୋକଙ୍କର ପ୍ରିୟ ॥ ୯ ॥

**ଯାତ-ଯାମଂ ଗତ-ରସଂ, ପୂତି ପର୍ଯ୍ୟୁଷିତଂ ଚ ଯତ୍ ।**
**ଉଚ୍ଛିଷ୍ଟ-ମପି ଚାମେଧ୍ୟଂ, ଭୋଜନଂ ତାମସ-ପ୍ରିୟମ୍ ॥**

ଯେଉଁ ଖାଦ୍ୟ ଅର୍ଦ୍ଧସିଦ୍ଧ, ରସରହିତ, ଦୁର୍ଗନ୍ଧଯୁକ୍ତ, ବାସି ଓ ଅଇଁଠା ତଥା ଅପବିତ୍ର, ସେହି ଖାଦ୍ୟ ତାମସ ଲୋକର ପ୍ରିୟ ॥୧୦॥

**ଅଫଲା-କାଙ୍କ୍ଷିଭିର୍-ଯଜ୍ଞୋ, ବିଧି-ଦୃଷ୍ଟୋ ଯ ଇଜ୍ୟତେ ।**
**ଯଷ୍ଟବ୍ୟ-ମେବେତି ମନଃ, ସମାଧାୟ ସ ସାତ୍ତ୍ୱିକଃ ॥**

ଯେଉଁ ଯଜ୍ଞ ଶାସ୍ତ୍ରବିଧିରେ ନିୟତ, ଯାହା କରିବା ହିଁ ଉଚିତ ବୋଲି ମନକୁ ଦୃଢ଼ ନିଶ୍ଚିତ କରି ଫଳ ଇଚ୍ଛା କରୁ ନ ଥିବା ପୁରୁଷମାନଙ୍କ ଦ୍ୱାରା କରାଯାଏ, ତାହା ସାତ୍ତ୍ୱିକ ॥ ୧୧ ॥

**ଅଭି-ସନ୍ଧାୟ ତୁ ଫଳଂ, ଦମ୍ଭାର୍ଥ-ମପି ଚୈବ ଯତ୍ ।**
**ଇଜ୍ୟତେ ଭରତ-ଶ୍ରେଷ୍ଠ, ତଂ ଯଜ୍ଞଂ ବିଦ୍ଧି ରାଜସମ୍ ॥**

କିନ୍ତୁ ହେ ଅର୍ଜୁନ ! କେବଳ ଦମ୍ଭାଚରଣପାଇଁ ଏବଂ ଫଳପ୍ରାପ୍ତି ଉଦ୍ଦେଶ୍ୟ ରଖି ଯେଉଁ ଯଜ୍ଞ କରାଯାଏ, ସେହି ଯଜ୍ଞକୁ ତୁମେ ରାଜସ ବୋଲି ଜାଣ ॥ ୧୨ ॥

**ବିଧି-ହୀନ-ମସୃଷ୍ଟାନ୍ନଂ, ମନ୍ତ୍ର-ହୀନ-ମଦକ୍ଷିଣମ୍ ।**
**ଶ୍ରଦ୍ଧା-ବିରହିତଂ ଯଜ୍ଞଂ, ତାମସଂ ପରିଚକ୍ଷତେ ॥**

ବିନା ମନ୍ତ୍ରରେ, ବିନା ଦକ୍ଷିଣାରେ ଏବଂ ବିନା ଶ୍ରଦ୍ଧାରେ କରାଯାଉଥିବା ଶାସ୍ତ୍ରବିଧିରହିତ ତଥା ଅନ୍ନଦାନରହିତ ଯଜ୍ଞକୁ ତାମସ ଯଜ୍ଞ ବୋଲି କୁହାଯାଏ ॥ ୧୩ ॥

**ଦେବ-ଦ୍ୱିଜ-ଗୁରୁ-ପ୍ରାଜ୍ଞ,-ପୂଜନଂ ଶୌଚ-ମାର୍ଜବମ୍ ।**
**ବ୍ରହ୍ମଚର୍ଯ୍ୟ-ମହିଂସା ଚ, ଶାରୀରଂ ତପ ଉଚ୍ୟତେ ॥**

ଦେବତା, ବ୍ରାହ୍ମଣ, ଗୁରୁ* ଏବଂ ଜ୍ଞାନୀଜନଙ୍କର ପୂଜନ, ପବିତ୍ରତା, ସରଳତା, ବ୍ରହ୍ମଚର୍ଯ୍ୟ ଏବଂ ଅହିଂସା—ଏହାକୁ ଶରୀରସମ୍ବନ୍ଧୀ ତପ କୁହାଯାଏ ॥ ୧୪ ॥

**ଅନୁଦ୍‌ବେଗ-କରଂ ବାକ୍ୟଂ, ସତ୍ୟଂ ପ୍ରିୟ-ହିତଂ ଚ ଯତ୍ ।**
**ସ୍ୱାଧ୍ୟାୟା-ଭ୍ୟସନଂ ଚୈବ, ବାଙ୍ମୟଂ ତପ ଉଚ୍ୟତେ ॥**

ଯାହା ଉଦ୍‌ବେଗକାରକ ନୁହେଁ, ଯାହା ପ୍ରିୟ, ହିତକର ଏବଂ ଯଥାର୍ଥ ବଚନΨ ତଥା ଯାହା ବେଦ-ଶାସ୍ତ୍ରପଠନର ଏବଂ ପରମେଶ୍ୱରଙ୍କ ନାମ ଜପ କରିବାର ଅଭ୍ୟାସ, ତାହାକୁ ହିଁ ବାଣୀସମ୍ବନ୍ଧୀ ତପ କୁହାଯାଏ ॥ ୧୫ ॥

**ମନଃପ୍ରସାଦଃ ସୌମ୍ୟତ୍ୱଂ, ମୌନମାତ୍ମ-ବିନିଗ୍ରହଃ ।**
**ଭାବ-ସଂଶୁଦ୍ଧି-ରିତ୍ୟେତତ୍, ତପୋ ମାନସ-ମୁଚ୍ୟତେ ॥**

ମନର ପ୍ରସନ୍ନତା, ଶାନ୍ତଭାବ, ଭଗବତ୍-ଚିନ୍ତନ କରିବାର

---

* ଏଠାରେ ଗୁରୁ ଅର୍ଥ ପିତା, ମାତା, ଆଚାର୍ଯ୍ୟ, ବୟୋଜ୍ୟେଷ୍ଠ ଓ ନିଜଠାରୁ ଯେକୌଣସି ପ୍ରକାରେ ଶ୍ରେଷ୍ଠବ୍ୟକ୍ତିଙ୍କୁ ବୁଝାଏ ।

Ψ ମନ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯାହା ଯେପରି ଅନୁଭୂତ ହୁଏ, ତାହା ଠିକ୍ ସେପରି ମଧୁରଭାବରେ କହିବାର ନାମ ଯଥାର୍ଥ ବଚନ ।

ସ୍ୱଭାବ, ମନର ନିଗ୍ରହ ଅନ୍ତଃକରଣସ୍ଥିତ ଭାବମାନଙ୍କର ସମ୍ୟକ୍ ପବିତ୍ରତା—ଏହାକୁ ମନସମ୍ବନ୍ଧୀ ତପ କୁହାଯାଏ ॥ ୧୬ ॥

**ଶ୍ରଦ୍ଧୟା ପରୟା ତପ୍ତଂ, ତପସ୍-ତତ୍-ତ୍ରିବିଧଂ ନରୈଃ ।**
**ଅଫଲା-କାଙ୍କ୍ଷିଭିର୍-ଯୁକ୍ତୈଃ, ସାତ୍ତ୍ୱିକଂ ପରିଚକ୍ଷତେ ॥**

ଫଳ ଇଚ୍ଛା କରୁ ନ ଥିବା ଯୋଗୀମାନଙ୍କ ଦ୍ୱାରା ପରମ ଶ୍ରଦ୍ଧାର ସହିତ କରାଯାଉଥିବା ପୂର୍ବୋକ୍ତ କାୟିକ, ବାଚିକ ଓ ମାନସିକ ସେହି ତିନିପ୍ରକାର ତପକୁ ସାତ୍ତ୍ୱିକ ତପ କହନ୍ତି ॥ ୧୭ ॥

**ସତ୍କାର-ମାନ-ପୂଜାର୍ଥଂ, ତପୋ ଦମ୍ଭେନ ଚୈବ ଯତ୍ ।**
**କ୍ରିୟତେ ତଦିହ ପ୍ରୋକ୍ତଂ, ରାଜସଂ ଚଲ-ମଧ୍ରୁବମ୍ ॥**

ଯେଉଁ ତପ ସତ୍କାର, ମାନ ଓ ପୂଜା ପାଇବାପାଇଁ ତଥା ଅନ୍ୟ କୌଣସି ସ୍ୱାର୍ଥସିଦ୍ଧିପାଇଁ ସ୍ୱଭାବତଃ ବା ଦମ୍ଭପୂର୍ବକ କରାଯାଏ, ସେହି ଅନିଶ୍ଚିତ* ଏବଂ କ୍ଷଣିକଫଳଯୁକ୍ତ ତପକୁ ରାଜସ ତପ କୁହାଯାଏ ॥ ୧୮ ॥

**ମୂଢଗ୍ରାହେ-ଣାତ୍ମନୋ ଯତ୍, ପୀଡୟା କ୍ରିୟତେ ତପଃ ।**
**ପରସ୍ୟୋତ୍-ସାଦନାର୍ଥଂ ବା, ତତ୍-ତାମସ-ମୁଦାହୃତମ୍ ॥**

ଯେଉଁ ତପ ମୂଢ଼ତାପୂର୍ବକ ଜିଦ୍ ଧରି ମନ, ବାଣୀ ଓ ଶରୀରର ପୀଡ଼ା ସହିତ କରାଯାଏ, ଅଥବା ଅନ୍ୟର ଅନିଷ୍ଟ କରିବା ନିମନ୍ତେ କରାଯାଏ, ସେହି ତପକୁ ତାମସ ତପ କୁହାଯାଏ ॥ ୧୯ ॥

---

* ଯାହା ଫଳ ପ୍ରଦାନ କରିବ, କି ନ କରିବ, ଠିକ୍ ଜଣା ନ ଥାଏ, ତାହା ଅନିଶ୍ଚିତ ଫଳଯୁକ୍ତ ।

**ଦାତବ୍ୟ-ମିତି ଯଦ୍ଦାନଂ, ଦୀୟତେଽନୁପକାରିଣେ ।**
**ଦେଶେ କାଲେ ଚ ପାତ୍ରେ ଚ, ତଦ୍-ଦାନଂ ସାତ୍ତ୍ୱିକଂ ସ୍ମୃତମ୍ ॥**

ଦାନ ଦେବା ହିଁ କର୍ତ୍ତବ୍ୟ—ଏପରି ଭାବ ରଖି ଯେଉଁ ଦାନ ଦେଶ, କାଳ* ଓ ପାତ୍ର☫ ପ୍ରାପ୍ତ ହେଲେ ପ୍ରତ୍ୟୁପକାର ଆଶା ନ ରଖି ଅନୁପକାରୀକୁ ନିଃସ୍ୱାର୍ଥଭାବରେ ଦିଆଯାଏ, ସେହି ଦାନକୁ ସାତ୍ତ୍ୱିକ ଦାନ କହନ୍ତି ॥ ୨୦ ॥

**ଯତ୍-ତୁ ପ୍ରତ୍ୟୁପ-କାରାର୍ଥଂ, ଫଲ-ମୁଦ୍ଦିଶ୍ୟ ବା ପୁନଃ ।**
**ଦୀୟତେ ଚ ପରି-କ୍ଲିଷ୍ଟଂ, ତଦ୍-ଦାନଂ ରାଜସଂ ସ୍ମୃତମ୍ ॥**

କିନ୍ତୁ ଯେଉଁ ଦାନ କ୍ଲେଶପୂର୍ବକ✦ ତଥା ପ୍ରତ୍ୟୁପକାର ପାଇବା ନିମନ୍ତେ ଅଥବା ଫଳପ୍ରାପ୍ତି ଉଦ୍ଦେଶ୍ୟରେ§ ଦିଆଯାଏ, ସେହି ଦାନକୁ ରାଜସ କୁହାଯାଏ ॥ ୨୧ ॥

**ଅଦେଶ-କାଲେ ଯଦ୍-ଦାନ,-ମପାତ୍ରେଭ୍ୟଶ୍ଚ ଦୀୟତେ ।**
**ଅସତ୍-କୃତ-ମବଜ୍ଞାତଂ, ତତ୍-ତାମସ-ମୁଦାହୃତମ୍ ॥**

ଯେଉଁ ଦାନ ବିନା ସତ୍କାରରେ ଅଥବା ତିରସ୍କାରପୂର୍ବକ

---

* ଯେଉଁ ଦେଶକାଳରେ ଯେଉଁ ବସ୍ତୁର ଅଭାବ ଘଟେ, ସେହି ଦେଶକାଳରେ ସେହି ବସ୍ତୁଦ୍ୱାରା ପ୍ରାଣୀଙ୍କ ସେବା କରିବା ହିଁ ଦେଶକାଳ ଦେଖି ଦାନ କରିବା ।

☫ କ୍ଷୁଧାର୍ତ୍ତ, ଅନାଥ, ଦୁଃଖୀ, ରୋଗୀ, ଅସମର୍ଥ ଏବଂ ଭିକ୍ଷୁକ ଆଦି ଯାହାର ଯାହା ଲୋଡ଼ା, ତାକୁ ତାହା ଦେବା ତଥା ସେବା କରିବା ଓ ବିଦ୍ୱାନ ବ୍ରାହ୍ମଣ ଆଦିଙ୍କୁ ଯୋଗ୍ୟ ପଦାର୍ଥ ଦେଇ ସେବା କରିବା ହିଁ ସତ୍ପାତ୍ରରେ ଦାନ ଦେବା ।

✦ ଆଜିକାଲି ଚାନ୍ଦା ଦେବାପରି ବାଧ୍ୟ ହୋଇ ଦେବା ଦାନ ।

§ ସମ୍ମାନ, ପ୍ରତିଷ୍ଠା ଓ ସ୍ୱର୍ଗାଦି ଫଳପ୍ରାପ୍ତି କାମନାରେ ବା ରୋଗ ନିବୃତ୍ତିପାଇଁ ଦାନ ।

ଅଯୋଗ୍ୟ ଦେଶକାଳରେ ଏବଂ ଅପାତ୍ରମାନଙ୍କୁ ଦିଆଯାଏ, ସେହି ଦାନକୁ ତାମସ କୁହାଯାଏ ॥ ୨୨ ॥

**ଓଁ ତତ୍-ସଦିତି ନିର୍ଦ୍ଦେଶୋ, ବ୍ରହ୍ମଣସ୍-ତ୍ରିବିଧଃ ସ୍ମୃତଃ ।**
**ବ୍ରାହ୍ମଣାସ୍-ତେନ ବେଦାଶ୍-ଚ, ଯଜ୍ଞାଶ୍-ଚ ବିହିତାଃ ପୁରା ॥**

ଓଁ, ତତ୍, ସତ୍—ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କର ଏପରି ତିନିପ୍ରକାର ନାମ କୁହାଯାଇଛି । ସୃଷ୍ଟିର ଆଦିକାଳରେ ବ୍ରାହ୍ମଣମାନେ ଏବଂ ବେଦମାନେ ତଥା ଯଜ୍ଞମାନେ ସେଥିରୁ ରଚିତ ହୋଇଛନ୍ତି ॥ ୨୩ ॥

**ତସ୍ମା-ଦୋମିତ୍ୟୁ-ଦାହୃତ୍ୟ, ଯଜ୍ଞ-ଦାନ-ତପଃ-କ୍ରିୟାଃ ।**
**ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ, ସତତଂ ବ୍ରହ୍ମ-ବାଦିନାମ୍ ॥**

ତେଣୁ ବେଦମନ୍ତ୍ର ଉଚ୍ଚାରଣ କରୁଥିବା ଶ୍ରେଷ୍ଠ ପୁରୁଷମାନଙ୍କର ଶାସ୍ତ୍ରବିଧିଦ୍ୱାରା ନିୟତ ଯଜ୍ଞ, ଦାନ ଏବଂ ତପରୂପକ କ୍ରିୟାଗୁଡ଼ିକ ସର୍ବଦା ପରମାତ୍ମାଙ୍କର ଏହି 'ଓଁ' ନାମ ଉଚ୍ଚାରଣ କରି ହିଁ ଆରମ୍ଭ ହୁଏ ॥ ୨୪ ॥

**ତଦିତ୍ୟ-ନଭି-ସନ୍ଧାୟ, ଫଲଂ ଯଜ୍ଞ-ତପଃ-କ୍ରିୟାଃ ।**
**ଦାନ-କ୍ରିୟାଶ୍ଚ ବିବିଧାଃ, କ୍ରିୟନ୍ତେ ମୋକ୍ଷ-କାଙ୍କ୍ଷିଭିଃ ॥**

ଏସବୁ 'ତତ୍' ନାମରେ କୁହାଯାଇଥିବା ପରମାତ୍ମାଙ୍କର ହିଁ ଅଟେ—ଏହିଭାବ ରଖି କଲ୍ୟାଣକାମୀ ପୁରୁଷମାନଙ୍କ ଦ୍ୱାରା ଫଳ ଆକାଙ୍କ୍ଷା ନ କରି ନାନାପ୍ରକାର ଯଜ୍ଞ, ତପ ଓ ଦାନରୂପୀ କ୍ରିୟା କରାଯାଏ ॥ ୨୫ ॥

**ସଦ୍-ଭାବେ ସାଧୁ-ଭାବେ ଚ, ସଦିତ୍ୟେତତ୍-ପ୍ରଯୁଜ୍ୟତେ ।**
**ପ୍ରଶସ୍ତେ କର୍ମଣି ତଥା, ସଚ୍ଛବ୍ଦଃ ପାର୍ଥ ଯୁଜ୍ୟତେ ॥**

ପରମାତ୍ମାଙ୍କର ଏହି 'ସତ୍' ନାମ ସତ୍ୟଭାବରେ ଏବଂ ଶ୍ରେଷ୍ଠଭାବରେ ପ୍ରୟୋଗ କରାଯାଏ ତଥା ହେ ପାର୍ଥ ! ଉତ୍ତମ କର୍ମରେ ମଧ୍ୟ 'ସତ୍' ଶବ୍ଦ ପ୍ରୟୋଗ କରାଯାଏ ॥ ୨୬ ॥

**ଯଜ୍ଞେ-ତପସି ଦାନେ ଚ, ସ୍ଥିତିଃ ସଦିତି ଚୋଚ୍ୟତେ ।**
**କର୍ମ ଚୈବ ତଦର୍ଥୀୟଂ, ସଦିତ୍ୟେବାଭି-ଧୀୟତେ ॥**

ତଥା ଯଜ୍ଞ, ତପ ଓ ଦାନରେ ଯେଉଁ ସ୍ଥିତି ଥାଏ, ତାହାକୁ ମଧ୍ୟ 'ସତ୍' ବୋଲି କୁହାଯାଏ ଏବଂ ସେହି ପରମାତ୍ମାଙ୍କ ପାଇଁ କରାଯାଉଥିବା କର୍ମକୁ ନିଶ୍ଚିତରୂପେ ସତ୍ ବୋଲି କୁହାଯାଏ ॥ ୨୭ ॥

**ଅଶ୍ରଦ୍ଧୟା ହୁତଂ ଦତ୍ତଂ, ତପସ୍-ତପ୍ତଂ କୃତଂ ଚ ଯତ୍ ।**
**ଅସ-ଦିତ୍ୟୁଚ୍ୟତେ ପାର୍ଥ, ନ ଚ ତତ୍-ପ୍ରେତ୍ୟ ନୋ ଇହ ॥**

ହେ ଅର୍ଜୁନ ! ବିନା ଶ୍ରଦ୍ଧାରେ କରାଯାଉଥିବା ହୋମ, ଦିଆଯାଉଥିବା ଦାନ ଏବଂ କରାଯାଉଥିବା ତପ ତଥା ଅନ୍ୟାନ୍ୟ ଶୁଭକର୍ମକୁ 'ଅସତ୍' ବୋଲି କୁହାଯାଏ; ତେଣୁ ତାହା ଇହଲୋକରେ ଲାଭଦାୟକ ନୁହେଁ, କି ମରିବା ପରେ ମଧ୍ୟ ଲାଭଦାୟକ ନୁହେଁ ॥ ୨୮ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ଯୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ଶ୍ରଦ୍ଧା-ତ୍ରୟ-ବିଭାଗ-ଯୋଗୋ ନାମ ସପ୍ତଦଶୋଽଧ୍ୟାୟଃ ॥ ୧୭ ॥*



॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଥ-ଅଷ୍ଟାଦଶୋଽଧ୍ୟାୟଃ

*ଅର୍ଜୁନ ଉବାଚ*

**ସଂନ୍ୟାସସ୍ୟ ମହାବାହୋ, ତତ୍ତ୍ୱ-ମିଚ୍ଛାମି ବେଦିତୁମ୍ ।**
**ତ୍ୟାଗସ୍ୟ ଚ ହୃଷୀକେଶ, ପୃଥକ୍-କେଶି-ନିଷୂଦନ ॥**

**ଅର୍ଜୁନ କହିଲେ**—ହେ ମହାବାହୁ ! ହେ ଅନ୍ତର୍ଯାମୀ ! ହେ ବାସୁଦେବ ! ମୁଁ ସନ୍ନ୍ୟାସ ଏବଂ ତ୍ୟାଗର ତତ୍ତ୍ୱ ପୃଥକ୍ ପୃଥକ୍‌ଭାବରେ ଜାଣିବାକୁ ଇଚ୍ଛା କରୁଛି ॥ ୧ ॥

*ଶ୍ରୀଭଗବାନୁବାଚ*

**କାମ୍ୟାନାଂ କର୍ମଣାଂ ନ୍ୟାସଂ, ସଂନ୍ୟାସଂ କବୟୋ ବିଦୁଃ ।**
**ସର୍ବ-କର୍ମ-ଫଳ-ତ୍ୟାଗଂ, ପ୍ରାହୁସ୍-ତ୍ୟାଗଂ ବିଚକ୍ଷଣାଃ ॥**

**ଶ୍ରୀଭଗବାନ୍ କହିଲେ**—କେତେକ ପଣ୍ଡିତ କାମ୍ୟ-କର୍ମମାନଙ୍କର* ତ୍ୟାଗକୁ ସନ୍ନ୍ୟାସ ବୋଲି ବୁଝନ୍ତି ଏବଂ ଅନ୍ୟ ବିଗ୍ଭରକୁଶଳ ପୁରୁଷମାନେ ସକଳ କର୍ମର ଫଳତ୍ୟାଗକୁ ତ୍ୟାଗ☫ ବୋଲି କହନ୍ତି ॥ ୨ ॥

---

* ସ୍ତ୍ରୀ-ପୁତ୍ର ଆଦି ପ୍ରିୟବସ୍ତୁ ପ୍ରାପ୍ତିପାଇଁ ଏବଂ ରୋଗ, ପ୍ରତିକୂଳ ଅବସ୍ଥା ଆଦି ନିବୃତ୍ତିପାଇଁ ଯେଉଁ ଯଜ୍ଞ, ତପସ୍ୟା, ଦାନ ଆଦି କର୍ମ କରାଯାଏ, ତାହା କାମ୍ୟକର୍ମ ।

☫ ଈଶ୍ୱରଭକ୍ତି, ଦେବପୂଜନ, ପିତୃ-ମାତୃ-ଗୁରୁ ସେବା, ଯଜ୍ଞ, ଦାନ, ତପ ଓ ବର୍ଣ୍ଣାଶ୍ରମ କର୍ମ ତଥା କର୍ତ୍ତବ୍ୟକର୍ମରୁ ଇହଲୋକ ଓ ପରଲୋକର ସକଳ କାମନା ତ୍ୟାଗ ହିଁ ସର୍ବକର୍ମଫଳତ୍ୟାଗ ।

**ତ୍ୟାଜ୍ୟଂ ଦୋଷ-ବଦିତ୍ୟେକେ, କର୍ମ ପ୍ରାହୁର୍-ମନୀଷିଣଃ ।**
**ଯଜ୍ଞ-ଦାନ-ତପଃ-କର୍ମ, ନ ତ୍ୟାଜ୍ୟ-ମିତି ଚାପରେ ॥**

କେହି କେହି ବିଦ୍ୱାନ୍ କହନ୍ତି ଯେ, କର୍ମମାତ୍ରକେ ଦୋଷଯୁକ୍ତ; ତେଣୁ ତାହା ତ୍ୟାଗ କରିବା ଉଚିତ ଏବଂ ଅନ୍ୟ ବିଦ୍ୱାନ୍‌ମାନେ କହନ୍ତି ଯେ, ଯଜ୍ଞ, ଦାନ ଓ ତପରୂପକ କର୍ମ ତ୍ୟାଗ କରିବା ଉଚିତ ନୁହେଁ ॥ ୩ ॥

**ନିଶ୍ଚୟଂ ଶୃଣୁ ମେ ତତ୍ର, ତ୍ୟାଗେ ଭରତ-ସତ୍ତମ ।**
**ତ୍ୟାଗୋ ହି ପୁରୁଷ-ବ୍ୟାଘ୍ର, ତ୍ରିବିଧଃ ସମ୍ପ୍ରକୀର୍ତ୍ତିତଃ ॥**

ହେ ପୁରୁଷଶ୍ରେଷ୍ଠ ଅର୍ଜୁନ ! ସନ୍ନ୍ୟାସ ଓ ତ୍ୟାଗ—ଏହି ଦୁଇଟି ମଧ୍ୟରୁ ପ୍ରଥମେ ତ୍ୟାଗ ବିଷୟରେ ତୁମେ ମୋର ନିଶ୍ଚିତ ମତ ଶୁଣ । ତ୍ୟାଗ ସାତ୍ତ୍ୱିକ, ରାଜସ ଓ ତାମସ ଭେଦରେ ତିନିପ୍ରକାର ବୋଲି କୁହାଯାଇଛି ॥ ୪ ॥

**ଯଜ୍ଞ-ଦାନ-ତପଃ-କର୍ମ, ନ ତ୍ୟାଜ୍ୟଂ କାର୍ଯ୍ୟମେବ ତତ୍ ।**
**ଯଜ୍ଞୋ ଦାନଂ ତପଶ୍-ଚୈବ, ପାବନାନି ମନୀଷିଣାମ୍ ॥**

ଯଜ୍ଞ, ଦାନ ଓ ତପରୂପକ କର୍ମ ତ୍ୟାଗ କରିବା ଉଚିତ ନୁହେଁ; ବରଂ ତାହା ଅବଶ୍ୟକରଣୀୟ; କାରଣ ଯଜ୍ଞ, ଦାନ ଓ ତପ—ଏହି ତିନୋଟି କର୍ମ ହିଁ ବୁଦ୍ଧିମାନ୍* ପୁରୁଷମାନଙ୍କୁ ପବିତ୍ର କରେ ॥ ୫ ॥

* ଯେ ଆସକ୍ତି ଓ ଫଳାକାଙ୍କ୍ଷା ତ୍ୟାଗ କରି ଭଗବଦର୍ଥ କର୍ମ କରନ୍ତି, ସେ ହିଁ ବୁଦ୍ଧିମାନ ।

**ଏତାନ୍ୟପି ତୁ କର୍ମାଣି, ସଙ୍ଗଂ ତ୍ୟକ୍ତ୍ୱା ଫଲାନି ଚ ।**
**କର୍ତ୍ତବ୍ୟାନୀତି ମେ ପାର୍ଥ, ନିଶ୍ଚିତଂ ମତ-ମୁତ୍ତମମ୍ ॥**

ତେଣୁ ହେ ପାର୍ଥ ! ଆସକ୍ତି ଓ ଫଳ ତ୍ୟାଗ କରି ଏହି ଯଜ୍ଞ, ଦାନ ଏବଂ ତପରୂପକ କର୍ମ ତଥା ଅନ୍ୟ ସକଳ କର୍ତ୍ତବ୍ୟକର୍ମ ଅବଶ୍ୟ କରିବା ଉଚିତ । ଏହା ହେଉଛି ମୋର ନିଶ୍ଚୟ କରାଯାଇଥିବା ଉତ୍ତମ ମତ ॥ ୬ ॥

**ନିୟତସ୍ୟ ତୁ ସଂନ୍ୟାସଃ, କର୍ମଣୋ ନୋପପଦ୍ୟତେ ।**
**ମୋହାତ୍ ତସ୍ୟ ପରିତ୍ୟାଗସ୍,-ତାମସଃ ପରି-କୀର୍ତ୍ତିତଃ ॥**

(ନିଷିଦ୍ଧ ଓ କାମ୍ୟକର୍ମ ତ ସ୍ୱରୂପତଃ ତ୍ୟାଗ କରିବା ଉଚିତ), ପରନ୍ତୁ ନିୟତକର୍ମ ସ୍ୱରୂପତଃ ତ୍ୟାଗ କରିବା ଉଚିତ ନୁହେଁ । ତେଣୁ ମୋହବଶତଃ ତାହା ତ୍ୟାଗ କରିଦେବାକୁ ତାମସ ତ୍ୟାଗ କୁହାଯାଏ ॥ ୭ ॥

**ଦୁଃଖ-ମିତ୍ୟେବ ଯତ୍-କର୍ମ, କାୟ-କ୍ଲେଶ-ଭୟାତ୍-ତ୍ୟଜେତ୍ ।**
**ସ କୃତ୍ୱା ରାଜସଂ ତ୍ୟାଗଂ, ନୈବ ତ୍ୟାଗ-ଫଲଂ ଲଭେତ୍ ॥**

ଯାହା କିଛି କର୍ମ ଅଛି, ସେସବୁ ଦୁଃଖରୂପ ହିଁ ଅଟେ— ଏପରି ବୁଝି ଯଦି କେହି ଶାରୀରିକ କ୍ଲେଶଭୟରେ କର୍ତ୍ତବ୍ୟକର୍ମ ତ୍ୟାଗ କରିଦିଏ, ତେବେ ସେ ଏପରି ରାଜସ ତ୍ୟାଗ କରି କୌଣସିପ୍ରକାରେ ତ୍ୟାଗର ଫଳ ପାଏ ନାହିଁ ॥ ୮ ॥

**କାର୍ଯ୍ୟ-ମିତ୍ୟେବ ଯତ୍-କର୍ମ, ନିୟତଂ କ୍ରିୟତେଽର୍ଜୁନ ।**
**ସଙ୍ଗଂ ତ୍ୟକ୍ତ୍ୱା ଫଲଂ ଚୈବ, ସ ତ୍ୟାଗଃ ସାତ୍ତ୍ୱିକୋ ମତଃ ॥**

ହେ ଅର୍ଜୁନ ! ଶାସ୍ତ୍ରବିହିତ କର୍ମ କରିବା ହିଁ କର୍ତ୍ତବ୍ୟ ବୋଲି ଭାବି ଆସକ୍ତି ଓ ଫଳତ୍ୟାଗପୂର୍ବକ ଯେଉଁ କର୍ମ କରାଯାଏ, ତାହା ହିଁ ସାତ୍ତ୍ୱିକ ତ୍ୟାଗ ବୋଲି ଗୃହୀତ ହୁଏ ॥ ୯ ॥

**ନ ଦ୍ୱେଷ୍ଟ୍ୟ-କୁଶଲଂ କର୍ମ, କୁଶଲେ ନାନୁ-ଷଜ୍ଜତେ ।**
**ତ୍ୟାଗୀ ସତ୍ତ୍ୱ-ସମାବିଷ୍ଟୋ, ମେଧାବୀ ଛିନ୍ନ-ସଂଶୟଃ ॥**

ଯେଉଁ ମନୁଷ୍ୟ ଅକୁଶଳ କର୍ମରେ ଦ୍ୱେଷ କରନ୍ତି ନାହିଁ, କି କୁଶଳ କର୍ମରେ ଆସକ୍ତ ହୁଅନ୍ତି ନାହିଁ, ସେହି ଶୁଦ୍ଧସତ୍ତ୍ୱଗୁଣଯୁକ୍ତ ପୁରୁଷ ସଂଶୟରହିତ, ବୁଦ୍ଧିମାନ୍ ଏବଂ ପ୍ରକୃତ ତ୍ୟାଗୀ ॥ ୧୦ ॥

**ନ ହି ଦେହ-ଭୃତା ଶକ୍ୟଂ, ତ୍ୟକ୍ତୁଂ କର୍ମା-ଣ୍ୟଶେଷତଃ ।**
**ଯସ୍ତୁ କର୍ମ-ଫଲ-ତ୍ୟାଗୀ, ସ ତ୍ୟାଗୀ-ତ୍ୟଭିଧୀୟତେ ॥**

କାରଣ ଶରୀରଧାରୀ କୌଣସି ବି ମନୁଷ୍ୟ ସମ୍ପୂର୍ଣ୍ଣରୂପେ ସକଳ କର୍ମ ତ୍ୟାଗ କରିଦେବାକୁ ସକ୍ଷମ ନୁହେଁ; ତେଣୁ ଯେ କର୍ମଫଳତ୍ୟାଗୀ, ତାଙ୍କୁ ହିଁ ତ୍ୟାଗୀ ବୋଲି କୁହାଯାଏ ॥ ୧୧ ॥

**ଅନିଷ୍ଟ-ମିଷ୍ଟଂ ମିଶ୍ରଂ ଚ, ତ୍ରିବିଧଂ କର୍ମଣଃ ଫଲମ୍ ।**
**ଭବତ୍ୟ-ତ୍ୟାଗିନାଂ ପ୍ରେତ୍ୟ, ନ ତୁ ସଂନ୍ୟାସିନାଂ କ୍ୱଚିତ୍ ॥**

କର୍ମଫଳ ତ୍ୟାଗ କରି ନ ଥିବା ମନୁଷ୍ୟମାନଙ୍କ କର୍ମର ଭଲ, ମନ୍ଦ ଓ ମିଶ୍ରିତ—ଏପରି ତିନିପ୍ରକାର ଫଳ ମୃତ୍ୟୁ ପରେ ଅବଶ୍ୟ ହୁଏ; କିନ୍ତୁ କର୍ମଫଳ ତ୍ୟାଗ କରିଦେଇଥିବା ମନୁଷ୍ୟମାନଙ୍କ କର୍ମର ଫଳ କୌଣସି କାଳରେ ମଧ୍ୟ ହୁଏ ନାହିଁ ॥ ୧୨ ॥

**ପଞ୍ଚୈତାନି ମହାବାହୋ, କାରଣାନି ନିବୋଧ ମେ ।**
**ସାଂଖ୍ୟେ କୃତାନ୍ତେ ପ୍ରୋକ୍ତାନି, ସିଦ୍ଧୟେ ସର୍ବ-କର୍ମଣାମ୍ ॥**

ହେ ମହାବାହୁ ! କର୍ମମାନଙ୍କୁ ଅନ୍ତ କରିବାର ଉପାୟ କହୁଥିବା ସାଂଖ୍ୟଶାସ୍ତ୍ରରେ ସକଳ କର୍ମର ସିଦ୍ଧିପାଇଁ ପାଞ୍ଚଟି କାରଣ କୁହାଯାଇଛି, ସେଗୁଡ଼ିକ ତୁମେ ମୋଠାରୁ ଭଲଭାବରେ ଜାଣିନିଅ ॥ ୧୩ ॥

**ଅଧିଷ୍ଠାନଂ ତଥା କର୍ତ୍ତା, କରଣଂ ଚ ପୃଥଗ୍-ବିଧମ୍ ।**
**ବିବିଧାଶ୍ଚ ପୃଥକ୍-ଚେଷ୍ଟା, ଦୈବଂ ଚୈବାତ୍ର ପଞ୍ଚମମ୍ ॥**

ଏହି ବିଷୟରେ ଅର୍ଥାତ୍ କର୍ମମାନଙ୍କ ସିଦ୍ଧିରେ ଅଧିଷ୍ଠାନ*, କର୍ତ୍ତା, ବିଭିନ୍ନପ୍ରକାର କରଣ☫, ନାନାପ୍ରକାର ଚେଷ୍ଟା ଏବଂ ସେହିପରି ପଞ୍ଚମ ହେତୁ ଦୈବ✦ ଅଟେ ॥ ୧୪ ॥

**ଶରୀର-ବାଙ୍-ମନୋଭିର୍-ଯତ୍, କର୍ମ ପ୍ରାରଭତେ ନରଃ ।**
**ନ୍ୟାଯ୍ୟଂ ବା ବିପରୀତଂ ବା, ପଞ୍ଚୈତେ ତସ୍ୟ ହେତବଃ ॥**

ମନୁଷ୍ୟ ମନ, ବାଣୀ ଓ ଶରୀରଦ୍ୱାରା ଶାସ୍ତ୍ରାନୁକୂଳ ଅଥବା ବିପରୀତ, ଯାହା କିଛି ବି କର୍ମ କରେ, ଏହି ପାଞ୍ଚଟି ହିଁ ତାହାର କାରଣ ॥ ୧୫ ॥

---

* ଯାହାକୁ ଆଶ୍ରୟ କରି କର୍ମ କରାଯାଏ, ତାହା ଅଧିଷ୍ଠାନ ।

☫ ଯେଉଁ ସବୁ ଇନ୍ଦ୍ରିୟ, ଅନ୍ତଃକରଣ ପ୍ରଭୃତିଦ୍ୱାରା କର୍ମ କରାଯାଏ, ସେସବୁ କରଣ ।

✦ ପୂର୍ବକୃତ ଶୁଭାଶୁଭ କର୍ମର ସଂସ୍କାରକୁ ଦୈବ ବୋଲାଯାଏ ।

**ତତ୍ରୈବଂ ସତି କର୍ତ୍ତାର,-ମାତ୍ମାନଂ କେବଲନ୍ତୁ ଯଃ ।**
**ପଶ୍ୟତ୍ୟ-କୃତ-ବୁଦ୍ଧିତ୍ୱାନ୍,-ନ ସ ପଶ୍ୟତି ଦୁର୍ମତିଃ ॥**

ପରନ୍ତୁ ଏପରି ହୋଇଥିଲେ ମଧ୍ୟ ଯେଉଁ ମନୁଷ୍ୟ ଅଶୁଦ୍ଧବୁଦ୍ଧି* ହୋଇଥିବାରୁ ସେହି ବିଷୟରେ ଅର୍ଥାତ୍ କର୍ମମାନଙ୍କ ହେବାରେ ନିରଞ୍ଜନ ଶୁଦ୍ଧସ୍ୱରୂପ ଆତ୍ମାକୁ କର୍ତ୍ତା ବୋଲି ବୁଝେ, ସେହି ମଳିନବୁଦ୍ଧି ଅଜ୍ଞାନୀ ମନୁଷ୍ୟ ଯଥାର୍ଥ ବୁଝେ ନାହିଁ ॥ ୧୬ ॥

**ଯସ୍ୟ ନାହଂ-କୃତୋ ଭାବୋ, ବୁଦ୍ଧିର୍-ଯସ୍ୟ ନ ଲିପ୍ୟତେ ।**
**ହତ୍ୱାପି ସ ଇମାଁଲ୍-ଲୋକାନ୍, ନ ହନ୍ତି ନ ନିବଧ୍ୟତେ ॥**

ଯେଉଁ ପୁରୁଷଙ୍କ ଅନ୍ତଃକରଣରେ 'ମୁଁ କର୍ତ୍ତା' ବୋଲି ଭାବ ନାହିଁ ତଥା ଯାହାଙ୍କ ବୁଦ୍ଧି ସାଂସାରିକ ପଦାର୍ଥରେ ଓ କର୍ମରେ ଲିପ୍ତ ହୁଏ ନାହିଁ, ସେହି ପୁରୁଷ ଏହିସବୁ ଲୋକଙ୍କୁ ମାରିଦେଲେ ମଧ୍ୟ ବାସ୍ତବରେ ମାରନ୍ତି ନାହିଁ, କି ପାପରେ ବାନ୍ଧିହୁଅନ୍ତି ନାହିଁΨ ॥ ୧୭ ॥

---

* ସତ୍ସଙ୍ଗ, ଶାସ୍ତ୍ର ଅଧ୍ୟୟନ ଓ ଭଗବଦର୍ଥ କର୍ମ ତଥା ଉପାସନା ଦ୍ୱାରା ମନୁଷ୍ୟର ବୁଦ୍ଧି ଶୁଦ୍ଧ ହୁଏ । ଯେ ଏସବୁ ସାଧନା କରେ ନାହିଁ, ତାର ବୁଦ୍ଧି ଅଶୁଦ୍ଧ ବୋଲି ବୁଝିବାକୁ ହେବ ।

Ψ ନିଆଁ, ପାଣି, ପବନହେତୁ ପ୍ରାରବ୍ଧବଶତଃ କୌଣସି ପ୍ରାଣୀ ପ୍ରତି ହିଂସା ହେଲେ ମଧ୍ୟ, ତାହାକୁ ହିଂସା ବୋଲି ଧରାଯାଏନା । ସେହିପରି ଯା'ଠାରେ ଅହଂତ୍ୱ ନାହିଁ, ଯେ ନିଃସ୍ୱାର୍ଥ, ଯେ ଜଗତର ହିତପାଇଁ କର୍ମ କରନ୍ତି, ତାଙ୍କ ଶରୀର ବା ଇନ୍ଦ୍ରିୟଦ୍ୱାରା ଲୋକଦୃଷ୍ଟିରେ କାହା ପ୍ରତି ହିଂସା ହେବା ଦେଖାଗଲେ ମଧ୍ୟ ତାହା ପ୍ରକୃତ ହିଂସା ନୁହେଁ । କର୍ତ୍ତୃତ୍ୱ ଅଭିମାନ ନ ଥିବାରୁ ସେ ପ୍ରକୃତରେ ଅକର୍ତ୍ତା । ତେଣୁ ତାଙ୍କୁ ପାପ ଲାଗେ ନାହିଁ ।

**ଜ୍ଞାନଂ ଜ୍ଞେୟଂ ପରିଜ୍ଞାତା, ତ୍ରିବିଧା କର୍ମ-ଚୋଦନା ।**
**କରଣଂ କର୍ମ କର୍ତ୍ତେତି, ତ୍ରିବିଧଃ କର୍ମ-ସଙ୍ଗ୍ରହଃ ॥**

ଜ୍ଞାତା, ଜ୍ଞାନ ଓ ଜ୍ଞେୟ*—ଏହା ହେଉଛି ତ୍ରିବିଧ କର୍ମପ୍ରେରଣା ଏବଂ କର୍ତ୍ତା, କରଣ ତଥା କ୍ରିୟା☬—ଏହା ହେଉଛି ତ୍ରିବିଧ କର୍ମସଂଗ୍ରହ ॥ ୧୮ ॥

**ଜ୍ଞାନଂ କର୍ମ ଚ କର୍ତ୍ତା ଚ, ତ୍ରିଧୈବ ଗୁଣ-ଭେଦତଃ ।**
**ପ୍ରୋଚ୍ୟତେ ଗୁଣ-ସଂଖ୍ୟାନେ, ଯଥା-ବଚ୍ଛୃଣୁ ତାନ୍ୟପି ॥**

ଗୁଣମାନଙ୍କର ସଂଖ୍ୟା ନିରୂପଣ କରୁଥିବା ଶାସ୍ତ୍ରରେ ଜ୍ଞାନ, କର୍ମ ଏବଂ କର୍ତ୍ତା—ଗୁଣଭେଦରେ ତିନି ତିନିପ୍ରକାରର ବୋଲି ହିଁ କୁହାଯାଇଛି; ତାହା ମଧ୍ୟ ତୁମେ ମୋଠାରୁ ଭଲଭାବରେ ଶୁଣ ॥ ୧୯ ॥

**ସର୍ବ-ଭୂତେଷୁ ଯେନୈକଂ, ଭାବ-ମବ୍ୟୟ-ମୀକ୍ଷତେ ।**
**ଅବିଭକ୍ତଂ ବିଭକ୍ତେଷୁ, ତଜ୍‌ଜ୍ଞାନଂ ବିଦ୍ଧି ସାତ୍ତ୍ୱିକମ୍ ॥**

ଯେଉଁ ଜ୍ଞାନଦ୍ୱାରା ମନୁଷ୍ୟ ପୃଥକ୍ ପୃଥକ୍ ସକଳପ୍ରାଣୀଙ୍କ ଠାରେ ଏକ ଅବିନାଶୀ ପରମାତ୍ମଭାବକୁ ହିଁ ବିଭାଗରହିତ ହୋଇ ସମଭାବରେ ରହିଥିବାର ଦେଖେ, ସେହି ଜ୍ଞାନକୁ ତୁମେ ସାତ୍ତ୍ୱିକ ବୋଲି ଜାଣ ॥ ୨୦ ॥

---

* ଯେ ଜାଣେ, ସେ ଜ୍ଞାତା; ଯାହା ସାହାଯ୍ୟରେ ଜାଣିହୁଏ, ତାହା ଜ୍ଞାନ ଓ ଯାହା ଜଣାଯାଏ, ତାହା ଜ୍ଞେୟ ।

☬ ଯେ କର୍ମ କରେ ସେ କର୍ତ୍ତା; ଯାହା ଦ୍ୱାରା କର୍ମ କରାଯାଏ, ତାହା କରଣ ଓ କର୍ମ କରିବାର ନାମ କ୍ରିୟା ।

**ପୃଥକ୍ତ୍ୱେନ ତୁ ଯଜ୍ଜ୍ଞାନଂ, ନାନା-ଭାବାନ୍-ପୃଥଗ୍-ବିଧାନ୍ ।**
**ବେତ୍ତି ସର୍ବେଷୁ ଭୂତେଷୁ, ତଜ୍ଜ୍ଞାନଂ ବିଦ୍ଧି ରାଜସମ୍ ॥**

କିନ୍ତୁ ଯେଉଁ ଜ୍ଞାନଦ୍ୱାରା ମନୁଷ୍ୟ ସକଳ ଭୂତଙ୍କ ଠାରେ ଭିନ୍ନ ଭିନ୍ନପ୍ରକାରର ନାନା ଭାବକୁ ଭିନ୍ନ ଭିନ୍ନ ବୋଲି ବୁଝେ, ସେହି ଜ୍ଞାନକୁ ତୁମେ ରାଜସ ବୋଲି ଜାଣ ॥ ୨୧ ॥

**ଯତ୍ତୁ କୃତ୍ସ୍ନ-ବଦେକସ୍ମିନ୍, କାର୍ଯ୍ୟେ ସକ୍ତ-ମହୈତୁକମ୍ ।**
**ଅତତ୍ତ୍ୱାର୍ଥ-ବଦଲ୍ପଂ ଚ, ତତ୍-ତାମସ-ମୁଦାହୃତମ୍ ॥**

ଯେଉଁ ଜ୍ଞାନଦ୍ୱାରା ମନୁଷ୍ୟ ଏକମାତ୍ର କାର୍ଯ୍ୟରୂପକ ଶରୀରରେ ହିଁ ସମ୍ପୂର୍ଣ୍ଣରୂପେ ଆସକ୍ତ ହୋଇଯାଏ ଏବଂ ଯାହା ଅଯୌକ୍ତିକ, ତାତ୍ତ୍ୱିକ ଅର୍ଥରୁ ରହିତ ତଥା ତୁଚ୍ଛ, ତାହାକୁ ତାମସ ବୋଲି କୁହାଯାଏ ॥ ୨୨ ॥

**ନିୟତଂ ସଙ୍ଗ-ରହିତ,-ମରାଗ-ଦ୍ୱେଷତଃ କୃତମ୍ ।**
**ଅଫଲ-ପ୍ରେପ୍ସୁନା କର୍ମ, ଯତ୍ତତ୍-ସାତ୍ତ୍ୱିକ-ମୁଚ୍ୟତେ ॥**

ଯେଉଁ କର୍ମ ଶାସ୍ତ୍ରବିଧିଦ୍ୱାରା ନିୟତ ଏବଂ କର୍ତ୍ତାପଣର ଅଭିମାନରୁ ରହିତ ହୋଇ ଫଳ ଇଚ୍ଛା କରୁ ନ ଥିବା ପୁରୁଷଙ୍କ ଦ୍ୱାରା ବିନା ରାଗ-ଦ୍ୱେଷରେ କରାଯାଏ, ତାହାକୁ ସାତ୍ତ୍ୱିକ କର୍ମ କୁହାଯାଏ ॥ ୨୩ ॥

**ଯତ୍ତୁ କାମେପ୍ସୁନା କର୍ମ, ସାହଙ୍କାରେଣ ବା ପୁନଃ ।**
**କ୍ରିୟତେ ବହୁଲାୟାସଂ, ତଦ୍-ରାଜସ-ମୁଦାହୃତମ୍ ॥**

ପରନ୍ତୁ ଯେଉଁ କର୍ମ ପରିଶ୍ରମବହୁଳ ହୋଇଥାଏ ତଥା

ଭୋଗ ଇଚ୍ଛା କରୁଥିବା ପୁରୁଷଦ୍ୱାରା ବା ଅହଙ୍କାରଯୁକ୍ତ ପୁରୁଷଦ୍ୱାରା କରାଯାଏ, ସେହି କର୍ମକୁ ରାଜସକର୍ମ କୁହାଯାଏ ॥ ୨୪ ॥

**ଅନୁବନ୍ଧଂ କ୍ଷୟଂ ହିଂସା,-ମନବେକ୍ଷ୍ୟ ଚ ପୌରୁଷମ୍ ।**
**ମୋହା-ଦାରଭ୍ୟତେ କର୍ମ, ଯତ୍ତତ୍-ତାମସ-ମୁଚ୍ୟତେ ॥**

ଯେଉଁ କର୍ମ ପରିଣାମ, କ୍ଷତି, ହିଂସା ଓ ସାମର୍ଥ୍ୟର ବିଗ୍ରର ନ କରି କେବଳ ଅଜ୍ଞାନବଶତଃ ଆରମ୍ଭ କରାଯାଏ, ତାହା ତାମସ ବୋଲି କୁହାଯାଏ ॥ ୨୫ ॥

**ମୁକ୍ତ-ସଙ୍ଗୋଽନହଂ-ବାଦୀ, ଧୃତ୍ୟୁତ୍ସାହ-ସମନ୍ୱିତଃ ।**
**ସିଦ୍ଧ୍ୟ-ସିଦ୍ଧ୍ୟୋର୍-ନିର୍ବିକାରଃ, କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ ॥**

ଯେଉଁ କର୍ତ୍ତା ସଙ୍ଗରହିତ, ଯେ ଅହଂକାରଯୁକ୍ତ କଥା କହନ୍ତି ନାହିଁ, ଧୈର୍ଯ୍ୟ ଓ ଉତ୍ସାହଯୁକ୍ତ ଅଟନ୍ତି ତଥା କାର୍ଯ୍ୟର ସିଦ୍ଧି ବା ଅସିଦ୍ଧିରେ ହର୍ଷଶୋକାଦି ବିକାରରୁ ରହିତ, ସେ ସାତ୍ତ୍ୱିକ କୁହାଯାଆନ୍ତି ॥ ୨୬ ॥

**ରାଗୀ କର୍ମ-ଫଳ-ପ୍ରେପ୍ସୁର୍,-ଲୁବ୍ଧୋ ହିଂସାତ୍ମକୋଽଶୁଚିଃ ।**
**ହର୍ଷ-ଶୋକାନ୍ୱିତଃ କର୍ତ୍ତା, ରାଜସଃ ପରିକୀର୍ତ୍ତିତଃ ॥**

ଯେଉଁ କର୍ତ୍ତା ଆସକ୍ତିଯୁକ୍ତ, ଯେ କର୍ମଫଳ ଇଚ୍ଛା କରେ, ଯେ ଲୋଭୀ ତଥା ଅନ୍ୟକୁ କଷ୍ଟ ଦିଏ, ଯେ ଅଶୁଦ୍ଧାଗ୍ରରୀ ଓ ହର୍ଷଶୋକରେ ଲିପ୍ତ ରହେ, ତାକୁ ରାଜସ କର୍ତ୍ତା କୁହାଯାଏ ॥ ୨୭ ॥

**ଅଯୁକ୍ତଃ ପ୍ରାକୃତଃ ସ୍ତବ୍ଧଃ, ଶଠୋଽନୈଷ୍କୃତିକୋଽଲସଃ ।**
**ବିଷାଦୀ ଦୀର୍ଘ-ସୂତ୍ରୀ ଚ, କର୍ତ୍ତା ତାମସ ଉଚ୍ୟତେ ॥**

ଯେଉଁ କର୍ତ୍ତା ଅଯୁକ୍ତ, ଅଶିକ୍ଷିତ, ଅଭିମାନୀ, ଧୂର୍ତ୍ତ, ପରଜୀବିକାନାଶକାରୀ ତଥା ବିଷାଦଗ୍ରସ୍ତ, ଆଳସ୍ୟପରାୟଣ ଓ ଦୀର୍ଘସୂତ୍ରୀ*, ତାକୁ ତାମସ କୁହାଯାଏ ॥ ୨୮ ॥

**ବୁଦ୍ଧେର୍-ଭେଦଂ ଧୃତେଶ୍-ଚୈବ, ଗୁଣତସ୍-ତ୍ରିବିଧଂ ଶୃଣୁ ।**
**ପ୍ରୋଚ୍ୟମାନ-ମଶେଷେଣ, ପୃଥକ୍ତ୍ୱେନ ଧନଞ୍ଜୟ ॥**

ହେ ଧନଞ୍ଜୟ ! ବୁଦ୍ଧି ଓ ଧୃତି (ଧାରଣ ଶକ୍ତି) ମଧ୍ୟ ଗୁଣ ଅନୁସାରେ ତିନିପ୍ରକାର; ତାହା ମୁଁ ସମ୍ପୂର୍ଣ୍ଣଭାବରେ ବିଭାଗପୂର୍ବକ କହୁଛି; ତୁମେ ଶୁଣ ॥ ୨୯ ॥

**ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ, କାର୍ଯ୍ୟାକାର୍ଯ୍ୟେ ଭୟାଭୟେ ।**
**ବନ୍ଧଂ ମୋକ୍ଷଂ ଚ ଯା ବେତ୍ତି, ବୁଦ୍ଧିଃ ସା ପାର୍ଥ ସାତ୍ତ୍ୱିକୀ ॥**

ହେ ପାର୍ଥ ! ଯେଉଁ ବୁଦ୍ଧି ପ୍ରବୃତ୍ତିମାର୍ଗ☫ ଓ ନିବୃତ୍ତିମାର୍ଗକୁ✦, କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ, ଭୟ ଓ ଅଭୟକୁ ତଥା ବନ୍ଧନ ଓ ମୋକ୍ଷକୁ ଯଥାର୍ଥଭାବରେ ଜାଣେ, ସେହି ବୁଦ୍ଧି ସାତ୍ତ୍ୱିକୀ ॥ ୩୦ ॥

**ଯୟା ଧର୍ମ-ମଧର୍ମଂ ଚ, କାର୍ଯ୍ୟଂ ଚାକାର୍ଯ୍ୟ-ମେବ ଚ ।**
**ଅଯଥାବତ୍ ପ୍ରଜାନାତି, ବୁଦ୍ଧିଃ ସା ପାର୍ଥ ରାଜସୀ ॥**

---

* ଅଳ୍ପସମୟରେ ହୋଇପାରିବା ଭଳି କାମକୁ ଶେଷ ନ କରି ବହୁସମୟ ପକାଇ ରଖିବା ଲୋକକୁ ଦୀର୍ଘସୂତ୍ରୀ ବୋଲାଯାଏ ।

☫ ଗୃହସ୍ଥାଶ୍ରମରେ ରହି, ଫଳ ଓ ଆସକ୍ତି ତ୍ୟାଗ କରି, ବୁଦ୍ଧିରେ ଭଗବଦର୍ପଣ ଭାବ ରଖି ଲୋକଶିକ୍ଷାପାଇଁ ରାଜା ଜନକଙ୍କ ପରି ଆଚରଣ କରିବା ହେଉଛି ପ୍ରବୃତ୍ତିମାର୍ଗ ।

✦ ଦେହାଭିମାନ ତ୍ୟାଗ କରି, ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ଏକାତ୍ମଭାବରେ ଲାଗିରହି ଶ୍ରୀଶୁକଦେବ ଓ ସନକାଦିଙ୍କ ପରି ସଂସାରରୁ ବିରତ ହୋଇ ବିଚରଣ କରିବାର ନାମ ନିବୃତ୍ତିମାର୍ଗ ।

ହେ ପାର୍ଥ ! ମନୁଷ୍ୟ ଯେଉଁ ବୁଦ୍ଧିଦ୍ୱାରା ଧର୍ମ ଓ ଅଧର୍ମକୁ, ତଥା କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ ଯଥାର୍ଥଭାବରେ ଜାଣିପାରେ ନାହିଁ, ସେହି ବୁଦ୍ଧି ରାଜସୀ ॥ ୩୧ ॥

**ଅଧର୍ମଂ ଧର୍ମ-ମିତି ଯା, ମନ୍ୟତେ ତମସାବୃତା ।**
**ସର୍ବାର୍ଥାନ୍ ବିପରୀତାଂଶ୍-ଚ, ବୁଦ୍ଧିଃ ସା ପାର୍ଥ ତାମସୀ ॥**

ହେ ଅର୍ଜୁନ ! ଅଜ୍ଞାନଦ୍ୱାରା ଆବୃତ ହୋଇଥିବା ଯେଉଁ ବୁଦ୍ଧି ଅଧର୍ମକୁ ଧର୍ମ ବୋଲି ମାନିନିଏ ତଥା ଅନ୍ୟ ସକଳ ପଦାର୍ଥକୁ ବି ଏହିପରି ବିପରୀତରୂପେ ଧରିନିଏ, ସେହି ବୁଦ୍ଧି ତାମସୀ ॥୩୨॥

**ଧୃତ୍ୟା ଯୟା ଧାରୟତେ, ମନଃପ୍ରାଣେନ୍ଦ୍ରିୟ-କ୍ରିୟାଃ ।**
**ଯୋଗେନା-ବ୍ୟଭିଚାରିଣ୍ୟା, ଧୃତିଃ ସା ପାର୍ଥ ସାତ୍ତ୍ୱିକୀ ॥**

ହେ ପାର୍ଥ ! ଯେଉଁ ଅବ୍ୟଭିଚାରିଣୀ ଧୃତିଦ୍ୱାରା* ମନୁଷ୍ୟ ଧ୍ୟାନଯୋଗ ସାଧନାରେ ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କର କ୍ରିୟାମାନଙ୍କୁ ଧାରଣ☫ କରେ, ସେହି ଧୃତି ସାତ୍ତ୍ୱିକୀ ॥ ୩୩ ॥

**ଯୟା ତୁ ଧର୍ମ-କାମାର୍ଥାନ୍, ଧୃତ୍ୟା ଧାରୟତେଽର୍ଜୁନ ।**
**ପ୍ରସଙ୍ଗେନ ଫଳାକାଙ୍କ୍ଷୀ, ଧୃତିଃ ସା ପାର୍ଥ ରାଜସୀ ॥**

---

* ଭଗବଦ୍ ବିଷୟଭିନ୍ନ ଅନ୍ୟାନ୍ୟ ସାଂସାରିକ ବିଷୟ ଧାରଣ କରିବା ହେଉଛି ବ୍ୟଭିଚାର ଦୋଷ । ସେହି ଦୋଷରୁ ରହିତ ହୋଇଥିବା ଧାରଣଶକ୍ତିକୁ ଅବ୍ୟଭିଚାରିଣୀ ଧୃତି ବୋଲାଯାଏ ।

☫ ମନ, ପ୍ରାଣ ଓ ଇନ୍ଦ୍ରିୟାଦିକୁ ଭଗବତ୍ପ୍ରାପ୍ତି ନିମନ୍ତେ ଭଜନ, ଧ୍ୟାନ ଓ ନିଷ୍କାମ କର୍ମରେ ଲଗାଇରଖିବାକୁ ଉକ୍ତ କ୍ରିୟାଗୁଡ଼ିକୁ ଧାରଣ କରିବା ବୋଲାଯାଏ ।

ପରନ୍ତୁ ହେ ପୃଥାପୁତ୍ର ଅର୍ଜୁନ ! ଫଳ ଇଚ୍ଛା କରୁଥିବା ମନୁଷ୍ୟ ଯେଉଁ ଧୃତିଦ୍ୱାରା ଅତ୍ୟନ୍ତ ଆସକ୍ତିର ସହିତ ଧର୍ମ, ଅର୍ଥ ଏବଂ କାମକୁ ଧାରଣ କରେ, ସେହି ଧୃତି ରାଜସୀ ॥ ୩୪ ॥

**ଯୟା ସ୍ୱପ୍ନଂ ଭୟଂ ଶୋକଂ, ବିଷାଦଂ ମଦମେବ ଚ ।**
**ନ ବିମୁଞ୍ଚତି ଦୁର୍ମେଧା, ଧୃତିଃ ସା ପାର୍ଥ ତାମସୀ ॥**

ହେ ପାର୍ଥ ! ଦୁଷ୍ଟବୁଦ୍ଧି ମନୁଷ୍ୟ ଯେଉଁ ଧୃତିଦ୍ୱାରା ନିଦ୍ରା, ଭୟ, ଚିନ୍ତା ଓ ଦୁଃଖ ତଥା ଉନ୍ମତ୍ତତାକୁ ମଧ୍ୟ ଛାଡ଼େ ନାହିଁ ଅର୍ଥାତ୍ ଧରି ରଖେ, ସେହି ଧୃତି ତାମସୀ ॥ ୩୫ ॥

**ସୁଖଂ ତ୍ୱିଦାନୀଂ ତ୍ରିବିଧଂ, ଶୃଣୁ ମେ ଭରତର୍ଷଭ ।**
**ଅଭ୍ୟାସାଦ୍-ରମତେ ଯତ୍ର, ଦୁଃଖାନ୍ତଂ ଚ ନିଗଚ୍ଛତି ॥**
**ଯତ୍ତଦଗ୍ରେ ବିଷମିବ, ପରିଣାମେଽମୃତୋପମମ୍ ।**
**ତତ୍ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତ,-ମାତ୍ମ-ବୁଦ୍ଧି-ପ୍ରସାଦଜମ୍ ॥**

ହେ ଭରତଶ୍ରେଷ୍ଠ ! ବର୍ତ୍ତମାନ ତିନିପ୍ରକାର ସୁଖ ମଧ୍ୟ ମୋଠାରୁ ଶୁଣ । ସାଧକ ଭଜନ, ଧ୍ୟାନ ଓ ସେବାଦି ଅଭ୍ୟାସ କରିବାଦ୍ୱାରା ଯେଉଁ ସୁଖରେ ରମଣ କରନ୍ତି ଏବଂ ଯାହାଦ୍ୱାରା ସକଳ ଦୁଃଖ ନାଶ ହୁଏ, ଯେଉଁ ସୁଖ ଆରମ୍ଭରେ ଯଦିଓ ବିଷପରି* ଲାଗେ, କିନ୍ତୁ ପରିଣାମରେ ଅମୃତତୁଲ୍ୟ ହୋଇଥାଏ,

* ଖେଳରେ ଆସକ୍ତି ହେତୁ ମୂଢ଼ ବାଳକ ଯେପରି ପାଠପଢ଼ାକୁ ବିଷ ପରି ଭାବେ, ବିଷୟାସକ୍ତ ମନୁଷ୍ୟ ସେହିପରି ଭଗବଦ୍ ଭଜନ, ଧ୍ୟାନ, ସେବା ଇତ୍ୟାଦିକୁ ପ୍ରଥମେ ବିଷ ପରି ମଣେ ।

ପରମାତ୍ମବିଷୟକ ବୁଦ୍ଧିର ପ୍ରସାଦରୁ ଉତ୍ପନ୍ନ ହେଉଥିବା ସେହି ସୁଖକୁ ସାତ୍ତ୍ୱିକ ସୁଖ କୁହାଯାଏ ॥ ୩୬-୩୭ ॥

**ବିଷୟେନ୍ଦ୍ରିୟ-ସଂୟୋଗାଦ୍,-ୟତ୍ତଦଗ୍ରେଽମୃତୋପମମ୍ ।**
**ପରିଣାମେ ବିଷମିବ, ତତ୍‌ସୁଖଂ ରାଜସଂ ସ୍ମୃତମ୍ ॥**

ଯେଉଁ ସୁଖ ବିଷୟ ଓ ଇନ୍ଦ୍ରିୟର ସଂଯୋଗରୁ ହୁଏ, ତାହା ପ୍ରଥମେ—ଭୋଗକାଳରେ ଅମୃତତୁଲ୍ୟ ପ୍ରତୀତ ହେଲେ ମଧ୍ୟ, ପରିଣାମରେ ବିଷତୁଲ୍ୟ* ଅଟେ; ସେହି ସୁଖକୁ ରାଜସ କୁହାଯାଏ ॥ ୩୮ ॥

**ୟଦଗ୍ରେ ଚାନୁବନ୍ଧେ ଚ, ସୁଖଂ ମୋହନ-ମାତ୍ମନଃ ।**
**ନିଦ୍ରାଲସ୍ୟ-ପ୍ରମାଦୋତ୍ଥଂ, ତତ୍ତାମସ-ମୁଦାହୃତମ୍ ॥**

ଯେଉଁ ସୁଖ ଭୋଗକାଳରେ ତଥା ପରିଣାମରେ ମଧ୍ୟ ଆତ୍ମାର ମୋହକାରକ ଅଟେ, ନିଦ୍ରା, ଆଳସ୍ୟ ଓ ପ୍ରମାଦରୁ ଉତ୍ପନ୍ନ ସେହି ସୁଖକୁ ତାମସ ବୋଲି କୁହାଯାଏ ॥ ୩୯ ॥

**ନ ତଦସ୍ତି ପୃଥିବ୍ୟାଂ ବା, ଦିବି ଦେବେଷୁ ବା ପୁନଃ ।**
**ସତ୍ତ୍ୱଂ ପ୍ରକୃତିଜୈର୍-ମୁକ୍ତଂ, ୟଦେଭିଃ ସ୍ୟାତ୍-ତ୍ରିଭିର୍-ଗୁଣୈଃ ॥**

ପୃଥିବୀରେ ବା ଆକାଶରେ ଅଥବା ଦେବତାମାନଙ୍କ ଠାରେ ତଥା ଏମାନଙ୍କ ବ୍ୟତୀତ ଅନ୍ୟ କେଉଁଠାରେ ବି ଏପରି କୌଣସି

* ବିଷୟ ଓ ଇନ୍ଦ୍ରିୟର ସଂଯୋଗରୁ ଯେଉଁ ସୁଖ ମିଳେ, ତାହା ବଳ, ବୀର୍ଯ୍ୟ, ବୁଦ୍ଧି, ଧନ, ଉତ୍ସାହ ତଥା ଇହଲୋକ ଓ ପରଲୋକର ନାଶକ ଅଟେ । ତେଣୁ ତାହା ପରିଣାମରେ ବିଷତୁଲ୍ୟ ।

ବି ପ୍ରାଣୀ କିମ୍ବା ପଦାର୍ଥ ନାହିଁ, ଯାହା କି ପ୍ରକୃତିରୁ ଉତ୍ପନ୍ନ ଏହି ତିନିଗୁଣରୁ ମୁକ୍ତ ହୋଇଥାଏ ॥ ୪୦ ॥

**ବ୍ରାହ୍ମଣ-କ୍ଷତ୍ରିୟ-ବିଶାଂ, ଶୂଦ୍ରାଣାଂ ଚ ପରନ୍-ତପ ।**
**କର୍ମାଣି ପ୍ରବିଭକ୍ତାନି, ସ୍ୱଭାବ-ପ୍ରଭବୈର୍-ଗୁଣୈଃ ॥**

ହେ ପରନ୍ତପ ! ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ତଥା ଶୂଦ୍ର-ମାନଙ୍କର କର୍ମଗୁଡ଼ିକ ସ୍ୱଭାବରୁ ଉତ୍ପନ୍ନ ଗୁଣମାନଙ୍କୁ ଧରି ବିଭକ୍ତ କରାଯାଇଛି ॥ ୪୧ ॥

**ଶମୋ ଦମସ୍-ତପଃ ଶୌଚଂ, କ୍ଷାନ୍ତି-ରାର୍ଜବ-ମେବ ଚ ।**
**ଜ୍ଞାନଂ ବିଜ୍ଞାନ-ମାସ୍ତିକ୍ୟଂ, ବ୍ରହ୍ମ-କର୍ମ ସ୍ୱଭାବଜମ୍ ॥**

ଅନ୍ତଃକରଣକୁ ନିଗ୍ରହ କରିବା, ଇନ୍ଦ୍ରିୟମାନଙ୍କୁ ଦମନ କରିବା, ଧର୍ମପାଳନପାଇଁ କଷ୍ଟ ସହିବା, ବାହାରେ ଓ ଭିତରେ ଶୁଦ୍ଧ ରହିବା, ଅନ୍ୟର ଅପରାଧ କ୍ଷମା କରିବା, ମନ, ଇନ୍ଦ୍ରିୟ ଓ ଶରୀରକୁ ସରଳ ରଖିବା, ବେଦ, ଶାସ୍ତ୍ର, ଈଶ୍ୱର ଓ ପରଲୋକ ଆଦିରେ ଶ୍ରଦ୍ଧା ରଖିବା, ବେଦାଦି ଶାସ୍ତ୍ରମାନଙ୍କର ଅଧ୍ୟୟନ-ଅଧ୍ୟାପନ କରିବା ଏବଂ ପରମାତ୍ମତତ୍ତ୍ୱକୁ ଅନୁଭବ କରିବା—ଏସବୁ ହେଉଛି ବ୍ରାହ୍ମଣମାନଙ୍କର ସ୍ୱାଭାବିକ କର୍ମ ॥ ୪୨ ॥

**ଶୌର୍ଯ୍ୟଂ ତେଜୋ ଧୃତିର୍-ଦାକ୍ଷ୍ୟଂ, ଯୁଦ୍ଧେ ଚାପ୍ୟ-ପଳାୟନମ୍ ।**
**ଦାନ-ମୀଶ୍ୱର-ଭାବଶ୍-ଚ, କ୍ଷାତ୍ରଂ କର୍ମ ସ୍ୱଭାବଜମ୍ ॥**

ଶୂରବୀରତା, ତେଜ, ଧୈର୍ଯ୍ୟ, ଦକ୍ଷତା ଓ ଯୁଦ୍ଧରୁ ପଳାଇ

ନ ଯିବା, ଦାନ ଦେବା ଏବଂ ସ୍ୱାମିତ୍ୱ—ଏସବୁ ହେଉଛି କ୍ଷତ୍ରିୟମାନଙ୍କର ସ୍ୱାଭାବିକ କର୍ମ ॥ ୪୩ ॥

**କୃଷି-ଗୌରକ୍ଷ୍ୟ-ବାଣିଜ୍ୟଂ, ବୈଶ୍ୟ-କର୍ମ ସ୍ୱଭାବଜମ୍ ।**
**ପରିଚର୍ଯ୍ୟାତ୍ମକଂ କର୍ମ, ଶୂଦ୍ରସ୍ୟାପି ସ୍ୱଭାବଜମ୍ ॥**

କୃଷି, ଗୋପାଳନ ଏବଂ କ୍ରୟ-ବିକ୍ରୟରୂପକ ସତ୍ୟ ବ୍ୟବହାର* ହେଉଛି ବୈଶ୍ୟଙ୍କର ସ୍ୱାଭାବିକ କର୍ମ ତଥା ସବୁ ବର୍ଣ୍ଣର ସେବା କରିବା ହେଉଛି ଶୂଦ୍ରମାନଙ୍କର ସ୍ୱାଭାବିକ କର୍ମ ॥ ୪୪ ॥

**ସ୍ୱେ ସ୍ୱେ କର୍ମଣ୍ୟଭିରତଃ, ସଂସିଦ୍ଧିଂ ଲଭତେ ନରଃ ।**
**ସ୍ୱକର୍ମ-ନିରତଃ ସିଦ୍ଧିଂ, ଯଥା ବିନ୍ଦତି ତଚ୍ଛୃଣୁ ॥**

ନିଜ ନିଜର ସ୍ୱାଭାବିକ କର୍ମରେ ତତ୍ପରତାର ସହିତ ଲାଗିରହିଥିବା ମନୁଷ୍ୟ ଭଗବତ୍‌ପ୍ରାପ୍ତିରୂପକ ପରମସିଦ୍ଧି ପାଇଯାଏ । ନିଜର ସ୍ୱାଭାବିକ କର୍ମରେ ଲାଗିରହିଥିବା ମନୁଷ୍ୟ କର୍ମ କରି କିପରି ପରମ ସିଦ୍ଧି ପାଇଯାଏ, ତାହା ତୁମେ ଶୁଣ ॥ ୪୫ ॥

**ଯତଃ ପ୍ରବୃତ୍ତିର୍-ଭୂତାନାଂ, ଯେନ ସର୍ବମିଦଂ ତତମ୍ ।**
**ସ୍ୱକର୍ମଣା ତମଭ୍ୟର୍ଚ୍ୟ, ସିଦ୍ଧିଂ ବିନ୍ଦତି ମାନବଃ ॥**

---

* ଜିନିଷପତ୍ର କିଣାବିକାରେ ଓଜନ, ମାପ ଓ ଗଣତିରେ କମ ଦେଇ ବେଶି ନେଇଯିବା, ଭଲ ଜିନିଷ ବଦଳରେ ଖରାପମିଶା ଜିନିଷ ଦେବା, ବା ଭଲ ଜିନିଷ ନେଇଯିବା, ଦଲାଲି କରି ବେଶି ନେଇ କମ ଦେବା, ମିଥ୍ୟା, କପଟାଚ୍ଛର, ଜୋର ଜବରଦସ୍ତି କରି, ଚୋରି କରି ବା ଅନ୍ୟ ଉପାୟରେ ଅନ୍ୟର ସ୍ୱତ୍ୱ ଅପହରଣ କରିବା ଇତ୍ୟାଦିରୁ ରହିତ ସତ୍ୟତାପୂର୍ଣ୍ଣ ବ୍ୟବସାୟକୁ ସାଧୁତାପୂର୍ଣ୍ଣ ବ୍ୟବସାୟ ବା ସତ୍ୟ ବ୍ୟବହାର କୁହାଯାଏ ।

ଯେଉଁ ପରମେଶ୍ୱରଙ୍କ ଠାରୁ ସମସ୍ତ ପ୍ରାଣୀ ଉତ୍ପନ୍ନ ହୋଇଛନ୍ତି ଏବଂ ଯାହାଙ୍କ ଦ୍ୱାରା ଏହି ସମସ୍ତ ଜଗତ ପରିବ୍ୟାପ୍ତ* ହୋଇଛି, ସେହି ପରମେଶ୍ୱରଙ୍କୁ ନିଜର ସ୍ୱାଭାବିକ କର୍ମମାନଙ୍କ ଦ୍ୱାରା ପୂଜା☫ କରି ମନୁଷ୍ୟ ପରମସିଦ୍ଧି ପାଇଥାଏ ॥ ୪୬ ॥

**ଶ୍ରେୟାନ୍-ସ୍ୱଧର୍ମୋ ବିଗୁଣଃ, ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।**
**ସ୍ୱଭାବ-ନିୟତଂ କର୍ମ, କୁର୍ବନ୍-ନାପ୍ନୋତି କିଲ୍ବିଷମ୍ ॥**

ଭଲଭାବରେ ଆଚରଣ କରାଯାଇଥିବା ପରଧର୍ମଠାରୁ ନିଜର ଧର୍ମ ଗୁଣରହିତ ହେଲେ ମଧ୍ୟ ଶ୍ରେଷ୍ଠ ଅଟେ; କାରଣ ସ୍ୱଭାବ ଦ୍ୱାରା ନିୟତ କରାଯାଇଥିବା ସ୍ୱଧର୍ମରୂପକ କର୍ମ ଆଚରଣ କରୁଥିବା ମନୁଷ୍ୟ ପାପ ଭାଗୀ ହୁଏ ନାହିଁ ॥ ୪୭ ॥

**ସହଜଂ କର୍ମ କୌନ୍ତେୟ, ସଦୋଷ-ମପି ନ ତ୍ୟଜେତ୍ ।**
**ସର୍ବାରମ୍ଭା ହି ଦୋଷେଣ, ଧୂମେନାଗ୍ନି-ରିବାବୃତାଃ ॥**

ଅତଏବ ହେ କୁନ୍ତୀପୁତ୍ର ! ଦୋଷଯୁକ୍ତ ହେଲେ ମଧ୍ୟ ସ୍ୱଭାବଜ✦ କର୍ମ ତ୍ୟାଗ କରିବା ଉଚିତ ନୁହେଁ; କାରଣ ଅଗ୍ନି

---

* ବରଫ ଯେପରି ଜଳଦ୍ୱାରା ବ୍ୟାପ୍ତ, ଏହି ଜଗତ ସେହିପରି ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଦ୍ୱାରା ପରିବ୍ୟାପ୍ତ ।

☫ ପତିବ୍ରତା ସ୍ତ୍ରୀ ଯେପରି ନିଜ ସ୍ୱାମୀଙ୍କୁ ସର୍ବସ୍ୱ ମନେକରି ପତିଙ୍କ ଚିନ୍ତା କରନ୍ତି, ତାଙ୍କରି ଆଜ୍ଞାରେ ଚଳନ୍ତି, ସେହିପରି ପରମେଶ୍ୱରଙ୍କୁ ସର୍ବସ୍ୱ ମନେ କରି ତାଙ୍କରି ନିର୍ଦ୍ଦେଶରେ କାୟମନୋବାକ୍ୟରେ ତାଙ୍କରି ପାଇଁ ସ୍ୱାଭାବିକ କର୍ମ କରିବା ହିଁ ପରମେଶ୍ୱରଙ୍କୁ ପୂଜା କରିବା ।

✦ ପ୍ରକୃତି ଅନୁଯାୟୀ ଶାସ୍ତ୍ରବିଧିନିର୍ଦ୍ଦିଷ୍ଟ, ବର୍ଣ୍ଣାଶ୍ରମ ଅନୁକୂଳ ଯେଉଁ ଧର୍ମ ଓ ସାଧାରଣ ଧର୍ମରୂପେ ସ୍ୱଭାବଜ କର୍ମ ରହିଛି, ସେହି କର୍ମ ହିଁ ସହଜ, ସ୍ୱଭାବଜ, ସ୍ୱକର୍ମ, ସ୍ୱଭାବନିର୍ଦ୍ଦିଷ୍ଟ କର୍ମ ଇତ୍ୟାଦି ନାମରେ ଅଭିହିତ ହୁଏ ।

ଯେପରି ଧୂଆଁଦ୍ୱାରା ଆବୃତ ହୋଇଥାଏ, ସମସ୍ତ କର୍ମ ସେହିପରି କୌଣସି ନା କୌଣସି ଦୋଷରେ ଯୁକ୍ତ ହୋଇଥାଏ ॥ ୪୮ ॥

**ଅସକ୍ତ-ବୁଦ୍ଧିଃ ସର୍ବତ୍ର, ଜିତାତ୍ମା ବିଗତ-ସ୍ପୃହଃ ।**
**ନୈଷ୍କର୍ମ୍ୟ-ସିଦ୍ଧିଂ ପରମାଂ, ସଂନ୍ୟାସେ-ନାଧି-ଗଚ୍ଛତି ॥**

ସର୍ବତ୍ର ଆସକ୍ତିରହିତ ବୁଦ୍ଧିସମ୍ପନ୍ନ ତଥା ନିସ୍ପୃହ ହୋଇ ଅନ୍ତଃକରଣକୁ ଜୟ କରିଥିବା ପୁରୁଷ ସାଂଖ୍ୟଯୋଗଦ୍ୱାରା ସେହି ପରମ ନୈଷ୍କର୍ମ୍ୟସିଦ୍ଧି ପ୍ରାପ୍ତ ହୁଅନ୍ତି ॥ ୪୯ ॥

**ସିଦ୍ଧିଂ ପ୍ରାପ୍ତୋ ଯଥା ବ୍ରହ୍ମ, ତଥାପ୍ନୋତି ନିବୋଧ ମେ ।**
**ସମାସେନୈବ କୌନ୍ତେୟ, ନିଷ୍ଠା ଜ୍ଞାନସ୍ୟ ଯା ପରା ॥**

ଯାହା ଜ୍ଞାନଯୋଗର ପରାନିଷ୍ଠା ଅଟେ, ସେହି ନୈଷ୍କର୍ମ୍ୟସିଦ୍ଧିକୁ ଯେଉଁ ପ୍ରଣାଳୀରେ ଲାଭ କରି ମନୁଷ୍ୟ ବ୍ରହ୍ମପ୍ରାପ୍ତ ହୁଏ, ହେ କୁନ୍ତୀପୁତ୍ର ! ସେହି ପ୍ରଣାଳୀ ତୁମେ ମୋଠାରୁ ସଂକ୍ଷେପରେ ବୁଝିନିଅ ॥ ୫୦ ॥

**ବୁଦ୍ଧ୍ୟା ବିଶୁଦ୍ଧୟା ଯୁକ୍ତୋ, ଧୃତ୍ୟାତ୍ମାନଂ ନିୟମ୍ୟ ଚ ।**
**ଶବ୍ଦାଦୀନ୍-ବିଷୟାଂସ୍-ତ୍ୟକ୍ତ୍ୱା, ରାଗ-ଦ୍ୱେଷୌ ବ୍ୟୁଦସ୍ୟ ଚ ॥**

**ବିବିକ୍ତ-ସେବୀ ଲଘ୍ୱାଶୀ, ଯତ-ବାକ୍-କାୟ-ମାନସଃ ।**
**ଧ୍ୟାନ-ଯୋଗ-ପରୋ ନିତ୍ୟଂ, ବୈରାଗ୍ୟଂ ସମୁପାଶ୍ରିତଃ ॥**

**ଅହଙ୍କାରଂ ବଲଂ ଦର୍ପଂ, କାମଂ କ୍ରୋଧଂ ପରିଗ୍ରହମ୍ ।**
**ବିମୁଚ୍ୟ ନିର୍ମମଃ ଶାନ୍ତୋ, ବ୍ରହ୍ମ-ଭୂୟାୟ କଲ୍ପତେ ॥**

ବିଶୁଦ୍ଧ ବୁଦ୍ଧିରେ ଯୁକ୍ତ ହୋଇଥିବା, ସରଳ-ସାତ୍ତ୍ୱିକ ଓ ନିୟମିତ ଆହାର କରୁଥିବା, ଶବ୍ଦାଦି ବିଷୟ ତ୍ୟାଗ କରି ଏକାନ୍ତ ଓ ପବିତ୍ର ସ୍ଥାନରେ ନିବାସ କରୁଥିବା, ସାତ୍ତ୍ୱିକ ଧାରଣଶକ୍ତିଦ୍ୱାରା* ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କୁ ସଂଯମ କରି ମନ, ବାଣୀ ଏବଂ ଶରୀରକୁ ବଶରେ ରଖିଥିବା, ରାଗଦ୍ୱେଷକୁ ସର୍ବଥା ନଷ୍ଟ କରି ଦୃଢ଼ ବୈରାଗ୍ୟର ଆଶ୍ରୟ ନେଇଥିବା ତଥା ଅହଙ୍କାର, ବଳ, ଗର୍ବ, କାମ, କ୍ରୋଧ ଓ ପରିଗ୍ରହ ତ୍ୟାଗ କରି ନିରନ୍ତର ଧ୍ୟାନଯୋଗରେ ପରାୟଣ ହୋଇ ରହୁଥିବା ମମତ୍ୱରହିତ ଓ ପ୍ରଶାନ୍ତଚିତ୍ତ ପୁରୁଷ ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଅଭିନ୍ନଭାବରେ ଅବସ୍ଥିତ ହେବାର ପାତ୍ର ହୁଅନ୍ତି ॥ ୫୧—୫୩ ॥

**ବ୍ରହ୍ମ-ଭୂତଃ ପ୍ରସନ୍ନାତ୍ମା, ନ ଶୋଚତି ନ କାଂକ୍ଷତି ।**
**ସମଃ ସର୍ବେଷୁ ଭୂତେଷୁ, ମଦ୍-ଭକ୍ତିଂ ଲଭତେ ପରାମ୍ ॥**

ପୁଣି ସେହି ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଏକୀଭାବରେ ସ୍ଥିତ ପ୍ରସନ୍ନଚିତ୍ତ ଯୋଗୀ କାହାରି ପାଇଁ ଶୋକ କରନ୍ତି ନାହିଁ, କି କିଛି ବି ଆକାଙ୍କ୍ଷା କରନ୍ତି ନାହିଁ । ସମସ୍ତ ପ୍ରାଣୀଙ୍କ ଠାରେ ସମଭାବସମ୍ପନ୍ନ ସେହି ଯୋଗୀ ମୋର ପରାଭକ୍ତି☬ ଲାଭ କରନ୍ତି ॥ ୫୪ ॥

**ଭକ୍ତ୍ୟା ମାମଭି-ଜାନାତି, ଯ୍ୱାବାନ୍ ଯ୍ୱଶ୍ଚାସ୍ମି ତତ୍ତ୍ୱତଃ ।**
**ତତୋ ମାଂ ତତ୍ତ୍ୱତୋ ଜ୍ଞାତ୍ୱା, ବିଶତେ ତଦନନ୍ତରମ୍ ॥**

---

* ଏହି ଅଧ୍ୟାୟର ୩୩ତମ ଶ୍ଲୋକର ବ୍ୟାଖ୍ୟା ତଥା ଟିପ୍ପଣୀ ଦ୍ରଷ୍ଟବ୍ୟ ।

☬ ଯାହା ତତ୍ତ୍ୱଜ୍ଞାନର ପରାକାଷ୍ଠା ଅର୍ଥାତ୍ ଯାହା ପ୍ରାପ୍ତ ହେଲେ ଆଉ କିଛି ଜାଣିବାକୁ ବାକି ରହିଯାଏ ନାହିଁ, ତାହାକୁ ହିଁ ଏଠାରେ ପରାଭକ୍ତି, ଜ୍ଞାନର ପରାନିଷ୍ଠା, ନୈଷ୍କର୍ମ୍ୟସିଦ୍ଧି ଇତ୍ୟାଦି ନାମରେ କୁହାଯାଇଛି ।

ସେହି ପରାଭକ୍ତିଦ୍ୱାରା ସେ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ, ତଥା ମୁଁ କ'ଣ ଓ କିପରି ପ୍ରଭାବବିଶିଷ୍ଟ, ତାହା ଠିକ୍ ସେହିପରି ତତ୍ତ୍ୱତଃ ଜାଣିପାରନ୍ତି ଏବଂ ସେହି ଭକ୍ତିଦ୍ୱାରା ମୋତେ ତତ୍ତ୍ୱତଃ ଜାଣି ସେହିକ୍ଷଣି ମୋ ଭିତରେ ପ୍ରବିଷ୍ଟ ହୋଇଯାଆନ୍ତି ଅର୍ଥାତ୍ ମୋ' ସହିତ ଏକ ହୋଇଯାଆନ୍ତି ॥ ୫୫ ॥

**ସର୍ବ-କର୍ମାଣ୍ୟପି ସଦା, କୁର୍ବାଣୋ ମଦ୍-ବ୍ୟପାଶ୍ରୟଃ ।**
**ମତ୍ ପ୍ରସାଦା-ଦବାପ୍ନୋତି, ଶାଶ୍ୱତଂ ପଦ-ମବ୍ୟୟମ୍ ॥**

ମୋର ପରାୟଣ ହୋଇଥିବା କର୍ମଯୋଗୀ ତ ସଦାସର୍ବଦା ସକଳ କର୍ମ କରୁଥିଲେ ମଧ୍ୟ ମୋ କୃପାରୁ ସନାତନ ଅବିନାଶୀ ପରମପଦ ପ୍ରାପ୍ତ ହୋଇଯାଆନ୍ତି ॥ ୫୬ ॥

**ଚେତସା ସର୍ବ-କର୍ମାଣି, ମୟି ସଂନ୍ୟସ୍ୟ ମତ୍ପରଃ ।**
**ବୁଦ୍ଧି-ଯୋଗ-ମୁପାଶ୍ରିତ୍ୟ, ମଚ୍ଚିତ୍ତଃ ସତତଂ ଭବ ॥**

ମନଦ୍ୱାରା ମୋଠାରେ ସମସ୍ତ କର୍ମ ଅର୍ପଣ କରିଦେଇ ତଥା ସମବୁଦ୍ଧିରୂପ ଯୋଗ ଅବଲମ୍ବନ କରି ମୋର ପରାୟଣ ହୁଅ ଏବଂ ନିରନ୍ତର ମୋଠାରେ ଯୁକ୍ତଚିତ୍ତ ହୋଇଯାଅ ॥ ୫୭ ॥

**ମଚ୍ଚିତ୍ତଃ ସର୍ବ-ଦୁର୍ଗାଣି, ମତ୍ ପ୍ରସାଦାତ୍ ତରିଷ୍ୟସି ।**
**ଅଥ ଚେତ୍ତ୍ୱ-ମହଙ୍କାରାନ୍,-ନ ଶ୍ରୋଷ୍ୟସି ବିନଙ୍କ୍ଷ୍ୟସି ॥**

ଉପରୋକ୍ତପ୍ରକାରେ ମୋଠାରେ ଯୁକ୍ତଚିତ୍ତ ହୋଇ ତୁମେ ମୋରି କୃପାରୁ ଅନାୟାସରେ ସମସ୍ତ ସଂକଟ ପାର ହୋଇଯିବ

ଏବଂ ଯଦି ଅହଂକାରହେତୁ ମୋ କଥା ଶୁଣିବ ନାହିଁ, ତେବେ ନଷ୍ଟ ହୋଇଯିବ ଅର୍ଥାତ୍ ପରମାର୍ଥରୁ ଭ୍ରଷ୍ଟ ହୋଇଯିବ ॥ ୫୮ ॥

**ଯଦହଙ୍କାର-ମାଶ୍ରିତ୍ୟ, ନ ଯୋତ୍ସ୍ୟ ଇତି ମନ୍ୟସେ ।**
**ମିଥ୍ୟୈଷ ବ୍ୟବସାୟସ୍ତେ, ପ୍ରକୃତିସ୍-ତ୍ୱାଂ ନିଯୋକ୍ଷ୍ୟତି ॥**

ତୁମେ ଯେଉଁ ଅହଂକାରକୁ ଆଶ୍ରୟ କରି 'ମୁଁ ଯୁଦ୍ଧ କରିବି ନାହିଁ', ବୋଲି ଧରି ବସିଛ, ତୁମର ସେହି ନିଶ୍ଚୟ ମିଥ୍ୟା; କାରଣ, ତୁମର ପ୍ରକୃତି ତୁମକୁ ବଳପୂର୍ବକ ଯୁଦ୍ଧରେ ଲଗାଇଦେବ ॥ ୫୯ ॥

**ସ୍ୱଭାବଜେନ କୌନ୍ତେୟ, ନିବଦ୍ଧଃ ସ୍ୱେନ କର୍ମଣା ।**
**କର୍ତ୍ତୁଂ ନେଚ୍ଛସି ଯନ୍-ମୋହାତ୍, କରିଷ୍ୟସ୍ୟ-ବଶୋଽପି ତତ୍ ॥**

ହେ କୁନ୍ତୀପୁତ୍ର ! ତୁମେ ମୋହହେତୁ ଯେଉଁ କର୍ମ କରିବାକୁ ଇଚ୍ଛା କରୁନାହଁ, ତାହା ମଧ୍ୟ ନିଜର ପୂର୍ବକୃତ ସ୍ୱାଭାବିକ କର୍ମଦ୍ୱାରା ବାନ୍ଧିହୋଇ, ପରବଶ ହୋଇ କରିବ ॥ ୬୦ ॥

**ଈଶ୍ୱରଃ ସର୍ବ-ଭୂତାନାଂ, ହୃଦ୍ଦେଶେଽର୍ଜୁନ ତିଷ୍ଠତି ।**
**ଭ୍ରାମୟନ୍-ସର୍ବ-ଭୂତାନି, ଯନ୍ତ୍ରା-ରୂଢାନି ମାୟୟା ॥**

ହେ ଅର୍ଜୁନ ! ଶରୀରରୂପକ ଯନ୍ତ୍ରରେ ଆରୂଢ଼ ହୋଇଥିବା ସମସ୍ତ ପ୍ରାଣୀଙ୍କୁ ନିଜର ମାୟାଦ୍ୱାରା ସେମାନଙ୍କର କର୍ମାନୁସାରେ ଭ୍ରମିତ କରାଇ ଅନ୍ତର୍ଯାମୀ ପରମେଶ୍ୱର ସମସ୍ତ ପ୍ରାଣୀଙ୍କ ହୃଦୟରେ ନିବାସ କରନ୍ତି ॥ ୬୧ ॥

**ତମେବ ଶରଣଂ ଗଚ୍ଛ, ସର୍ବ-ଭାବେନ ଭାରତ ।**
**ତତ୍-ପ୍ରସାଦାତ୍ ପରାଂ ଶାନ୍ତିଂ, ସ୍ଥାନଂ ପ୍ରାପ୍ସ୍ୟସି ଶାଶ୍ୱତମ୍ ॥**

ହେ ଭାରତ ! ତୁମେ ସର୍ବତୋଭାବେ ସେହି ପରମେଶ୍ୱରଙ୍କୁହିଁ ଶରଣ ଯାଅ* । ସେହି ପରମାତ୍ମାଙ୍କ କୃପାରୁ ତୁମେ ପରମ ଶାନ୍ତି ତଥା ସନାତନ ପରମଧାମ ପ୍ରାପ୍ତ ହେବ ॥ ୬୨ ॥

**ଇତି ତେ ଜ୍ଞାନ-ମାଖ୍ୟାତଂ, ଗୁହ୍ୟାଦ୍-ଗୁହ୍ୟତରଂ ମୟା ।**
**ବିମୃଶ୍ୟୈ-ତଦଶେଷେଣ, ଯଥେଚ୍ଛସି ତଥା କୁରୁ ॥**

ଏପରିଭାବରେ ଗୋପନୀୟଠାରୁ ମଧ୍ୟ ଅତି ଗୋପନୀୟ ଏହି ଜ୍ଞାନ ମୁଁ ତୁମକୁ କହିଦେଲି । ବର୍ତ୍ତମାନ ତୁମେ ଏହି ରହସ୍ୟଯୁକ୍ତ ଜ୍ଞାନକୁ ପୂର୍ଣ୍ଣରୂପେ ଭଲଭାବରେ ବିଚାର କରି, ଯେପରି ଇଚ୍ଛା କରୁଛ, ସେପରି କର ॥ ୬୩ ॥

**ସର୍ବ-ଗୁହ୍ୟତମଂ ଭୂୟଃ, ଶୃଣୁ ମେ ପରମଂ ବଚଃ ।**
**ଇଷ୍ଟୋଽସି ମେ ଦୃଢମିତି, ତତୋ ବକ୍ଷ୍ୟାମି ତେ ହିତମ୍ ॥**

ସକଳ ଗୋପନୀୟଠାରୁ ଅଧିକ ଗୋପନୀୟ ମୋର ପରମ ରହସ୍ୟଯୁକ୍ତ ବଚନ ତୁମେ ପୁଣି ଥରେ ଶୁଣ । ତୁମେ ମୋର

---

* ଲଜ୍ଜା, ଭୟ, ମାନ, ମର୍ଯ୍ୟାଦା ଓ ଆସକ୍ତି ତ୍ୟାଗ କରି ଏବଂ ଶରୀର ତଥା ସଂସାର ପ୍ରତି ଅହଂଭାବ ଓ ମମତ୍ୱ ଛାଡ଼ିଦେଇ, କେବଳମାତ୍ର ଏକ ପରମେଶ୍ୱରଙ୍କୁହିଁ ଆଶ୍ରୟ, ପରମଗତି ଓ ସର୍ବସ୍ୱ ବୋଲି ମନେକରି ଅନନ୍ୟ ଭାବରେ ଅତିଶୟ ଶ୍ରଦ୍ଧା, ଭକ୍ତି ଓ ପ୍ରେମପୂର୍ବକ ନିତ୍ୟନିରନ୍ତର ତାଙ୍କରି ନାମ-ଗୁଣ-ପ୍ରଭାବ ଓ ସ୍ୱରୂପ ଚିନ୍ତନ କରି ରହିବା, ତାଙ୍କରି ଭଜନ-ସ୍ମରଣରେ ମଜ୍ଜି ରହିବା ଏବଂ ତାଙ୍କରି ନିର୍ଦ୍ଦେଶରେ ତାଙ୍କରି ପାଇଁ ନିଃସ୍ୱାର୍ଥଭାବରେ କର୍ତ୍ତବ୍ୟକର୍ମ କରିବାର ନାମ ଭଗବାନଙ୍କର ଶରଣ ଯିବା ।

ଅତିଶୟ ପ୍ରିୟ; ତେଣୁ ମୁଁ ତୁମକୁ ଏହି ପରମ ହିତକର ବଚନ ପୁନର୍ବାର କହିବି ॥ ୬୪ ॥

**ମନ୍ମନା ଭବ ମଦ୍-ଭକ୍ତୋ, ମଦ୍ୟାଜୀ ମାଂ ନମସ୍-କୁରୁ ।**
**ମାମେ-ବୈଷ୍ୟସି ସତ୍ୟଂ ତେ, ପ୍ରତିଜାନେ ପ୍ରିୟୋଽସି ମେ ॥**

ହେ ଅର୍ଜୁନ ! ତୁମେ ମୋଠାରେ ମନ ଲଗାଅ; ମୋର ଭକ୍ତ ହୋଇଯାଅ; ମୋର ପୂଜକ ହୋଇଯାଅ; ମୋତେ ପ୍ରଣାମ କର । ଏପରି କଲେ ତୁମେ ମୋତେ ହିଁ ପ୍ରାପ୍ତ ହେବ; ଏହା ମୁଁ ତୁମକୁ ସତ୍ୟ ପ୍ରତିଜ୍ଞା କରି କହୁଛି; କାରଣ ତୁମେ ମୋର ଅତ୍ୟନ୍ତ ପ୍ରିୟ ॥ ୬୫ ॥

**ସର୍ବ-ଧର୍ମାନ୍ ପରିତ୍ୟଜ୍ୟ, ମାମେକଂ ଶରଣଂ ବ୍ରଜ ।**
**ଅହଂ ତ୍ୱା ସର୍ବ-ପାପେଭ୍ୟୋ, ମୋକ୍ଷୟିଷ୍ୟାମି ମା ଶୁଚଃ ॥**

ସମସ୍ତ ଧର୍ମ ଅର୍ଥାତ୍ ସମସ୍ତ କର୍ତ୍ତବ୍ୟକର୍ମ ମୋଠାରେ ତ୍ୟାଗ କରିଦେଇ ତୁମେ ଏକମାତ୍ର ମୋର ଅର୍ଥାତ୍ ସର୍ବଶକ୍ତିମାନ୍ ସର୍ବାଧାର ପରମେଶ୍ୱରଙ୍କ ଶରଣକୁ ଆସିଯାଅ । ମୁଁ ତୁମକୁ ସମସ୍ତ ପାପରୁ ମୁକ୍ତ କରିଦେବି; ତୁମେ ଶୋକ କର ନାହିଁ ॥ ୬୬ ॥

**ଇଦଂ ତେ ନାତପସ୍କାୟ, ନାଭକ୍ତାୟ କଦାଚନ ।**
**ନ ଚାଶୁଶ୍ରୂଷବେ ବାଚ୍ୟଂ, ନ ଚ ମାଂ ଯୋଽଭ୍ୟସୂୟତି ॥**

ଏହି ଗୀତାରୂପକ ରହସ୍ୟମୟ ଉପଦେଶ କୌଣସି କାଳରେ ବି ତପସ୍ୟାବିହୀନ ମନୁଷ୍ୟକୁ କହିବା ଉଚିତ ନୁହେଁ, ଭକ୍ତିରହିତ

ମନୁଷ୍ୟକୁ* ଏବଂ ଶୁଣିବାକୁ ଅନିଚ୍ଛୁକ ମନୁଷ୍ୟକୁ ମଧ୍ୟ କହିବା ଉଚିତ ନୁହେଁ। ଯେ ମୋ'ଠାରେ ଦୋଷଦୃଷ୍ଟି ରଖେ, ତାକୁ ତ କଦାପି କହିବା ଉଚିତ ନୁହେଁ॥ ୬୭ ॥

**ୟ ଇମଂ ପରମଂ ଗୁହ୍ୟଂ, ମଦ୍‌-ଭକ୍ତେ-ଷ୍ୱଭି-ଧାସ୍ୟତି ।**
**ଭକ୍ତିଂ ମୟି ପରାଂ କୃତ୍ୱା, ମାମେ-ବୈଷ୍ୟତ୍ୟ-ସଂଶୟଃ ॥**

ଯେଉଁ ପୁରୁଷ ମୋ'ଠାରେ ପରମପ୍ରେମ କରି ଏହି ପରମ ରହସ୍ୟଯୁକ୍ତ ଗୀତୋପଦେଶ ମୋର ଭକ୍ତମାନଙ୍କ ମଧ୍ୟରେ କହିବେ, ସେ ମୋତେ ହିଁ ପ୍ରାପ୍ତ ହେବେ; ଏଥିରେ କୌଣସି ସନ୍ଦେହ ନାହିଁ॥ ୬୮ ॥

**ନ ଚ ତସ୍ମାନ୍‌-ମନୁଷ୍ୟେଷୁ, କଶ୍ଚିନ୍‌-ମେ ପ୍ରିୟ-କୃତ୍ତମଃ ।**
**ଭବିତା ନ ଚ ମେ ତସ୍ମା,-ଦନ୍ୟଃ ପ୍ରିୟତରୋ ଭୁବି ॥**

ତାଙ୍କ ଠାରୁ ବଡ଼ ହୋଇ ମୋର ପ୍ରିୟକାର୍ଯ୍ୟ କରୁଥିବା ବ୍ୟକ୍ତି ମନୁଷ୍ୟମାନଙ୍କ ମଧ୍ୟରେ ଆଉ କେହି ନାହିଁ; ତଥା ସମଗ୍ର ପୃଥିବୀରେ ତାଙ୍କ ଠାରୁ ବଳି ମୋର ଅନ୍ୟ କେହି ପ୍ରିୟ ବ୍ୟକ୍ତି ଭବିଷ୍ୟତରେ ମଧ୍ୟ ହେବ ନାହିଁ॥ ୬୯ ॥

**ଅଧ୍ୟେଷ୍ୟତେ ଚ ୟ ଇମଂ, ଧର୍ମ୍ୟଂ ସଂବାଦ-ମାବୟୋଃ ।**
**ଜ୍ଞାନ-ୟଜ୍ଞେନ ତେନାହ,-ମିଷ୍ଟଃ ସ୍ୟାମିତି ମେ ମତିଃ ॥**

ଯେଉଁ ପୁରୁଷ ଆମ ଦୁହିଙ୍କର ଏହି ଧର୍ମମୟ ସଂବାଦରୂପକ

* ବେଦ, ଶାସ୍ତ୍ର, ଭଗବାନ୍‌, ମହାତ୍ମା ଓ ଗୁରୁଜନଙ୍କ ପ୍ରତି ଶ୍ରଦ୍ଧା-ପ୍ରେମ ଓ ପୂଜ୍ୟଭାବକୁ ଭକ୍ତି ବୋଲାଯାଏ। ଯା'ଠାରେ ଭକ୍ତି ନାହିଁ, ସେ ଅଭକ୍ତ।

ଗୀତାଶାସ୍ତ୍ର ଅଧ୍ୟୟନ କରିବେ, ତାଙ୍କ ଦ୍ୱାରା ମଧ୍ୟ ମୁଁ ଜ୍ଞାନଯଜ୍ଞରେ ପୂଜିତ ହେବି; ଏହା ମୋର ମତ ॥ ୭୦ ॥

**ଶ୍ରଦ୍ଧାବା-ନନସୂୟଶ୍ଚ, ଶୃଣୁୟା-ଦପି ୟୋ ନରଃ ।**
**ସୋଽପି ମୁକ୍ତଃ ଶୁଭାଁଲ୍-ଲୋକାନ୍, ପ୍ରାପ୍ନୁୟାତ୍-ପୁଣ୍ୟ-କର୍ମଣାମ୍ ॥**

ଯେଉଁ ମନୁଷ୍ୟ ଶ୍ରଦ୍ଧାଯୁକ୍ତ ଏବଂ ଦୋଷଦୃଷ୍ଟିରହିତ ହୋଇ ଏହି ଗୀତାଶାସ୍ତ୍ର ଶ୍ରବଣମାତ୍ର କରିବେ, ସେ ମଧ୍ୟ ପାପମୁକ୍ତ ହୋଇ ଉତ୍ତମ କର୍ମକାରୀମାନଙ୍କର ଶ୍ରେଷ୍ଠ ଲୋକମାନଙ୍କୁ ପ୍ରାପ୍ତ ହେବେ ॥ ୭୧ ॥

**କଚ୍ଚି-ଦେତଚ୍-ଛ୍ରୁତଂ ପାର୍ଥ, ତ୍ୱୟୈକାଗ୍ରେଣ ଚେତସା ।**
**କଚ୍ଚି-ଦଜ୍ଞାନ-ସମ୍ମୋହଃ, ପ୍ରନଷ୍ଟସ୍-ତେ ଧନଞ୍ଜୟ ॥**

ହେ ପାର୍ଥ ! କ'ଣ ଏହି ଗୀତାଶାସ୍ତ୍ରକୁ ତୁମେ ଏକାଗ୍ରଚିତ୍ତରେ ଶ୍ରବଣ କରିଛ? ଏବଂ ହେ ଧନଞ୍ଜୟ ! କ'ଣ ତୁମର ଅଜ୍ଞାନଜନିତ ମୋହ ନଷ୍ଟ ହୋଇଗଲା? ॥ ୭୨ ॥

*ଅର୍ଜୁନ ଉବାଚ*

**ନଷ୍ଟୋ ମୋହଃ ସ୍ମୃତିର୍-ଲବ୍ଧା, ତ୍ୱତ୍-ପ୍ରସାଦାନ୍-ମୟାଚ୍ୟୁତ ।**
**ସ୍ଥିତୋଽସ୍ମି ଗତ-ସନ୍ଦେହଃ, କରିଷ୍ୟେ ବଚନଂ ତବ ॥**

ଅର୍ଜୁନ କହିଲେ—ହେ ଅଚ୍ୟୁତ ! ଆପଣଙ୍କ କୃପାରୁ ମୋର ମୋହ ନଷ୍ଟ ହୋଇଗଲା ଏବଂ ମୁଁ ସ୍ମୃତି ପାଇଗଲି; ମୁଁ ବର୍ତ୍ତମାନ ସମ୍ପୂର୍ଣ୍ଣ ନିଃସଂଶୟ ହୋଇଗଲି; ତେଣୁ ମୁଁ ଆପଣଙ୍କ ଆଜ୍ଞା ପାଳନ କରିବି ॥ ୭୩ ॥

ସଞ୍ଜୟ ଉବାଚ

**ଇତ୍ୟହଂ ବାସୁଦେବସ୍ୟ, ପାର୍ଥସ୍ୟ ଚ ମହାତ୍ମନଃ ।**
**ସଂବାଦ-ମିମ-ମଶ୍ରୌଷ,-ମଦ୍‌ଭୁତଂ ରୋମ-ହର୍ଷଣମ୍ ॥**

ସଞ୍ଜୟ କହିଲେ—ଏହିପରି ମୁଁ ଶ୍ରୀବାସୁଦେବଙ୍କର ଏବଂ ମହାତ୍ମା ଅର୍ଜୁନଙ୍କର ଏହି ଅଦ୍ଭୁତ ରହସ୍ୟଯୁକ୍ତ, ରୋମାଞ୍ଚକର ସଂବାଦ ଶୁଣିଲି ॥ ୭୪ ॥

**ବ୍ୟାସ-ପ୍ରସାଦାତ୍‌-ଚ୍ଛ୍ରୁତବା,-ନେତଦ୍‌-ଗୁହ୍ୟ-ମହଂ ପରମ୍ ।**
**ଯୋଗଂ ଯୋଗେଶ୍ୱରାତ୍‌-କୃଷ୍ଣାତ୍, ସାକ୍ଷାତ୍ କଥୟତଃ ସ୍ୱୟମ୍ ॥**

ଶ୍ରୀବ୍ୟାସଦେବଙ୍କ କୃପାରୁ ଦିବ୍ୟଦୃଷ୍ଟି ପାଇ ମୁଁ ଏହି ପରମ ଗୋପନୀୟ ଯୋଗ ଅର୍ଜୁନଙ୍କୁ କହୁଥିବା ସ୍ୱୟଂ ଯୋଗେଶ୍ୱର ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖରୁ ପ୍ରତ୍ୟକ୍ଷ ଶୁଣିଲି ॥ ୭୫ ॥

**ରାଜନ୍ ସଂସ୍ମୃତ୍ୟ ସଂସ୍ମୃତ୍ୟ, ସଂବାଦ-ମିମ-ମଦ୍‌ଭୁତମ୍ ।**
**କେଶବାର୍ଜୁନୟୋଃ ପୁଣ୍ୟଂ, ହୃଷ୍ୟାମି ଚ ମୁହୁର୍‌-ମୁହୁଃ ॥**

ହେ ରାଜନ୍ ! ଭଗବାନ୍ ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କର ଏହି ରହସ୍ୟମୟ, କଲ୍ୟାଣକର ଏବଂ ଅଦ୍‌ଭୁତ ସଂବାଦ ସ୍ମରଣ କରି କରି ମୁଁ ବାରମ୍ବାର ହର୍ଷିତ ହେଉଛି ॥ ୭୬ ॥

**ତଚ୍ଚ ସଂସ୍ମୃତ୍ୟ ସଂସ୍ମୃତ୍ୟ, ରୂପ-ମତ୍ୟଦ୍‌ଭୁତଂ ହରେଃ ।**
**ବିସ୍ମୟୋ ମେ ମହାନ୍ ରାଜନ୍, ହୃଷ୍ୟାମି ଚ ପୁନଃ ପୁନଃ ॥**

ହେ ରାଜନ୍ ! ଶ୍ରୀହରିଙ୍କର* ସେହି ଅତ୍ୟନ୍ତ ଅଦ୍ଭୁତ ରୂପ

* ଯାହାଙ୍କୁ ସ୍ମରଣ କଲେ ସମସ୍ତ ପାପ ହରଣ ହୋଇଯାଏ, ତାଙ୍କୁ ହରି କହନ୍ତି ।

ସ୍ମରଣ କରି କରି ମୋର ଚିତ୍ତରେ ବଡ଼ ବିସ୍ମୟ ଜାତ ହେଉଛି ଏବଂ ମୁଁ ବାରମ୍ବାର ହର୍ଷିତ ହେଉଛି ॥ ୭୭ ॥

**ୟତ୍ର ୟୋଗେଶ୍ୱରଃ କୃଷ୍ଣୋ, ୟତ୍ର ପାର୍ଥୋ ଧନୁର୍ଦ୍ଧରଃ ।**
**ତତ୍ର ଶ୍ରୀର୍-ବିଜୟୋ ଭୂତିର୍,-ଧ୍ରୁବା ନୀତିର୍-ମତିର୍-ମମ ॥***

ହେ ରାଜନ୍ ! ଯେଉଁଠାରେ ଯୋଗେଶ୍ୱର ଭଗବାନ୍ ଶ୍ରୀକୃଷ୍ଣ ଅଛନ୍ତି ଏବଂ ଯେଉଁଠାରେ ଗାଣ୍ଡୀବଧନୁ ଧାରଣ କରିଥିବା ଅର୍ଜୁନ ଅଛନ୍ତି, ସେଠାରେ ଶ୍ରୀ, ବିଜୟ, ବିଭୂତି ଏବଂ ଅଟଳ ନୀତି ରହିଛି; ଏହା ମୋର ମତ ॥ ୭୮ ॥

*ଓଁ ତତ୍-ସଦିତି, ଶ୍ରୀମଦ୍-ଭଗବଦ୍-ଗୀତା-ସୂପନିଷତ୍ସୁ, ବ୍ରହ୍ମ-ବିଦ୍ୟାୟାଂ ୟୋଗ-ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ-ସଂବାଦେ, ମୋକ୍ଷ-ସଂନ୍ୟାସ-ୟୋଗୋ ନାମ-ଅଷ୍ଟାଦଶୋଽଧ୍ୟାୟଃ ॥ ୧୮ ॥*



**॥ ଜୟ ଶ୍ରୀ ଚନ୍ଦ୍ରମୌଳି ॥**

* ଏହି ଶ୍ଲୋକଟିକୁ ଏକଶ୍ଲୋକୀ ଗୀତା ବୋଲାଯାଏ; ପାରାୟଣବେଳେ ପ୍ରତି ଅଧ୍ୟାୟ ଶେଷରେ ଏହା ପାଠ କରିବାର ବିଧି ରହିଛି ।

# ଆରତୀ

ଜୟ ଭଗବଦ୍‌ଗୀତେ, ଜୟ ଭଗବଦ୍‌ଗୀତେ ।
ହରି-ହିୟ-କମଲ-ବିହାରିଣି ସୁନ୍ଦର ସୁପୁନୀତେ ॥ ଜୟ.

କର୍ମ-ସୁମର୍ମ-ପ୍ରକାଶିନି କାମାସକ୍ତିହରା ।
ତତ୍ତ୍ୱଜ୍ଞାନ-ବିକାଶିନି ବିଦ୍ୟା ବ୍ରହ୍ମ ପରା ॥ ଜୟ.

ନିଶ୍ଚଳ-ଭକ୍ତି-ବିଧାୟିନି ନିର୍ମଲ ମଲହାରୀ ।
ଶରଣ-ରହସ୍ୟ-ପ୍ରଦାୟିନି ସବ ବିଧି ସୁଖକାରୀ ॥ ଜୟ.

ରାଗ-ଦ୍ୱେଷ-ବିଦାରିଣି କାରିଣି ମୋଦ ସଦା ।
ଭବ-ଭୟ-ହାରିଣି ତାରିଣି ପରମାନନ୍ଦପ୍ରଦା ॥ ଜୟ.

ଆସୁର-ଭାବ-ବିନାଶିନି ନାଶିନି ତମ-ରଜନୀ ।
ଦୈବୀ ସଦ୍‌ଗୁଣଦାୟିନି ହରି-ରସିକା ସଜନୀ ॥ ଜୟ.

ସମତା, ତ୍ୟାଗ ସିଖାଵନି ହରି-ମୁଖକୀ ବାନୀ ।
ସକଲ ଶାସ୍ତ୍ରକୀ ସ୍ୱାମିନି ଶ୍ରୁତିୟୋଁକୀ ରାନୀ ॥ ଜୟ.

ଦୟା-ସୁଧା ବରସାଵନି ମାତୁ ! କୃପା କୀଜୈ ।
ହରି-ପଦ-ପ୍ରେମ ଦାନ କର ଅପନୋ କର ଲୀଜୈ ॥ ଜୟ.





'ଶ୍ରୀମଦ୍ଭଗବଦ୍‌ଗୀତା' ହେଉଛି ଆନନ୍ଦଚିଦ୍‌ଘନ, ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ, ଚରାଚରବନ୍ଦିତ, ପରମପୁରୁଷୋତ୍ତମ, ସାକ୍ଷାତ୍ ଭଗବାନ୍ ଶ୍ରୀକୃଷ୍ଣଙ୍କର ଦିବ୍ୟବାଣୀ। ଏହା ଅତ୍ୟନ୍ତ ରହସ୍ୟପୂର୍ଣ୍ଣ। ପରମ ଦୟାମୟ ଭଗବାନ୍ ଶ୍ରୀକୃଷ୍ଣଙ୍କ କୃପାବଳରେ କିଛି ଅଂଶରେ ଏହାର ରହସ୍ୟ ବୁଝାଯାଇପାରେ। ଯେଉଁମାନେ ପରମ ଶ୍ରଦ୍ଧା ଓ ପ୍ରେମମୟୀ ବିଶୁଦ୍ଧ ଭକ୍ତିରେ ନିଜର ହୃଦୟ ପୂର୍ଣ୍ଣ କରି ଭଗବଦ୍‌ଗୀତାକୁ ମନନ କରନ୍ତି, ସେହିମାନେ ହିଁ ଭଗବତ୍‌କୃପାର ପ୍ରତ୍ୟକ୍ଷ ଅନୁଭବ କରି କିୟଦଂଶରେ ଗୀତାର ସ୍ୱରୂପ ଦର୍ଶନ କରିପାରନ୍ତି। ଅତଏବ ନିଜ କଲ୍ୟାଣ ଚାହୁଁଥିବା ନରନାରୀମାନଙ୍କର ଉଚିତ ଯେ, ସେମାନେ ଭକ୍ତପ୍ରବର ଅର୍ଜୁନଙ୍କ ଆଦର୍ଶ ମାନି ନିଜ ମଧ୍ୟରେ ଅର୍ଜୁନଙ୍କ ପରି ଦିବ୍ୟଗୁଣ ଅର୍ଜନ କରିବା ସଙ୍ଗେ ସଙ୍ଗେ ଶ୍ରଦ୍ଧା-ଭକ୍ତିପୂର୍ବକ ଗୀତାର ଶ୍ରବଣ, ମନନ ଏବଂ ଅଧ୍ୟୟନ କରନ୍ତୁ ଏବଂ ଭଗବାନଙ୍କ ଆଜ୍ଞାନୁସାରେ ଯଥାଯୋଗ୍ୟ ତତ୍ପରତାର ସହିତ ସାଧନାରେ ଲାଗିଯାଆନ୍ତୁ। ଯେଉଁମାନେ ଏପରି କରନ୍ତି, ସେମାନଙ୍କ ଅନ୍ତଃକରଣରେ ନିତ୍ୟ ନୂଆ ନୂଆ ପରମାନନ୍ଦଦାୟକ ଅନୁପମ ଏବଂ ଦିବ୍ୟଭାବ ସ୍ଫୁରଣ ହୋଇଚାଲେ ତଥା ସେମାନେ ସର୍ବଥା ଶୁଦ୍ଧାନ୍ତଃକରଣ ହୋଇ ଭଗବାନଙ୍କ ଅଲୌକିକ କୃପାସୁଧାର ରସାସ୍ୱାଦନ କରି କରି ଶୀଘ୍ର ହିଁ ଭଗବାନଙ୍କୁ ପାଇଯାଆନ୍ତି।



ହରିଃ ଓଁ ତତ୍‌ସତ୍! ହରିଃ ଓଁ ତତ୍‌ସତ୍!! ହରିଃ ଓଁ ତତ୍‌ସତ୍!!!

॥ ଶ୍ରୀହରିଃ ॥

# ଗୀତାପ୍ରେସ୍‌ରୁ କେତୋଟି ମହତ୍ତ୍ୱପୂର୍ଣ୍ଣ ଓଡ଼ିଆ ପ୍ରକାଶନ

## ପ୍ରମୁଖ ଗ୍ରନ୍ଥାବଳୀ

1100 ଶ୍ରୀମଦ୍ଭଗବଦ୍‌ଗୀତା ତତ୍ତ୍ୱବିବେଚନୀ ଟୀକା (ପ୍ରଶ୍ନୋତ୍ତର ସମ୍ବଳିତ ସରଳ ଟୀକା)
1121 ଶ୍ରୀମଦ୍ଭଗବଦ୍‌ଗୀତା ସାଧକ-ସଂଜୀବନୀ ଟୀକା (ଗୀତାର ଗୂଢ଼ ରହସ୍ୟ ବିବେଚନ)
1218 ଶ୍ରୀରାମଚରିତମାନସ (କେବଳ ମୂଳ ପାଠ)
1463 ଶ୍ରୀରାମଚରିତମାନସ (ଅର୍ଥ ସହିତ)
1551 ଅତିବଡ଼ୀ ଜଗନ୍ନାଥଦାସ ପ୍ରଣୀତ ଶ୍ରୀମଦ୍ଭାଗବତ
1567 ଶ୍ରୀଦୁର୍ଗାସପ୍ତଶତୀ (ଅର୍ଥ ସହିତ)
1298 ଗୀତାଦର୍ପଣ (ଗୀତା ସମ୍ବନ୍ଧିତ ବିଶ୍ଳେଷଣାତ୍ମକ ନିବନ୍ଧର ସଂକଳନ)
1473 ସାଧନ-ସୁଧା-ସିନ୍ଧୁ (ସାଧନା ସମ୍ବନ୍ଧୀୟ ବିବିଧ ବିଷୟର ସଂକଳନ)

## ଗୀତାର ଅନ୍ୟାନ୍ୟ ପ୍ରକାଶନ

815 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଳୋକ ଓ ଅର୍ଥ)
1008 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଳୋକ ଓ ଅର୍ଥ, ପକେଟ୍ ସାଇଜ)
1219 ଶ୍ରୀପଞ୍ଚରତ୍ନଗୀତା
541 ଗୀତା ଓ ବିଷ୍ଣୁସହସ୍ରନାମ (ପକେଟ୍ ସାଇଜ)
1465 ଗୀତା ଅନ୍ୱୟ ଓ ଅର୍ଥ

## ଆତ୍ମକଲ୍ୟାଣକାରୀ ପ୍ରକାଶନ

1078 ଭଗବତ୍‌ପ୍ରାପ୍ତିର ବିବିଧ ଉପାୟ
1506 ଅମୂଲ୍ୟ ସମୟର ସଦୁପଯୋଗ
1040 ସତ୍ସଙ୍ଗର କିଛି ସାରକଥା
1089 ଧର୍ମ କ'ଣ? ଭଗବାନ୍ କ'ଣ?
1079 ବାଲ୍ୟ-ଶିକ୍ଷା
1004 ତାତ୍ତ୍ୱିକ ପ୍ରବଚନ
1139 କଲ୍ୟାଣକାରୀ ପ୍ରବଚନ
1269 ଆବଶ୍ୟକ ଶିକ୍ଷା
1138 ଆତ୍ମୀୟ ଭଗବାନ
1299 ଭଗବାନ ଓ ଭଗବଦ୍‌ଭକ୍ତି
1130 ଗୁରୁ ବିନା କଣ ମୁକ୍ତି ନାହିଁ?
430 ଗୃହସ୍ଥାଶ୍ରମରେ କିପରି ରହିବା?
1209 ପ୍ରଶ୍ନୋତ୍ତର ମଣିମାଳା
1464 ଅମୃତବିନ୍ଦୁ
1512 ସାଧନାର ଦୁଇଟି ପ୍ରଧାନ ସୂତ୍ର
1267 ସହଜ ସାଧନା
1321 ଈଶ୍ୱରମୟ ଏ ଜଗତ
1268 ବାସ୍ତବ ସୁଖ
1511 ସର୍ବଜନ ଶ୍ରେୟ ପନ୍ଥା
1270 ନିତ୍ୟଯୋଗର ଉପଲବ୍ଧି

## ଚିତ୍ର କଥା

1248 ମୋହନ
1249 କହ୍ନେଇ
1250 ଓଁ ନମଃ ଶିବାୟ
1494 ଚିତ୍ରମୟ ଚୈତନ୍ୟ ଲୀଳା

## ସ୍ତୋତ୍ରାଦି

1068 ଗଜେନ୍ଦ୍ରମୋକ୍ଷଣସ୍ତୋତ୍ରମ୍
1069 ନାରାୟଣକବଚମ୍
1070 ଆଦିତ୍ୟହୃଦୟସ୍ତୋତ୍ରମ୍
1509 ରାମରକ୍ଷାସ୍ତୋତ୍ରମ୍

## ବିବିଧ

1208 ଆଦର୍ଶ କାହାଣୀ ଚୟନ
1342 ବଡ଼ ମଣିଷଙ୍କ ଜୀବନରୁ ଶିକ୍ଷା
1635 ପ୍ରେରଣାପ୍ରଦ କାହାଣୀ ମାଳା
1174 ଆଦର୍ଶ ନାରୀ ସୁଶୀଳା
854 ଭକ୍ତରାଜ ହନୁମାନ